ଶ୍ରେଷ୍ଠ ଗଳ୍ପ

ଲେଖକ :
ସୁରେନ୍ଦ୍ର ମହାନ୍ତି



ଦ୍ୱିତୀୟ ପ୍ରକାଶ :
ଜୁନ୍-୧୯୯୩

ପ୍ରକାଶକ :
ଚତୁରଙ୍ଗ ପ୍ରକାଶନୀ
ଭୁବନେଶ୍ୱର-୯

ପ୍ରଚ୍ଛଦ ଶିଳ୍ପୀ :
ମନସ୍ ସେନ୍

ମୁଦ୍ରଣ :
କଳିଙ୍ଗ ମୁଦ୍ରଣୀ
ନିମଚଉଡ଼ି, କଟକ-୨

ପରିବେଷକ :




ସି-୧୭, ବାଣିଜ୍ୟ ଭବନ,
ଭୁବନେଶ୍ୱର-୯

ମୂଲ୍ୟ : ପଇଁତିରିଶ ଟଙ୍କା
ଶୋଭନ : ଚାଳିଶ ଟଙ୍କା

**SRESTHA GALPA**
( A Short Story Collection )

Author :
**Surendra Mohanty**

Second Edition :
June-1993

Publisher :
**Chaturanga Prakashani**
Bhubaneswar-9

Design :
**Manis Sen**

Printed at :
**Kalinga Mudrani**
Nimchouri, Cuttack-2

Distributer :
**Granthalaya**
C-17, Banijya Bhawan
Bhubaneswar-9

Price : **Thirtyfive Rupees**
Deluxe : **Forty Rupees**

# ସ୍ୱଗତ

'ବନ୍ଦୀ' ହେଉଛି ମୋର ପ୍ରଥମ ମୁଦ୍ରିତ କ୍ଷୁଦ୍ରଗଳ୍ପ । ୧୯୩୮ ମସିହା 'ଉତ୍କଳ ସାହିତ୍ୟ'ରେ ଏହା ପ୍ରକାଶିତ ହୋଇ, ବିଦଗ୍ଧ ପାଠକ ସମାଜର ଦୃଷ୍ଟି ଆକର୍ଷଣ କରିଥିଲା । ସେତେବେଳେ ମୁଁ ଥିଲି, ଯାଜପୁର ହାଇସ୍କୁଲରେ ଦଶମ ଶ୍ରେଣୀର ଛାତ୍ର ! ଏ ଗଳ୍ପ ସମ୍ପର୍କରେ ମୁଁ ମୋର ଜୀବନ ସ୍ମୃତି 'ପଥ ଓ ପୃଥିବୀ'ରେ ବିସ୍ତାରିତ ଭାବରେ ଲେଖିଛି । ତା'ପରେ ବିକ୍ଷିପ୍ତ ଭାବରେ ବହୁ ଗଳ୍ପ ମୁଁ ଲେଖିଛି । କିନ୍ତୁ ସେଇ ଗଳ୍ପମାନଙ୍କ ମଧ୍ୟରୁ ମାତ୍ର କେତେ ଗୋଟି ଗଳ୍ପ 'ବନସ୍ପତି' ଛଦ୍ମ ନାମରେ ତତ୍କାଳୀନ 'ଡଗର' ଓ 'ସହକାର' ପତ୍ରିକାରେ ପ୍ରକାଶ ପାଇଥିଲା । ସେଥି ମଧ୍ୟରୁ 'ଡଗର'ରେ ପ୍ରକାଶିତ 'ଗ୍ରେଟଗପ' ଶୀର୍ଷକ କ୍ଷୁଦ୍ରଗଳ୍ପଟି ମୋର 'ରାଜଧାନୀ ଓ ଅନ୍ୟାନ୍ୟ ଗଳ୍ପ' ସଂକଳନରେ ସନ୍ନିବିଷ୍ଟ ହୋଇଅଛି । ଅବଶିଷ୍ଟ ବହୁ କ୍ଷୁଦ୍ରଗଳ୍ପର ପାଣ୍ଡୁଲିପି ଇତସ୍ତତଃ ବିକ୍ଷିପ୍ତ ହୋଇ ହଜି ଯାଇଛି । ସ୍ୱାଧୀନତା ପ୍ରାପ୍ତିର ପ୍ରାୟ ଦୁଇବର୍ଷ ପୂର୍ବରୁ ମୁଁ ବିଧିବଦ୍ଧ ଭାବରେ ଗଳ୍ପ ଲେଖା ଆରମ୍ଭ କଲି । ଗୋଟିଏ ଯାଯାବର ଭାଗାବଣ୍ଡର ଚରିତ୍ର ଏହି ଗଳ୍ପମାନଙ୍କରେ ଥିଲା ମୁଖ୍ୟ ଆଭିମୁଖ୍ୟ ! ମୋର ରାଜନୈତିକ ଚିନ୍ତାଧାରା ମଧ୍ୟ ସେଇ ଗଳ୍ପମାନଙ୍କରେ ସେତେବେଳେ ବେଶ୍ ଶାଣିତ ଭାବରେ ପ୍ରକାଶ ପାଇଥିଲା । ମାତ୍ର ସେତେବେଳର ନିୟାମକ ଅନୁସାରେ, ମୋର କୌଣସି ଡିଗ୍ରୀଯୁକ୍ତ ଲାଙ୍ଗୁଡ଼ ନଥିବାରୁ, ମୋର କ୍ଷୁଦ୍ରଗଳ୍ପ ସବୁ ତତ୍କାଳୀନ ଏକମାତ୍ର ପ୍ରତିଷ୍ଠିତ ସାହିତ୍ୟ ପତ୍ରିକା 'ସହକାର'ରେ ପ୍ରକାଶ ପାଇପାରୁ ନଥିଲା । ସେତେବେଳର ମୋର ଗୋଟିଏ କ୍ଷୁଦ୍ରଗଳ୍ପ 'ଭାରତ ଆବିଷ୍କାର', ବିହାରର ରାଜଧାନୀ ପାଟନାରୁ ପ୍ରକାଶିତ, ପ୍ରତିଷ୍ଠିତ ବଙ୍ଗଳା ସାହିତ୍ୟ ପତ୍ରିକା, 'ପ୍ରଭାତୀରେ'ରେ ଜଣେ ବନ୍ଧୁଙ୍କ ଦ୍ୱାରା ଅନୂଦିତ ହୋଇ ପ୍ରକାଶ ପାଇଥିଲା । 'ସୁରେନ୍ଦ୍ର ସଞ୍ଚୟନ'ର ସୁବିସ୍ତୃତ ଭୂମିକା ଓ ମୋର ଜୀବନ ସ୍ମୃତି 'ପଥ ଓ ପୃଥିବୀରେ' ଏ ସମ୍ପର୍କରେ ମୁଁ ବିଶଦ ଭାବରେ ଲେଖି ସାରିଛି ! ଏଇ ସଂକଳନର ପ୍ରଥମ ଗଳ୍ପ 'ଅଷ୍ଟ୍ରେଲିଆ',

ସେଇ 'ପ୍ରଭାତୀ' ପତ୍ରିକାରେ ବଙ୍ଗଳା ଅନୁବାଦ ମାଧ୍ୟମରେ ପ୍ରକାଶିତ ହୋଇ, ସୁଧୀ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଏହାପରେ ଓଡ଼ିଆ ପତ୍ର ପତ୍ରିକା-ମାନଙ୍କରେ ମୋର କ୍ଷୁଦ୍ରଗଳ୍ପ ପାଇଁ ସମ୍ପାଦକମାନଙ୍କର ପ୍ରବଳ ଆଗ୍ରହ ସୃଷ୍ଟି ହୋଇଥିଲା । ଅର୍ଥାତ୍ ବଙ୍ଗଳା ମାଧ୍ୟମରେ ହିଁ ମୁଁ ଓଡ଼ିଆ ପାଠକ ସମାଜରେ ପରିଚିତ ହୋଇଥିଲି ବୋଲି, ଏଠାରେ ଉଲ୍ଲେଖ କରିବା ପାଇଁ ମୋର କୌଣସି କୁଣ୍ଠା ନାହିଁ ।

ପ୍ରାକ୍ ସ୍ୱାଧୀନତା କାଳରୁ ୧୯୮୭ ମସିହା ପର୍ଯ୍ୟନ୍ତ ଦୀର୍ଘ ସ୍ୱର ଦଶନ୍ଧିରୁ ଊର୍ଦ୍ଧ୍ୱ କାଳ ମଧ୍ୟରେ ଲିଖିତ ମୋର ସତରଗୋଟି ଗଳ୍ପ ଏଇ ସଙ୍କଳନରେ ସମ୍ପୃକ୍ତ ହୋଇଅଛୁ । ନିମ୍ନରେ ଗଳ୍ପଗୁଡ଼ିକର ପ୍ରକାଶକାଳ ସୂଚୀତ ହେଉଅଛୁ ।

| | |
|---|---|
| ୧ । ଅଷ୍ଟ୍ରେଲିଆ—୧୯୪୬ | ୧୦ । ଖାଦାନ—୧୯୫୫ |
| ୨ । ବୃଷ୍ଟି ଓ ଚନ୍ଦ୍ର—୧୯୪୮ | ୧୧ । ପିତା ଓ ପୁତ୍ର—(?) |
| ୩ । କୃଷ୍ଣଚୂଡ଼ା—୧୯୪୮ | ୧୨ । ଶ୍ରୀକୃଷ୍ଣଙ୍କ ଶେଷହସ—୧୯୬୨ |
| ୪ । ମହାନଗରର ରାତ୍ରି—୧୯୪୯ | ୧୩ । ମୃତ୍ତିକାର ଆତ୍ମା—୧୯୬୯ |
| ୫ । ଭାଗାବନ୍ତ—୧୯୫୦ | ୧୪ । ଓଃ ! କାଲକାଟା—୧୯୭୦ |
| ୬ । ଅମ୍ବାପାଲ୍ଲୀ—୧୯୫୦ | ୧୫ । ସାହା-ଖାନ୍ଦାନ—୧୯୭୯ |
| ୭ । ସାଇକେଲ ଷ୍ଟୋର—୧୯୫୨ | ୧୬ । ରାଜଧାନୀ—୧୯୮୪ |
| ୮ । ଘନଆର ଗଣେଶ ଚତୁର୍ଥୀ—୧୯୫୩ | ୧୭ । ଫାଲ୍‌ଗୁନ ଜ୍ୟୋତ୍ସ୍ନା—୧୯୮୭ |
| ୯ । ତନୋପାରରଆତ୍ମା—୧୯୫୪ | |

ଏଇ ଗଳ୍ପ ଗୁଡ଼ିକ ମୋର ଶ୍ରେଷ୍ଠଗଳ୍ପ ବୋଲି, ମୁଁ କଦାପି ହଲପ କରି କହି ପାରିବି ନାହିଁ । ଏ ଗଳ୍ପ ସବୁ ସ୍ୱ-ନିର୍ବାଚିତ ବୋଲି କହିବା ମଧ୍ୟ ଆଂଶିକ ଭାବରେ ସତ୍ୟ ! ବସ୍ତୁତଃ ଜ୍ୟେଷ୍ଠ ଔପନ୍ୟାସିକ ଶ୍ରୀ ବିଭୂତି ପଟ୍ଟନାୟକଙ୍କ ସହିତ ଆଲୋଚନା ପରେ ସେ ଯେଉଁ ଗଳ୍ପ ଗୁଡ଼ିକୁ ନିର୍ବାଚିତ କଲେ, ତାହାହିଁ ଏଇ ସଞ୍ଚୟନରେ ସ୍ଥାନ ପାଇଅଛୁ । ତେବେ ମୋଟାମୋଟି ଭାବରେ ଏଇ ଗଳ୍ପଗୁଡ଼ିକ ମାଧ୍ୟମରେ ମୋର କ୍ଷୁଦ୍ରଗଳ୍ପ ବିବର୍ତ୍ତନର ଧାରା ସ୍ପଷ୍ଟ ପରିଲକ୍ଷିତ ହୋଇଥାଏ ।

୧୯୫୦ ପୂର୍ବର କ୍ଷୁଦ୍ରଗଳ୍ପମାନ ଆକାରରେ, କ୍ଷୁଦ୍ର ଥିଲେ ହେଁ, ପାଠକ ପ୍ରାଣରେ ଏ ଗଳ୍ପଗୁଡ଼ିକର ଅଭିଘାତ ଥିଲା ପ୍ରଖର ! ପ୍ରାୟତଃ ଏ ଗଳ୍ପ ଗୁଡ଼ିକରେ କୌଣସି ନିର୍ଦ୍ଦିଷ୍ଟ ଓ ସୁ-ଗଠିତ ପ୍ଲଟ୍ ନଥିଲା ! ଅନେକାଂଶରେ ଏଇ ଗଳ୍ପ ଗୁଡ଼ିକର ଶୈଳୀ ଥିଲା, ବିକ୍ଷିପ୍ତ ଚେତନା ପ୍ରବାହ ଧର୍ମୀ । 'ଅଷ୍ଟ୍ରେଲିଆ', 'ଭ୍ରିଗାବଣ୍ଡ' ଓ 'ମହାନଗରୀର ରାତ୍ରି' ପ୍ରଭୃତି ତାହାର କେତେକ ଉଦାହରଣ । ଆଦ୍ୟ କାଳର ଏହି ଗଳ୍ପ ଗୁଡ଼ିକର ବିଷୟବସ୍ତୁ, ଆଙ୍ଗିକ ଓ ଶୈଳୀ ଯୋଗୁଁ ପାରମ୍ପରିକ କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ଏକ ନୂଆ ମୋଡ଼ ଫିଟାଇ ଥିଲା । କିଛି ଗୋଟିଏ ନୂଆ ଏକସ୍‌ପେରିମେଣ୍ଟେସନ ମୋହରେ ମୁଁ ଯେ ଏ ଶୈଳୀ ଓ ଆଙ୍ଗିକ ସୃଷ୍ଟି କରିଥିଲି, ଆଦୌ ତାହା ନୁହେଁ ! ମାତ୍ର ପାରମ୍ପରିକ ରୀତି, ଶୈଳୀ ଓ ଆଙ୍ଗିକରେ ମୋର ଶିଳ୍ପୀମନର ଆବେଗ ଓ ଉଦ୍‌-ବେଳନ, ପୁଣି ଉପଲବ୍ଧିର ତୀବ୍ରତା ପ୍ରକାଶ କରିବା, ମୋତେ ପର୍ଯ୍ୟାପ୍ତ ମନେ ନ ହେବାରୁ, ମୁଁ ଏଇ ଶୈଳୀ ସୃଷ୍ଟି କରିଥିଲି । ସେଥିପାଇଁ ପାରମ୍ପରିକ ବିଷୟ ବସ୍ତୁରେ ଶୈଳୀ ଓ ଆଙ୍ଗିକର ଅଭ୍ୟସ୍ତ ପାଠକ ସମାଜରେ ଏଇ କାଳର ଗଳ୍ପ ଗୁଡ଼ିକ ଏକ ଆଲୋଡ଼ନ ସୃଷ୍ଟି କରିପାରିଥିଲା । ଏଥି ମଧ୍ୟରୁ 'କୃଷ୍ଣଚୂଡ଼ା' ଗଳ୍ପଟି (ରଚନା କାଳ—୧୯୪୮) ମୋତେ ହଠାତ୍ ରାତାରାତି ପ୍ରସିଦ୍ଧ କରି ଦେଇଥିଲା । 'ସହକାର' ପତ୍ରିକାରେ ଏହି କ୍ଷୁଦ୍ରଗଳ୍ପଟି ପ୍ରକାଶ ପାଇବା ପରେ, ସେତେବେଳର ପ୍ରସିଦ୍ଧ ଗାଳ୍ପିକ ଅଧ୍ୟାପକ ଶ୍ରୀ ରାଜକିଶୋର ରାୟ ଖଣ୍ଡେ ପତ୍ର ଲେଖି ମୋତେ ସ୍ୱର ଅନୁପ୍ରାଣିତ କରିଥିଲେ । ସେତେବେଳର ଅନ୍ୟତମ ପ୍ରସିଦ୍ଧ ଗାଳ୍ପିକ ସ୍ୱର୍ଗତ ଅନନ୍ତ ପଣ୍ଡା, ସୁଦୂର ବରଗଡ଼ରୁ ମୋର ପରିଚୟ ଓ ଠିକଣା ସନ୍ଧାନ କରି କରି, ଏଇ ଗଳ୍ପଟି ପାଇଁ ମୋତେ ଅଭିନନ୍ଦନ ଜଣାଇ ଥିଲେ । ସିଏ ଥିଲା, ସାହିତ୍ୟ କ୍ଷେତ୍ରରେ ଲେଖକମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟର ଯୁଗ । ବୟୋଜ୍ୟେଷ୍ଠ ଲେଖକମାନଙ୍କର ନବାଗତ କନିଷ୍ଠ ଲେଖକଙ୍କ ପ୍ରତି ସେତେବେଳେ ଥିଲା ଅକୁଣ୍ଠ ଶ୍ରଦ୍ଧା ଓ ସଦିଚ୍ଛା । ସେହିପରି କନିଷ୍ଠ ଲେଖକମାନଙ୍କର ବୟୋଜ୍ୟେଷ୍ଠ ଲେଖକମାନଙ୍କ ପ୍ରତି ରହିଥିଲା ସମ୍ମାନ ଓ ଶ୍ରଦ୍ଧା । ସାହିତ୍ୟ ଓ କଳାର ବିକାଶ ହୋଇଥାଏ, ପରସ୍ପର ପ୍ରତି ଶ୍ରଦ୍ଧା ଓ ସମ୍ମାନ ମଧ୍ୟରେ । ମାତ୍ର ଆଜି ଯେ ପରିବେଶ ଓଡ଼ିଆ ସାହିତ୍ୟ କ୍ଷେତ୍ରରୁ ସମ୍ପୂର୍ଣ୍ଣ ବିଦାୟ ନେଇଛି କହିଲେ ଅତ୍ୟୁକ୍ତି ହେବନାହିଁ । ଏହାର କାରଣ ବିଶ୍ଳେଷଣ କରିବା,

ଏଠାରେ ମୋର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ବକ୍ତବ୍ୟ ହେଉଛି, ପରସ୍ପର ପ୍ରତି ଶ୍ରଦ୍ଧା ଓ ସହୃଦୟତା ବିନା, ସାହିତ୍ୟର ସମୃଦ୍ଧି ସମ୍ଭବ ନୁହେଁ !

୧୯୬୬ ମସିହାରେ 'ଡଗର'ର ଏକ ବିଶେଷ ବାର୍ଷିକ ସଂଖ୍ୟାରେ ପ୍ରକାଶିତ ଓ ପୁରସ୍କୃତ ମୋର କ୍ଷୁଦ୍ରଗଳ୍ପ 'ସବୁଜ ପତ୍ର ଓ ଧୂସର ଗୋଲାପ' ପରଠାରୁ ମୋର ଭାବଧର୍ମୀ ଗଳ୍ପ ଗୁଡ଼ିକରେ କ୍ରମେ ଆସିଲା, ପ୍ଲଟ ଓ ଚରିତ୍ର ! ତେଣୁ ସ୍ୱାଭାବିକ ଭାବରେ କ୍ଷୁଦ୍ରଗଳ୍ପ ଗୁଡ଼ିକର ଆକାର ମଧ୍ୟ ସ୍ଫୀତ ହେବାପାଇଁ ଲାଗିଲା ! ତଥାପି ଏଇ ଗଳ୍ପ ଗୁଡ଼ିକରୁ ମଧ୍ୟ ମୋର ବ୍ୟକ୍ତିଗତ ଉପଲବ୍ଧି ଓ ପର୍ଯ୍ୟବେକ୍ଷଣ ବା ଦୃଷ୍ଟିଭଙ୍ଗୀର ନିଜସ୍ୱତା ବାଦ ପଡ଼ିନଥିଲା । ଏଇ ସଙ୍କଳନର ଶେଷଗଳ୍ପ 'ଫାଲଗୁନ ଜ୍ୟୋତ୍ସ୍ନା'ରେ ଏହା ଲକ୍ଷ୍ୟ କରି ଯାଇପାରେ ।

ମୋଟାମୋଟି ଭାବରେ ଏଇ ସଙ୍କଳନରେ ମୋର କ୍ଷୁଦ୍ରଗଳ୍ପର ବିକାଶଧାରା ବହୁଲାଂଶରେ ପ୍ରକାଶ ପାଇପାରି ଅଛି । ଭୁବନେଶ୍ୱର "ଚତୁରଙ୍ଗ ପ୍ରକାଶନୀ" ଏହାକୁ ସ୍ୱେଚ୍ଛାକୃତ ଭାବରେ ଆଗ୍ରହର ସହିତ ପ୍ରକାଶ କରି ଥିବାରୁ, ମୁଁ ଏହାର ସ୍ୱତ୍ୱାଧିକାରୀ-ମାନଙ୍କୁ ମୋର ଶୁଭେଚ୍ଛା ଓ ଆଶୀର୍ବାଦ ଜଣାଉ ଅଛି ।

ଶିବାଜୀ — ସୁରେନ୍ଦ୍ର ମହାନ୍ତି
କଟକ-୧
୧୭ ଅଗଷ୍ଟ, ୧୯୯୦, ଜନ୍ମାଷ୍ଟମୀ



## ସୂଚୀପତ୍ର

# ଅଷ୍ଟ୍ରେଲିଆ

ପକେଟ୍‌ଟା ଫୁଟା ।

ଗୋଟିଏ କୋଣରେ ତା'ର ପଡ଼ିଛି ସେଇ ଅଚଳ ସୁ' କଣା !

ଦୁଇଶକୋଟି ମଣିଷର ଧନଧାନ୍ୟଶାଳୀ ପୃଥିବୀରେ ସମ୍ବଳ କେବଳ ଗୋଟାଏ ଅଚଳ ସ୍ମରଣୀ !

ସ୍ମୃ' ଦୋକାନୀଟା ବେଶ୍ ଭଦ୍ର କହ୍ଲୁ, ସକାଳୁ ଚାରି କପ୍ ସ୍ମୃ' ବାକି ଦେଲଣି !

ସିଗାରେଟ୍ ଦୋକାନୀଟା ମଧ୍ୟ ମଣିଷର ମନର ଦୁଃଖ ବୁଝେ । ବାକି ସିଗାରେଟ୍ ପଇସା ପାଇଁ ଜିଦ୍ ଧରେନା ।

ରାସ୍ତା...ସହରର ବଡ଼ ରାସ୍ତା । ଉପର ଦେଇ ତା'ର ବନ୍ଧ ସ୍ମଲିଛି ମଣିଷର ପ୍ରବାହ । କେତେ ଆଶା, କେତେ ସ୍ୱପ୍ନ ନେଇ ସକାଳ ହେଲେ ଏଇ ବଡ଼ରାସ୍ତା ଉପରେ ଛୁଟି ଚାଲନ୍ତି, ମଣିଷ ପରେ ମଣିଷ, ଅଗଣିତ ମଣିଷ ।

ମୁଁ ବି ଭାସି ଚାଲିଛି ସେ ମଣିଷର ସୁଅରେ । ସ୍ୱପ୍ନ ମୋର ଅଷ୍ଟ୍ରେଲିଆ ...ସୁଦୂରର ଅଷ୍ଟ୍ରେଲିଆ । ନୂଆ ସୁନାଖଣିର ସନ୍ଧାନ କୁଆଡ଼େ ମିଳିଛି ସେଠି ।

ଆଉରି ବି ସ୍ୱପ୍ନ ଅଛି ମୋର । ବିରାଟ କମ୍ପାନୀ 'ଫ୍ଲୋଟ୍' କରିଚ, ମୂଳଧନ ତା'ର ଲକ୍ଷ ଲକ୍ଷ ଟଙ୍କା । ଅଷ୍ଟ୍ରେଲିଆର ପଶ୍ଚିମ ଅଞ୍ଚଳରେ । ସୁନାର ସନ୍ଧାନ କରିବା ପାଇଁ ନେଇଛି ମନୋପଲି ।

ଅଷ୍ଟ୍ରେଲିଆ ! ସୁଦୂରର ଅଷ୍ଟ୍ରେଲିଆ ! ଯେଉଁଠି କୁର୍ଲଗାର୍ଲିର ସୁନାଖଣିରୁ ଚମ୍ପା ବାଟେ କଳାଧୂଆଁ ଜାହାଜରେ କୁଣ୍ଡଳୀ ମୋଡ଼ି । ଯୋଉଠି ଅରମା ବାଲୁମୟ ପ୍ରାନ୍ତରରେ ଯାଯାବର ମେଷପାଳକ ପଥ ହରାଏ, ଅନ୍ଧାର ଝଡ଼ ରାତିରେ !

ରାସ୍ତାର ଧାରେଧାରେ ଚାଲିଛି ନଗ୍ନ, ବୁଭୁକ୍ଷୁ, କାଙ୍ଗାଳର ଶୋଭାଯାତ୍ରା ...ବୃଦ୍ଧ, ତରୁଣ, ବାଳକ, ଶିଶୁ, ତରୁଣୀ, ବୃଦ୍ଧା, ପ୍ରୌଢ଼, ଚକ୍ଷୁଷ୍ମାନ୍, ଚକ୍ଷୁହୀନ, ଦୃଷ୍ଟିହୀନ, ଦୃଷ୍ଟିହୀନା, ସ୍ୱାସ୍ଥ୍ୟବାନ, ସ୍ୱାସ୍ଥ୍ୟବତୀ, ରୁଗ୍ଣ ଓ ରୁଗ୍ଣା...

'ଆଲ୍ଲା ତେରା ଭଲ କରେ'...

'ଭଗବାନ ତମର ମଙ୍ଗଳ କରିବେ ବାବୁ'...

ଭଗବାନଙ୍କର ଆଶୀର୍ବାଦ, ଅଲ୍ଲାର ମେହେରବାନୀ, ପଇସା ଅଧଲାରେ ବିକ୍ରୀ ହେଉଛି ! ହାୟ ଆଲ୍ଲା, ପୃଥିବୀରେ ସବୁଠୁ ଶସ୍ତା ତମର ମେହେର୍‌ବାନୀ !

ସେଇ ବକୁଳ ଅଲୁଅର ଖୁଣ୍ଟ ଦେହରେ ଆଉଜି ଠିଆ ହୋଇଚ ଯେଉଁ ପଙ୍ଗୁ, କୁଷ୍ଠ ବ୍ୟାଧିଗ୍ରସ୍ତ, "ଆଲ୍ଲାର ମେହେର୍‌ବାନୀ"ର ସୌଦାଗର ! ଝୁଲାରେ ତା'ର ଆଲ୍ଲାର ମେହେର୍‌ବାନୀର ଅଫୁରନ୍ତ ପଣ୍ୟ । ମୁଣ୍ଡରେ ଫେଜ୍ ଟୋପିଟିର, ପହିଲେ କଣ ରଙ୍ଗ ଥିଲା, ଆଜି ଠିକ୍ କହି ହେବନାହିଁ ତା ।

ବାର୍ଦ୍ଧକ୍ୟର ଲକ୍ଷଲକ୍ଷ ଜଟିଳ ରେଖା ମୁହଁ ଉପରେ ତା'ର । ଆଖି ଦୁଇଟି ଶେତା, ପାଣି ଝରୁଛି । ଦେହରେ ଗୋଟାଏ ଛିଣ୍ଡା, କଳା କୋଟ୍...କାହାର କେବେକାର ପରିତ୍ୟକ୍ତ ଛିଣ୍ଡା, ମଇଳା କୋଟ୍ ।

'ଆଲ୍ଲା ତେରା ଭଲ କରେଗା ବେଟା ।'

ପାଖରେ ତା'ର ଆଉ ଜଣେ ବୁଢ଼ା ବି ମେଲିଛି ତାର ପଣ୍ୟର ଭଣ୍ଡାର, ଫୁଟ୍‌ପାଥ ଉପରେ ଖଣ୍ଡେ ଛିଣ୍ଡା ଅଖା ବିଛାଇ ।

'କୋଟୀ ପରମାୟୁ ତୋର ହେବ ବାପ ।'

ବୁଢ଼ାର ଭିନ୍ନ ବ୍ୟବସାୟ, ବୁଢ଼ାର ପଣ୍ୟ, 'କୋଟି ପରମାୟୁ' । ମୋ ଆଗରୁ କେତେଜଣ ଗରାଖ ବି ଆସି, କୋଟି ପରମାୟୁ କିଣି ସାରିଲେଣି । ସାମନାରେ ତା'ର ଖଣ୍ଡେ କଳେଇଛଡ଼ା ଟିଣ-ବାଟୀ ଭିତରେ ପଡ଼ିଚି, ଦୋପଇସୀ ପଇସା ହୋଇ, ଢନଅଣା ପଇସା...କୋଟୀ, କୋଟୀ ପରମାୟୁର ମୂଲ୍ୟ ।

ଫୁଟା ପକେଟରେ ଅଚଳ ସୁରଣୀ ।

ଆଲ୍ଲାର୍ ମେହେର୍‌ବାନୀ ନା—କୋଟି ପରମାୟୁ ?

ତା ଠୁଁ କପେ ଚା ଭଲ !

ସନ୍ଧ୍ୟାର ଅନ୍ଧାରରେ ଅଚଳ ସୁ'କଟା ନିଶ୍ଚୟ ଯେ କୌଣସି ଚା'ଦୋକାନରେ ଚଳିଯିବ !

ଗୋଟାଏ ଗଳି ରାସ୍ତା ଭିତରକୁ ଚାଲିଗଲି ।

ସକାଳର ସୁନ୍ଦର ନରମା ଖରା, ଶରତର ସ୍ୱଚ୍ଛ ସୁନ୍ଦର ଉଦାର ଆକାଶ, ନବ ବଧୂର ବ୍ରୀଡ଼ାସ୍ନିଗ୍ଧ ଶୁଭଦୃଷ୍ଟି ପରି !

ଗେଙ୍କ୍‌ଟିଙ୍କଚୁ ନାଲି ଗଳି ରାସ୍ତା ଉପରେ ପାଖର ଘରଗୁଡ଼ାକର ଛାଇ ପଡ଼ିଚି ତେରଛା ହୋଇ, ଜନହୀନ ଗଳିରାସ୍ତା ।

ପାର୍ଥ୍ ବନ୍ଦର, ଅଷ୍ଟ୍ରେଲିଆର ପାର୍ଥ୍ ବନ୍ଦର । ବମ୍ବେରୁ ଜାହାଜ ଆସି ଭିଡ଼ିଲା ପାର୍ଥ୍ ବନ୍ଦରରେ ।

ଉଦାର, ବିସ୍ତୃତ, ସୀମାହୀନ, ଦିଗହୀନ ଭାରତ ମହାସାଗର । ନେଳ ଲହଡ଼ିର ଧଳାଚୂଡ଼ା ଉପରେ ଝାମ୍ପ ଦାଉଛନ୍ତି ଧଳା ଗଲ୍ ପକ୍ଷୀ । ଉତ୍କ୍ଷିପ୍ତ ଲହରିର ଜଳକଣା ଉଡ଼ାଇ ଦେଉଚି, ସେମାନଙ୍କର ତପ୍ତ ବକ୍ଷ । ...ପାର୍ଥ୍

ବନ୍ଦର । କୁଲି ଦେହର ଝାଳଗନ୍ଧ, ତମାଖୁର ଗନ୍ଧ, ଅପରିଚିତ ଦେହର ଗନ୍ଧ, ଅଷ୍ଟ୍ରେଲିଆର ଗନ୍ଧ···ସବୁ ମିଶି କପରି ଅଦ୍ଭୁତ ଗୋଟାଏ ଗନ୍ଧ···ଚମତ୍କାର !

ଅମୀର୍‌ ଖାଁ ଗଳି । ଖଣ୍ଡେ ଟିଣ ଉପରେ ଆଲକାତରାରେ ଲେଖା ହୋଇ କାନ୍ଥରେ ମରିଚି, "ଅମୀର୍‌ ଖାଁ ଗଳି" । ବିଂଶ ଶତାବ୍ଦୀ ମାର୍କା ଅମରତ୍ୱ ! ଯୋଉ ଉପମହାଦେଶରେ କୋଟୀ ପରମାଣୁ ମିଳେ ଗୋଟାଏ ଅଚଳ ଦୋ ପଇସି ଦେଲେ ସେଠାରେ ଖଣ୍ଡେ ଟିଣ ଆଉ ସମାନ୍ୟ ଆଲକାତରା, ଅମରତ୍ୱ ପାଇଁ ତ—ଯଥେଷ୍ଟ ।

···"ସେ କଥା ଜାଣ କି ତମେ, ଢାକୁବାଲ

ଅମୀର ଖାଁ ଜାନ !

କାଳସ୍ରୋତେ ଭାସିଯାଏ ଜୀବନ, ଯୌବନ,

ଧନ, ମାନ ?"

ହାଃ—ହାଃ—ହାଃ ! ପାର୍ଥ୍ ବନ୍ଦର ଓ ଅମୀର ଖାଁ ଗଳି !

ହାଃ—ହାଃ—ହାଃ

ରାସ୍ତାର ଦୁଇପାଖରେ ନର୍ଦ୍ଦମା । ସକାଳେ ମଇଳା ପାଣିର ସୁଅ ବୋହୁଛି । ସେଇ ସୁଅରେ ଭାସି ଭାସି ଚାଲିଛି, ଗୋଟାଏ ମଲା ବିଲେଇ ଛୁଆ, ଛିଣ୍ଡା ଚିଟ କାଗଜ, କାଠି କୁଟା, ଅନେକ କିଛି !

ଭାରତ ମହାସାଗରର ଗୁଡ଼ାପାଣ ବିନ୍ଦୁ । ବାଥ୍‌ରୁମ୍‌ର ସାବୁନ ଫେଣମିଶା ମଇଳା ପାଣିର ଶୁଅ ଉତ୍କ୍ଷିପ୍ତ ଫେନଚୂଡ଼ ଲହରୀର କୁତ୍ସିତ ବ୍ୟଙ୍ଗସୃଷ୍ଟି !

ତା'ରି ଭିତରେ ଘାଣ୍ଟି ଘାଣ୍ଟି ଚାଲିଛୁ, କଳା, କୁତ୍ସିତ, କଙ୍କାଳସାର ରୋଗା, ଗୋଟାଏ ମଣିଷ ଛୁଆ; ଗାନ୍ଧି ମହାତ୍ମାଙ୍କର କୌଣସି ଏକ ହରିଜନ ଶିଶୁ । ହାସ୍ୟ ହରି ! ମଦନମୋହନ ତମର ଗୁଡ଼ଜ୍ଞାନ !

ହାଃ—ହାଃ—ହାଃ ।

ପିଲାଟା ଚମକ ପଡ଼ି ଚାହିଁଲା ମୋ ଆଡ଼େ । ଭୀରୁ, ମଳିନ ଆଖି, ହରିଜନ ବାଳକର ରକ୍ତହୀନ, ପିଙ୍ଗଳ ଆଖି !

ବିଂଶ ଶତାବ୍ଦୀରେ ମଧ୍ୟ ଭାରତ ଆବିଷ୍କାର ପାଇଁ ତଥାପି ଅନେକ କିଛି ବାକି ଅଛି । ବିଂଶ ଶତାବ୍ଦୀରେ ଶିଳ୍ପ ବ୍ୟବସାୟର ଉନ୍ନତି ସଙ୍ଗେ ସଙ୍ଗେ, କେତେକ ନୂତନ ବ୍ୟବସାୟ ଜନ୍ମ ନେଇଛି ଭାରତର ବାଣିଜ୍ୟ ଜଗତରେ ।

କୋଟି ପରମାତ୍ମା ଓ ଆଲ୍ଲାର ମେହେର୍‌ବାନୀ ଭିକ୍ଷା ସେଥିମଧ୍ୟରୁ ଏକ ବ୍ୟବସାୟ । ହରିଜନ ବାଳକମାନଙ୍କର ନର୍ଦ୍ଦମା ଘାଣ୍ଟିବା ଅନ୍ୟ ଏକ ବ୍ୟବସାୟ । ନର୍ଦ୍ଦମାର ପଙ୍କ ଭିତରେ, କୋଉଠି ପଡ଼ିଥାଏ ଗୋଟାଏ ସେଫ୍‌ଟିପିନ୍‌, ଦନ୍ତଭଙ୍ଗା ଛୁରୀ, ଅଧିକ ଏମିତି କେତେ କଣ । କୋଉଦିନ ବା ହରିଙ୍କର ବାତ୍ସଲ୍ୟର ମାତ୍ରା ଅଧିକ ହୋଇ ଉଠିଲେ, ଗୋଟାଏ ଦୁଇଣି, ନୋହିଲେ ଅଠଣି ପର୍ଯ୍ୟନ୍ତ ମିଳିଯାଏ ।

ଭାରତ ଆବିଷ୍କାର ସମ୍ବନ୍ଧରେ ଏ ସମସ୍ତ ଅନାବିଷ୍କୃତ, ନୂତନ ତଥ୍ୟ !

ଫୁଟା ପକେଟ୍ ବାଟେ, ତଳେ ପଡ଼ିଗଲା ସେଇ ଅଚଳା ଚାରଣିଟା ମୋର ! ସେତେବେଳକୁ କିଛି ବାଟ ଆଗେଇ ଆସିଥାଏ । ଚଳମାନ ପୃଥିବୀରେ ହଜି ଯାଉ ଅଚଳ ଚାରଣିଟା···କେମିତି ଗୋଟାଏ ଅଦ୍ଭୁତ ଆନନ୍ଦ !

ନକଲି ନକେଲ୍‌ର ଫଟା ବିକୃତ ଶବ୍ଦ ଗଳିପ୍ରସ୍ତର ସେଇ ନୀରବତା ଭିତରେ ସାମାନ୍ୟ ଶବ୍ଦ କରି ଉଠିଲା । ନର୍ଦ୍ଦମା ଭିତରୁ ସେଇ ହରିଜନ ବାଳକଟି ଉଠିଆସି, ଇଗଲ୍ ପରି ଝାମ୍ପ ନେଇଗଲା ସେଇ ଚାରଣିଟାକୁ !

ଆଖି ଦୁଇଟାରେ ସଫଳତାର ଆନନ୍ଦ !

ମୋ ଆଡ଼େ ଚାହିଁଲା ।

ତା'ର ଆଖି ଦୁଇଟାର କୋଣେକୋଣେ ଭରି ରହିଛି ଘୃଣା ଓ ଅବିଶ୍ୱାସ । ବିଶ୍ୱାସ କରେ ନା ମୋତେ, କାଳେ ଆସି ଛଡ଼ାଇ ନେବ ତା' ଠୁ ! ପାଟି ଭିତରେ ପୂରାଇ ଦେଲା ।

ତା'ପରେ ମୋ ଆଗେ ଆଗେ ଦୌଡ଼ି ଚାଲିଗଲା ଚିଲ୍ ପରି, ଯେପରି ଗୋଟାଏ ହିଂସ୍ର ଜାନୁଆର ହାବୁଡ଼ରେ ପଡ଼ିଚ ସେ ।

ଗଳିଶେଷର ମେହେନ୍ତରବସ୍ତି । ଅମିର ଖାଁ ଗଳି ମୁଣ୍ଡରେ ସହରର ମେହେନ୍ତରବସ୍ତି ।

ଏଇ ସେ ପିଲାଟା ଠିଆ ହୋଇଚ, ସେଇ ଭଙ୍ଗା କୁଡ଼ିଆର ପିଣ୍ଡାରେ । ସଜନାଗଛର ଧଳାଫୁଲ ଝରି ପଡ଼ିଚ ଅଗଣାରେ···ସୁନ୍ଦର ! ସେ ପିଲାଟା ଠିଆ ହୋଇ ଖଣ୍ଡେ ବିଡ଼ି ଟାଣୁଚ ମନର ଆନନ୍ଦରେ ।

ମୋତେ ଦେଖି, କୁଆଡ଼େ ଲୁଚିଗଲା ସେଇ ଭଙ୍ଗାକୁଡ଼ିଆର ଜଙ୍ଗଲ ଭିତରେ । ମେହେନ୍ତରବସ୍ତି ଭଙ୍ଗାକୁଡ଼ିଆର ଜଙ୍ଗଲ ଭିତରେ, କୁଆଡ଼େ ହଜିଗଲା ମୋର ସୁନାର ଅଷ୍ଟ୍ରେଲିଆ···ହାସ୍ୟ ଅଷ୍ଟ୍ରେଲିଆ !

ରାତି ଦୁଇଟା । ଆକାଶରେ ଜହ୍ନଟା ଦିଶୁଚ ଶେତା । ଆଖିରେ ନିଦ ନାହିଁ !

ଅଷ୍ଟ୍ରେଲିଆ···ସୁନାର ଅଷ୍ଟ୍ରେଲିଆ···ସୁଦୂରର ଅଷ୍ଟ୍ରେଲିଆ, ହାସ୍ୟ ଅଷ୍ଟ୍ରେଲିଆ !

ମୋର ଆତ୍ମଜୀବନୀରେ ଯଦି, କୌଣସି ମରଣଶୀଳ ମନୁଷ୍ୟଲାଗି ଲେଖିବ ପୁରା ଗୋଟାଏ ଅଧ୍ୟାୟ, ତା ହେଲେ ସେ ହେଉଚ ସିଗାରେଟ୍ ଦୋକାନୀ ନସୀର୍, ଯେ ବେପରୁଆ ଭାବରେ ସିଗାରେଟ୍ ବାକି ଦିଏ ମୋତେ ।

ଓଠରେ ଖଣ୍ଡେ ସିଗାରେଟ୍‌ରେ ନିଆଁ ଧରି ଚାଲିଲି ସେଇ ଅମୀର ଖାଁ ଗଳି ଆଡ଼େ, ଜାଣେ ନା କି ଦୁରନ୍ତ ତାର ଆକର୍ଷଣ !

ପୁଣି ସେଇ ମେହଲ୍ଲର ବସ୍ତି ! ହରିଜନମାନେ ଶୋଇ ପଡ଼ିଲେଣି ଆରାମରେ, ନିଶ୍ଚିନ୍ତରେ, ହରିଙ୍କର ଧୂଳିଧୂସର କୋଳରେ !

ଏଇ ସେଇ ସଜନାଗଛ ।

ବଙ୍କା ଛାଇ ତା'ର ପଡ଼ିଛି ତେରଛା ହୋଇ, ଜହ୍ନ ଆଲୁଅରେ ।

ସଜନାଗଛ ତଳେ ଖଣ୍ଡେ ଅଖା ବିଛାଇ, ଏଇ ଶୋଇଛି ସକାଳର ସେଇ ପିଲା । ଦେହ ଉପରେ ତାର ପଡ଼ିଛି ଚେନାଏ ଶେତା, ଜହ୍ନ ଆଲୁଅ ।

ରାତ୍ରି···ସୁନ୍ଦର, ଶାନ୍ତମସୃଣ, ଉଦାର, କୋମଳ ରାତ୍ରି !

ଆଜିର ସୁଦିନଟିର କଥା ଭାବି ଭାବି, ଆଖିରେ ତାର କେତେବେଳୁ ରାତ୍ରିର କୋମଳ ସ୍ପର୍ଶ ତଳେ ଲାଗି ଗଲାଣି ନିଦ !

କାଲି ପୁଣି ନିତିଦିନିଆ ସେଇ ସକାଳ ! ଅମୀର ମିଆଁ ଗଳି କଡ଼ର ନର୍ଦ୍ଦମା ଭିତରେ ସେଇ ଦୁର୍ଲଭ ରତ୍ନର ସନ୍ଧାନ !

ମୋ ଆଖିରେ ନିଦ ନାହିଁ !

ଅଷ୍ଟ୍ରେଲିଆ···ସୁନାର ଅଷ୍ଟ୍ରେଲିଆ···ଆଖିରେ ମୋର ନିଦ ନାହିଁ !

ସଜନାଗଛ ମୂଳେ, ସେଇ ବାଳକଟିର ଧୂଳିଶଯ୍ୟା ଉପରେ ଝୁଙ୍କି ପଡ଼ିଲି । ହାତରେ ତା'ର ସେଇ ଅଚଳ ଚୁରଣୀ, ଜହ୍ନଆଲୁଅ ପଡ଼ି ଚକ୍ ଚକ୍ କରୁଛି ! ଓଠରେ ତାର ଖାରୁ, ମଳିନ-ଧୂସର ଗୋଟିଏ କ୍ଷୀଣ ରେଖା ଯେପରି ଶୋଇ ପଡ଼ିଛି ।

ଚଲି ଆସିଲି !

ଆକାଶରେ ଜହ୍ନଟା ମହଳ ଦେଖା ଯାଉଛି, ସେଇ ଅଚଳ ଚୁରଣୀଟା ପରି !

[୧୯୪୬]



# ମହାନଗରୀର ରାତ୍ରି

ଗଙ୍ଗା ଜେଟୀରେ ଗୋଟାଏ ଷ୍ଟୀମରର ଅଶାନ୍ତ ଚୀତ୍କାର ଶୁଭୁଛି ।

ଚୌରଙ୍ଗୀର ଜନବହୀନ ରାସ୍ତା ବିଜୁଳିବତୀର ନିର୍ଜନ ଆଲୋକରେ ଦିଶୁଛି ପ୍ରେତପୁରୀ ପରି ଅଶରୀରୀ ଓ ରହସ୍ୟାବୃତ ।

ଚୌରଙ୍ଗୀ—ବଣିଆ ସଭ୍ୟତାର ମକ୍କାମଦିନା !

ଟ୍ରାମରାସ୍ତାର ସେପାଖେ ଦଳ ଦଳ ହୋଇ ଶରଣାର୍ଥୀ ଶୋଇଛନ୍ତି ମାଟିରେ —ତଳେ ମହାନଗରୀର ଧୂଳି, ଉପରେ ରାତିର ନିଶୀଥ ଆକାଶ । କୋଉଠି କୋଉଠି ବିଡ଼ିରୁ ଏପର୍ଯ୍ୟନ୍ତ ନିଆଁ ତଥାପି ନିଭି ନାହିଁ, ରାସ୍ତା କଡ଼ ଚୁଲ୍ଲୀରେ ରନ୍ଧନିଆଁ ଧପ୍‌ଧପ୍ କରୁଚି ।

ଆକାଶରେ ଶୁକ୍ଳ ଚତୁର୍ଦ୍ଦଶୀ ତିଥିର ନିଃସଙ୍ଗ ଚନ୍ଦ୍ର ମାତାଲ ପରି ଟଳିଟଳି ଚାଲିଛି ଆକାଶର ରାଜପଥରେ । ପାଖରେ ଗୋଟିଏ ବିଲାତି ହୋଟେଲରୁ ନାଚର ଅଡ୍‌ଡ଼ା କେତେବେଳୁ ଭାଙ୍ଗିଲାଣି । ଜଣେ ଜଣେ ବିଲାତି ପୋଷାକ ପିନ୍ଧା ସାହେବ ପାଞ୍ଚ ଦଶ ମିନିଟ୍ ଅନ୍ତରରେ ହୋଟେଲ ଭିତରୁ ବାହାରି ଆସୁଛନ୍ତି ଢୁଳିପଡ଼ି ମାରି ମାରି । ଚୌରଙ୍ଗୀ ପେଭ୍‌ମେଣ୍ଟ ।

'ସଲାମ ସାହେବ ।'

'ସଲାମ ।'

'ଗ୍ରେଳକଟି ମାଙ୍ଗ୍‌ତେହେଁ ?'

'ନନ୍‌ସେନ୍‌ସ ! କଣ କହୁଛ ?'—କଡ଼ା ଗଳାରେ ପଚାରିଲା । ମାତ୍ର ତା'ର ଏହାହିଁ ବ୍ୟବସାୟ । ଲୋକଟା ଟିକିଏ ଶଙ୍କି ଯାଇଁ କହିଲା, 'ବେଶୀ ଦୂର ନୁହେଁ, ଏଇ ପାର୍କ ଷ୍ଟ୍ରୀଟ ମୋଡ଼ରେ ସାହେବ !'

ଆଗକୁ ଆଗକୁ ଚାଲିଲି । ଘୃଣାରେ ଲଜ୍ଜାରେ ମୋର ଦେହ ଥରିଗଲା । ସେ ଲୋକଟିକୁ ଯଦି କୁକୁର ପରି ଗୁଳି କରି ମାରି ପାରନ୍ତି ! କି ନୀଚ, କି ଜଘନ୍ୟ । ଅଥଚ ଏ ଦଲାଲି ସଭ୍ୟତାର ସେ ତ ଜଣେ ପ୍ରତିନିଧି ! ରାଷ୍ଟ୍ର ଓ ବ୍ୟକ୍ତି ମଧ୍ୟରେ ଦଲାଲି କରି ଯଦି ନେତାର ସମ୍ମାନ ମିଳେ, ନ୍ୟାୟ ବିଚାର ଓ ବ୍ୟକ୍ତି ମଧ୍ୟରେ ଦଲାଲି କରି ଯଦି ଓକିଲର ପ୍ରତିଷ୍ଠା ମିଳେ, ଭଗବାନ ଓ ବ୍ୟକ୍ତି ମଧ୍ୟରେ ଦଲାଲି କରି ଯଦି ମହାପୁରୁଷ ଓ ମହାତ୍ମାର ପଦବୀ ମିଳେ, ତା' ହେଲେ କେଉଁ ହତଭାଗିନୀର ମାଂସ ଓ କେଉଁ କାମୁକର ଜାନ୍ତବ କ୍ଷୁଧା ଭିତରେ ଦଲାଲି କଲେ, ତାହା ନିନ୍ଦନୀୟ , ହେବ

କାହିଁକି ? ବରଂ ଏହି ଦଲାଲି ସଭ୍ୟତା ଓ ବଣିଆ ସଂସ୍କୃତି ! ଶେଷକୁ କେଉଁଦିନ ଏ ଦେଶର ଆତ୍ମାକୁ ନେଇ ଯେ ଏମାନେ ବନ୍ଧକ କରିଦେବେ, ତା'ର ଠିକଣା ନାହିଁ ! ଦଲାଲି ପରସେଣ୍ଟେଜ୍‌ଟା ତ ମିଳିବ୍—କ୍ଷତି କଣ ?

ଜଣେ କିଏ ଗୋଟିଏ ଖୁମ୍ବର ଉହାଳ ଗ୍ଭଇରେ ଠିଆ ହୋଇଥିଲା । ମୋତେ ଦେଖି ସିକାରେଟ ପରି ଝାମ୍ପ ଦେଇ ମୋ ଆଗରେ ଆସି ଠିଆ ହୋଇଗଲା ।

ସେହି ଏକ ବିଜ୍ଞାପନ ; 'ବେଶୀ ଦୂର ନୁହେଁ ବାବୁ, ଏଇ ପାର୍କଷ୍ଟ୍ରୀଟ ମୋଡ଼ ଉପରେ !'

ପଛକୁ ଫେରି ଗ୍ଭହିଁଲି, ସେ ପ୍ରଥମ ଲୋକଟା ଜଣେ ସାହେବୀ-ପୋଷାକ ପରିହିତ ବିଳାସୀଙ୍କୁ ଧରି ଗୋଟାଏ ଟ୍ୟାକ୍‌ସିରେ ଉଠୁଛି !···ଆଗକୁ ଆଗକୁ ଅନାସକ୍ତ ଭାବରେ ଗ୍ଭଲିଲି ; ଯେମିତି କିଛି କଥା ଶୁଣିନାହିଁ ! ସେ ଲୋକଟା ମୋ ପଛରେ କେଇ ପାହୁଣ୍ଡ ଆସି ପୁଣି ଫେରିଗଲା । ଗୋଟିଏ ଘୋଡ଼ାଗାଡ଼ିବାଲା, ରାସ୍ତା ଉପରେ ବସି ଢୁଳାଇ ନେଇ ନେଇ ଢଳ୍‌ଢଳିଆ କଣ୍ଠରେ ଡାକିଲା··· 'ଆଇୟେ ସା'ବ, ବଡ଼ାବଜାର ! ବଡ଼ାବଜାର ସା'ବ ।'

ପୁଣି ଆଉ ଜଣେ । ସେଇ ଏକ କଥା···'ଏଇ ପାର୍କଷ୍ଟ୍ରୀଟ ମୋଡ଼ ଉପରେ !' ସେ ଲୋକଟା ଆଡ଼େ ଥରେ ଗ୍ଭହିଁଲି !—ପାର୍କଷ୍ଟ୍ରୀଟ ମୋଡ଼ର କଥା, ସେ ବିଶଦ ଭାବରେ ବର୍ଣ୍ଣନା କରିବାକୁ ଲାଗିଲା ।

ପଗ୍ଭରିଲି···'ଏହା କଣ ରୋଜଗାର ?'

ସେ ଲୋକଟା ନିର୍ବିକାର ଭାବରେ ଜବାବ ଦେଲା···

'ହଁ ବାବୁ, ପର୍‌ସେଣ୍ଟେଜ୍ ଆଉ ବକ୍‌ଶିଶରୁ ରୋଜଗାର ମନ୍ଦ ହୁଏ ନାହିଁ !'

ତା'ପରେ ଗ୍ଭଲିଲି ପାର୍କଷ୍ଟ୍ରୀଟ ମୋଡ଼ରେ ଲୋଭନୀୟ ବିଜ୍ଞାପନ !

× × × ×

ପାର୍କଷ୍ଟ୍ରୀଟ ମୋଡ଼ ନୁହେଁ, ତା'ର ଅନ୍ତର ଆଗକୁ ।

ମାର୍ଚ୍ଚ ମାସର ରାତି ! ତଳର ମାଟି ଉପରୁ ଗୋଟାଏ ଗରମ ବାଷ୍ପ ବାହାରୁଛି । ସର୍ବଂସହା ଧରଣୀର ମର୍ମଭେଦୀ ଦୀର୍ଘଶ୍ୱାସ ! ନିଶ୍ୱାସ ରୁଦ୍ଧ ହୋଇ ଆସିଲା ପରି ଲାଗୁଛି । ରାସ୍ତାର ଡାହାଣ ପାଖରେ ଛିମିଲି ଗଛ ଗୁଡ଼ାକରେ ଧରିଛି ଅସୁମାରି ଫୁଲ, ପାରିଖଡ଼ି ପରି ଉଞ୍ଚା କୋଠା ଗୁଡ଼ାକରେ କେତେ ହଜାର ହଜାର ପରିବାର ଅବିକା ହୁଏତ ନିଦ୍ରା ଅଚେତନ ହୋଇ ପଡ଼ିବେଣି···ସ୍ୱାମୀ, ସ୍ତ୍ରୀ, ଭାଇ, ଭଉଣୀ, ବାପ, ଝିଅ, ସମସ୍ତେ !

ଗୋଟାଏ ଗଳି, ତା' ପରେ ଗୋଟାଏ ଉପଗଳି, ସେଇ ଉପଗଳି ଯେଉଁଠି ଶେଷ ହୋଇଛି, ସେଇଠି ତଳ ମହଲାର ଗୋଟାଏ ଫ୍ଲାଟ । ଉପରେ ଫ୍ଲାଟ

ଘୁଡ଼ାକରେ ଶୁଭୁଛୁ ଉଚ୍ଛୃଙ୍ଖଳ ହସ, ମାତାଲ କଣ୍ଠର କୋଲାହଳ··· ! ଏଇ ତା' ହେଲେ ପାର୍କଷ୍ଟ୍ରୀଟ ମୋଡ଼ !

ସେ ଲୋକଟା ବାହାରୁ ଦରଜା ଶିକୁଳି ହଲାଇ ଡାକିଲା । ଦରଜା ଖୋଲିଗଲା । ଯିଏ ଦରଜା ଖୋଲିଲେ, ସେହି ହୁଏତ ପାର୍କଷ୍ଟ୍ରୀଟ୍ ମୋଡ଼ର ବାସିନ୍ଦା ! ଲଜ୍ଜାରେ ମୁଣ୍ଡ ତଳକୁ କରିନେଲି ! ତଳକୁ ଚାହିଁ କଣ ଯେ ଭାବୁଥିଲି, ନିଜେ ଜାଣେନା । ଲୋକଟା ମୋତେ ସାମାନ୍ୟ ଠେଲିଦେଇ କହିଲା···'ବାବୁ, ବକ୍‌ଶିଶ୍ !' ପକେଟରୁ ଖଣ୍ଡେ ପାଞ୍ଚଟଙ୍କିଆ ନୋଟ୍ କାଢ଼ି ସେ ଲୋକଟାର ହାତରେ ଗୁଞ୍ଜି ଦେଲି । ସେ କୃତକୃତ୍ୟ ହୋଇ ନିତ୍ୟଅଭ୍ୟସ୍ତ ଭଙ୍ଗୀରେ କହିଲା, ···'ସଲାମ !' ତା'ପରେ ପାର୍କଷ୍ଟ୍ରୀଟ୍ ମୋଡ଼ର ଅଧିବାସିନୀଙ୍କ ଆଡ଼େ ଚାହିଁ କହିଲା, 'ମୋତେ ମିଳିଯାଉ ଦିଦି !'

ମୁଁ ପଚାରିଲି···'ଆଉ କଣ ?'

ସେ ଲୋକଟା କହିଲା,···'ମୋର ପର୍‌ସେଣ୍ଟେଜ୍ !'

ଆଉ ଖଣ୍ଡେ ପାଞ୍ଚ ଟଙ୍କିଆ ନୋଟ୍ ସେ ଲୋକଟା ହାତରେ ଗୁଞ୍ଜି ଦେଇ କହିଲି,···'ଯାଅ ଏଥର !'

ସେ ଲୋକଟା ହୁଇସିଲ୍ ମାରି ମାରି ବେପରୁଆ ଭାବରେ ଚାଲି ଗଲା । ପାର୍କଷ୍ଟ୍ରୀଟ୍ ମୋଡ଼ର ଅଧିବାସିନୀ ମୋ ଆଡ଼େ କିଛି ସମୟ ବିସ୍ମିତ ଆଖିରେ ଚାହିଁ କହିଲେ, 'ଭିତରକୁ ଆସନ୍ତୁ ।'

ଶୋଷରେ ତଣ୍ଟିଟା କପରି ଶୁଖି ଆସିଛି । ଭିତରକୁ ଯାଇଁ ପଚାରିଲି, 'କିଛି ପିଇବାକୁ ଦେଇ ପାରିବ ?'

ସେ ସ୍ତ୍ରୀ ଲୋକଟି କହିଲା, 'ନିଶ୍ଚୟ । ତା'ପରେ ଗୋଟିଏ ଝିଅର ନାଁ ଧରି ଡାକିଲା—

'ମିନୁ, ମିନୁ !'

କିଛି ସମୟ ପରେ ତେର ଚଉଦ ବର୍ଷର ଝିଅଟିଏ ଆସିଲା ନିଦ ମଳମଳ ଆଖିରେ, ମୁହଁରେ ତା'ର ବରକତର ଚିହ୍ନ ସୁସ୍ପଷ୍ଟ । ମାତ୍ର ସେଥିରେ ତାର ଉଦ୍ଭିନ୍ନ କମଳ ପରି ମୁଖମଣ୍ଡଳର ସୌନ୍ଦର୍ଯ୍ୟ ଯେପରି ଆହୁରି ଶତଗୁଣ ବଢ଼ି ଉଠିଛି । ସେ ସ୍ତ୍ରୀଲୋକଟି କହିଲା···'ଗୋଟାଏ ଡମ୍ବଲର୍‌ରେ ବରଫ ଦେଇ ନେଇ ଆ ତ, ମିନୁ ।'

ଯାହା ହେଉ, ଭଦ୍ର ମହିଳାଙ୍କର ରୁଚି ଅଛି । ଆଶ୍ଚର୍ଯ୍ୟ ହେଲି ! ମିନୁ ଚାଲିଗଲା । ନିଦ୍ରାଶିଥିଳିତ ବେଣୀ, କେଉଁ କାମୁକର ବ୍ୟଗ୍ର ବାହୁ ପରି, ମାଂସଳ ନିତମ୍ବକୁ ତା'ର ବାରମ୍ବାର ବେଷ୍ଟନ କରି ଯାଉଥିଲା । ବେଣୀରେ ବାନ୍ଧିଥିଲା ପୁଣି ଗୋଟିଏ ରକ୍ତ ଗୋଲାପ । ତାହା କିନ୍ତୁ ମଥିତ, ମଳିନ ଦିଶୁଥିଲା !

ସେଇଆଡ଼େ ଚାହିଁ ରହିଥିଲି ମୁଗ୍ଧ ଆଖିରେ । ସେ ସ୍ତ୍ରୀ ଲୋକଟି କହିଲା, 'ସେ ମୋର ଭଉଣୀ ବାବୁ । କିନ୍ତୁ ତା'ର ଶୁଭବିଭା ହୋଇନାହିଁ ।'

ସେ ହୁଏତ ଆଶଙ୍କା କରୁଥିଲା, ମୁଁ ମିନୁର ମାଂସ ଅଡ଼ୁ ବସିବି । ମାତ୍ର ଏ ମାଂସ କଣ ଦେହର କ୍ଷୁଧା ମେଣ୍ଟାଇଛି କେବେ ? ଏ ମାଂସ କେବଳ ମନର କ୍ଷୁଧାପାଇଁ । ନିଜର କନ୍ୟା ପରି ମିନୁକୁ ସ୍ନେହ କରି ହୁଏ, କିନ୍ତୁ ବାର-ବିଳାସିନୀ ପରି ତାକୁ ଉପଭୋଗ କରି ହେବ ନାହିଁ ।

ମିନୁ ଗୋଟିଏ ଟ୍ରେରେ ବରଫ ମିଶା ଗୋଟିଏ ବିୟରର ଗ୍ଲାସ ଆଣି ରଖି ଦେଇଗଲା ।

ସେ ସ୍ତ୍ରୀ ଲୋକଟି କହିଲା, 'ସିଗାରେଟ୍ ଆଣିଲୁ ନାହିଁ ଯେ !'

ମିନୁ ସିଗାରେଟ ଆଣିବା ପାଇଁ ଚାଲି ଯାଉଥିଲା । ମୁଁ କହିଲି, 'ମୋ ପାଖରେ ସିଗାରେଟ୍ ଅଛି, ବସ ତମେ ।'

ମିନୁ ବସିଲା । ନିଦରେ ଆଖି ଦୁଇଟା ତା'ର ଢୁଳିପଡ଼ୁଥିଲା ! ଇଚ୍ଛା ହେଉଥିଲା, ମିନୁର ମୁଣ୍ଡକୁ କୋଳରେ ରଖି ତାକୁ ଶୁଣାଇବା ପାଇଁ ରୂପକଥାର ରାଜପୁତ୍ର ଓ ରାଜକନ୍ୟାର କଥା । ମନପବନ ଘୋଡ଼ା ଉପରେ ବସିଛି ରାଜକୁମାର । କୋଳରେ ତାର ରାଜକୁମାରୀ ! ମନପବନ ଘୋଡ଼ା ତାର ବେଗରେ ଉଡ଼ି ଚାଲିଛି । ଆଉ ପଛରେ କୁଟିଛି ଲୁହାଫେରନ୍ତା କ୍ଷୁଧାର୍ତ୍ତ, ଦୁର୍ଦ୍ଦାନ୍ତ ରାକ୍ଷସ ।

ମିନୁ ଭଡ଼ି ମୋଡ଼ି ହୋଇ କହିଲା, 'ମୁଁ ଯାଉଛି ଦିଦି, ମୁଣ୍ଡ ବିନ୍ଧିଲାଣି ।'

ମିନୁ ଉଠିଗଲା ।

ଉଚ୍ଛଳ ସେଇ ଦୁଇ ବର୍ତ୍ତୁଳ ନିତମ୍ବ ଉପରେ ନର୍ତ୍ତିତ ଦୀର୍ଘ କବରୀ । ମିନୁ କିନ୍ତୁ ପଛରେ ରଖିଗଲା କରୁଣା, ସମବେଦନା, ବାତ୍ସଲ୍ୟ, ଘୃଣା, ସ୍ନେହ ଓ ପ୍ରବୃତ୍ତି ପ୍ରଭୃତି କେତେଗୁଡ଼ିଏ ପରସ୍ପର-ବିରୋଧୀ ଆବେଗର ମିଳିତ ଆବେଶ ।

ମିନୁ ଚାଲିଯିବା ପରେ, ଚାହିଁଲି ସେ ଲୋକଟି ଆଡ଼େ । ବୟସ ଚାଳିଶିର ପାଖାପାଖି ହେବ । ଦେହର ଚମ ଶିଥିଳ ହୋଇଗଲାଣି । ମୁହଁ ଉପରେ, ଦୁଇ ଆଖି କୋଣରେ ବୟସ କେତୋଟି କୁଟିଳ ରେଖା ଟାଣି ଦେଇ ଗଲାଣି । ତଥାପି ଚେଷ୍ଟାକରି ସେ ନିଜକୁ ଯୁବତୀ କରିବାରେ କାର୍ପଣ୍ୟ କରିନାହିଁ । ମୁହଁ ଉପରଯାକ ବୋଳା ହୋଇଛି ପେଣ୍ଟ୍ । ଓଠରେ ଲିପ୍‌ଷ୍ଟିକ୍, ଗାଲରେ ରୁଜ୍, କିନ୍ତୁ ଏହା ଫଳରେ ବୟସ ତା'ର ଯେମିତି ଆଉରି ଦଶବର୍ଷ ଆଗେଇ ଯାଇଛି । ପୁଅ ଥିଲେ ତା'ର କେଜାଣି, ମୋରି ବୟସର ହୁଅନ୍ତାଣି ।

ଅଥଚ ଆଜ ସେ ଆଉ ମୁଁ···ପାର୍କଷ୍ଟ୍ରୀଟ ମୋଡ଼ର ଏଇ ଫ୍ଲାଟ୍···ସୋଫା-ତଳେ ହ୍ୱିସ୍କିର ବୋତଲ ଦୁଇଟା ପଡ଼ିଛି ଖାଲିହୋଇ···ପାଖର ଆସ୍‌ଟ୍ରେଟା ଖଣ୍ଡିଆ ସିଗାରେଟ୍‌ରେ ରୁଦ୍ଧ ହୋଇଗଲାଣି ।

କି ଭୀଷଣ ଏ ନାରୀ ମୂର୍ତ୍ତି ! ଏ ଶିଥିଳ ଲୋଳଚର୍ମ ତଳେ ଦିନେ ବଞ୍ଚିଥିଲା ଯେଉଁ କନ୍ୟା, ବଧୂ ଓ ମାତା, ତାକୁ ବଞ୍ଚିବାର ଏକ ବିକଟ ବାସ୍ତବତା ଅତି ନିର୍ମମ ଭାବରେ ହତ୍ୟା କରି ଆଜି ବଞ୍ଚାଇ ରଖିଛି ଯାହାକୁ, ସେ ନାରୀରୂପିଣୀ ବୀଭତ୍ସ ମହାକ୍ଷୁଧା । ମନୁଷ୍ୟର ଆତ୍ମାକୁ ଗ୍ରାସକରି ସୁଦ୍ଧା ତାହାର କ୍ଷୁଧା-ନିବୃତ୍ତ ହୋଇ ନାହିଁ । କି ଭୀଷଣ ! କି ବିକଟ ! ଲୋମ ମୋର ତଥାପି ଟାଙ୍କୁରି ଉଠିଲା, ଘୃଣାରେ ।

ପ୍ରତ୍ୟେକର ଦେହେଉରେ ଏମିତି କାହାଣୀ କିଛି ଥାଏ, ଯାହା ମନେ ପକାଇ-ଦିଏ ଆଉ ଜଣକର କଥା । ସେହିପରି ସେ ସ୍ତ୍ରୀଲୋକଟିର ଦୁଇ ନାକପୁଡ଼ା ଠାରୁ ଚିବୁକ ପର୍ଯ୍ୟନ୍ତ ଅର୍ଦ୍ଧବୃତ୍ତାକାରରେ ଲମ୍ବି ଆସିଥିବା ଦୁଇଟି ଗଭୀର ରେଖା, ମନେ ପକାଇ ଦେଲା ମୋର ଆଉ ଜଣେ ସ୍ତ୍ରୀଲୋକର କଥା ।

ହାଉଡ଼ା ଠାରୁ ଯେଥର ଯାଉଥିଲି ଦିଲ୍ଲୀ-ପଞ୍ଜାବ ମେଲ୍‌ରେ । ଇଣ୍ଟରକ୍ଲାସ ଡବାରେ ଭୀଷଣ ଭିଡ଼ । ତିଳଧାରଣ ପାଇଁ ସ୍ଥାନ ନ ଥିଲା । ହାଉଡ଼ା ଠାରୁ ଆସାନ୍-ସୋଲ ପର୍ଯ୍ୟନ୍ତ ଯାଇଥିଲି ଠିଆ ହୋଇ । ଗୋଟିଏ କୋଣରେ ଲମ୍ବା ବାର୍ଥର ଶେଷକୁ ଜଣେ ହିନ୍ଦୁସ୍ଥାନୀ ମହିଳା ବସିଥିଲେ କମ୍ବଳ ବିଛାଇ । ମୋତେ ଦେଖି କହିଲେ···'ଆଉ କେତେ ଠିଆହୋଇ ଥିବ ବାପା ! ବସିପଡ଼ ଏଇଠି ।'

ସଙ୍କୋଚରେ ତାଙ୍କ ପାଖରେ ଜାକିଜୁକି ହୋଇ ବସିଥିଲି । ସ୍ୱଚ୍ଛନ୍ଦ ଭାବରେ ବସିବା ପାଇଁ ସେ ମୋତେ ଅଭୟ ଶୁଣାଇ କହିଲେ···'ଲଜ୍ଜା କରି ବାବୁ ! ତମେ ତ ମୋ ପୁଅ ବୟସର । ମୋ ପୁଅ ବି ଅଛି ଦିଲ୍ଲୀରେ । ମୁଁ ତା ପାଖକୁ ଯାଉଛି ଯେ !'

ତାଙ୍କର ମଧ୍ୟ ଦୁଇ ନାକପୁଡ଼ାତଳୁ ଚିବୁକ ପର୍ଯ୍ୟନ୍ତ ଲମ୍ବି ଆସିଥିଲା ଦୁଇଟି ଅର୍ଦ୍ଧବୃତ୍ତାକାର ରେଖା । ସେ ରେଖା କିନ୍ତୁ ଥିଲା କୋମଳ ଓ ମସୃଣ, ଏପରି କଠୋର ନୁହେଁ । ଏ ସ୍ତ୍ରୀଲୋକଟି ମୋତେ ଯେମିତି କେଉଁଠି ବାଟରେ ଘାଟରେ ଦେଖିଥିଲେ, ନିଶ୍ଚୟ ସମ୍ବୋଧନ କରିଥାନ୍ତା 'ବାପା' ବୋଲି ।

ଆଜି କିନ୍ତୁ ଏଇ ପାର୍କଷ୍ଟ୍ରୀଟ ମୋଡ଼, ରାତି ଦୁଇଟା ବାଜିବାକୁ ପନ୍ଦର ମିନିଟ ବାକି; ମୋ ଆଗରେ ବସିଛି ସେ ମୁହଁରେ ରୁଜ୍ ପାଉଡ଼ର ମାଖି !

ନୀରବତା କ୍ରମେ ଅସହ୍ୟ ହୋଇ ଉଠୁଛି । ଏଠୁ ପଳାଇ ପାରିଲେ ଯେପରି ରକ୍ଷା ।

ପଚାରିଲି, 'ତୁମ ନାଁ କଣ ?'

ସେ କହିଲା—'ଚନ୍ଦ୍ରା' ! ତା' ପରେ ଅଭ୍ୟସ୍ତ କଣ୍ଠରେ କହିଲା··· 'ଭିତରକୁ ଆସନ୍ତୁନା ! ଏଠି ଆଉ କେତେବେଳ ଯାଏ ବସିବେ ?'

ଦୁଇଖଣ୍ଡ ନୋଟ କାଢ଼ି ଚନ୍ଦ୍ରା ହାତରେ ଗୁଞ୍ଜି ଦେଇ କହିଲି···'ରାତି ଅନେକ ହେଲାଣି । ଯାଉଛି ମୁଁ !'

ଚନ୍ଦ୍ରା ହୁଏତ ମନେମନେ ଭାବୁଥିଲା ଏ ଅପ୍ରତ୍ୟାଶିତ ଅର୍ଥ ଉପରେ ତା'ର କୌଣସି ନୈତିକ ଅଧିକାର ନାହିଁ । ତେଣୁ ସେ ପୁଣି କଣ କହିବାକୁ ବସିଥିଲା ସେତିକବେଳେ ଦରଜା ଖୋଲି, ମୁଁ କହିଲି···

'ମିନୁକୁ ଅଧେ ଦେଇଦେବ ସେଥିରୁ !'

ଚନ୍ଦ୍ରା କହିଲା···'କାଲି ତାର ଶୁଭବାଳ ପଡ଼ନାହିଁ ଯେ !'

ଚାଲି ଯାଉଁ ଯାଉଁ ମୁଁ ଶୁଣିଲି ।

ମାର୍ଚ୍ଚର ଜ୍ୟୋତ୍ସ୍ନାଚପଳ ରାତ୍ରି ମୁହୂର୍ତ୍ତିକ ମଧ୍ୟରେ ବିଷାକ୍ତ ହୋଇ ଉଠିଲା । ଦିନେ ମିନୁର ଶୁଭବାଳ ପଡ଼ିବ । ତା'ପରେ ତା'ର ମାଂସ ବାଣ୍ଟି ଖାଇବେ ମହାନଗରୀର ବିଳାସୀମାନେ ! ଯେଉଁଦିନ ସେ ମାଂସ ସଢ଼ିଯିବ, ସେଦିନ ସେ ଫିଙ୍ଗାହେବ ଉଚ୍ଛିଷ୍ଟ ମାଂସହାଡ଼ ପରି କେଉଁଠି କେଉଁ ନର୍ଦ୍ଦମାରେ !

× × × ×

ତା'ପରଦିନ ରାତି ବାରଟା । ସେଇ ଚୌରଙ୍ଗୀ ପେଭ୍‌ମେଣ୍ଟ୍, ସେଇ ପ୍ରଶ୍ନ···'ଗ୍ରେକ୍‌ସ୍ ମାଙ୍ଗ୍‌ତେହେଁ ସାହେବ ?'

ମୁଁ ଚାଲିଛି ପାର୍କଷ୍ଟ୍ରୀଟ୍ ମୋଡ ଉପରେ ସେଇ ଫ୍ଲାଟ୍ ଆଡ଼େ !

ସେଇ ଫ୍ଲାଟ୍ । ଭିତରୁ ଦରଜା ବନ୍ଦ । କଡ଼ା ଝଣ ଝଣ କଲି । ଦରଜା ଫିଟିଲା । ମିନତି କହିଲା···'ଆସନ୍ତୁ ।' ଭିତରକୁ ଯାଇଁ ଗତ ରାତିର ସେଇ ସୋଫା ଉପରେ ବସି ପଡ଼ିଲି । ମିନତିର ଉଦ୍ଭିନ୍ନ-କମଳ-ମୁଖ, କାଲିଠାରୁ କେତେ ଆହୁରି ସୁନ୍ଦର, ଆହୁରି ପ୍ରସନ୍ନ !

ମିନତି କହିଲା···'ଭିତରେ କିଏ ଦୁଇଜଣ ଅଛନ୍ତି । ଦିଦି ଅବିକା ଆସିବେ, ଆପଣ ବସନ୍ତୁ । ମୁଁ ବିଅର୍ ନେଇ ଆସେ !'

ମୁଁ କହିଲି···'ନାଁ, ଖାଲି ପାଣି ଆଣ ମିନୁ ।'

କିଛି ସମୟ ପରେ ମିନତି ଗୋଟାଏ ଗ୍ଲାସରେ ପାଣି ଆଣି ପାଖରେ ଟି'ପୟ ଉପରେ ରଖିଦେଇ ଚାଲି ଯାଉଥିଲା । ମୁଁ କହିଲି···'ବସ ମିନୁ !'

ଦ୍ୱିଧା ଓ ସଙ୍କୋଚରେ ମିନୁ ମୋର ସୋଫାର ଗୋଟିଏ କୋଣରେ ବସିଲା ।

ମୁଁ ପଚାରିଲି—'ତମ ଘର କେଉଁଠି ମିନୁ ?'

ମିନୁର ଦୁଇଆଖି ଏ ପ୍ରଶ୍ନରେ ଛଳଛଳ ହୋଇ ଉଠିଲା । କ୍ରମେ ତା'ର ଦୁଇ କପୋଳ ଗଣ୍ଡ ଉପରେ ବହି ଆସିଲା ଦୁଇ ଧାର ଲୁହ !

ମୁଁ ପଚାରିଲି—'କାନ୍ଦିଲ ଯେ !'

ସେ କହିଲା—'ଆମ ଘର ଏଠୁ ଅନେକ ଦୂର ବାବୁ ! ଆମେ ପଳାଇ ଆସୁଥିଲୁ । ମା ବାପା କେଉଁଠି ହଜିଗଲେ । ଭାଇ ହାଣମୁହଁରେ ମଲା ।'

'ମା ଶେଷକୁ ମୋତେ ଏଇଠି···' ଆଉ କିଛି କହି ପାରିଲା ନାହିଁ । ହତଭାଗିନୀ ମାତା ଶେଷକୁ ନିଜ ଜୀବନର ଭାରକୁ ଉଶ୍ୱାସ କରିବା ଲାଗି, ତାକୁ ବନ୍ଦୀ କରି ଦେଇ ଯାଇଛି, ଏଇ ପାର୍କଷ୍ଟ୍ରୀଟ ମୋଡ଼ରେ ।

ଏ ପୃଥିବୀରେ ଅଜି କାନ୍ଦିବା ପାଇଁ ଏତେ ଉପାଦାନ ମିଳୁଛି ଯେ କାନ୍ଦିବା ଅତି ସ୍ୱାଭାବିକ ହୋଇ ଉଠିଛି । ଆଉ ଲୁହ ନାହିଁ ; ସେଇଥିପାଇଁ ମିନୁ ସଙ୍ଗରେ ଆଖିର ଲୁହ ମିଶାଇ କାନ୍ଦି ପାରିଲି ନାହିଁ ।

ପଚାରିଲି, 'ତୁମେ ପାଠ ପଢ଼ିଛ ମିନୁ ?'

ମିନୁ କହିଲା, 'ହଁ, ବହି ପଢ଼ିପାରେ ।'

ପକେଟରୁ ଖଣ୍ଡେ ଗ୍ରେଟ ରୂପକଥାର ବହି କାଢ଼ି ତା' ହାତରେ ଦେଇ କହିଲି···'ମନ ଯେତେବେଳେ ବେଶୀ ଖରାପ ହେବ, ସେତେବେଳେ ବହି ଖଣ୍ଡିକ ପଢ଼ିବ ମିନୁ, ରଖିଥାଅ ।'

କୁମାରୀସୁଲଭ ଚପଳତାରେ ମିନୁ ବହିର ସୁନ୍ଦର ମଲାଟଟା ଉପରେ କେଇ-ଥର ହାତ ବୁଲାଇ ନେଲା । ବହିର ମଲାଟ ଉପରେ କେଉଁ ସେ ନାଁ ଅଜଣା ଦେଶର ରାଜକୁମାରର ଚିତ୍ର । ମନ ପବନ ଘୋଡ଼ାରେ ଉଡ଼ି ଚାଲିଛି, ବନ୍ଦିନୀ ରାଜକନ୍ୟାକୁ ମୁକ୍ତ କରିବା ପାଇଁ । .

କେଜାଣି ମିନୁ ହୁଏତ ଭାବୁଥିଲା ତାର ସ୍ୱପ୍ନର ରାଜକୁମାର କେବେ ଆସିବ କି ? ନା, ହୁଏତ ଆସିବ ନାହିଁ । ମହାନଗରୀର ଉପକଣ୍ଠର ଅଗ୍ନିଦଗ୍ଧ ବନସ୍ତ ମଝିରେ ମନପବନ ଘୋଡ଼ାର ପକ୍ଷ ଭାଙ୍ଗି ପଡ଼ିଛି ।

ସିଡ଼ିରେ ଚନ୍ଦ୍ରା ଆଉ ତା'ର ଦୁଇ ମଦ୍ୟପ ବିଳାସୀଙ୍କର ଉଚ୍ଛୃଙ୍ଖଳ ପାଦଶବ୍ଦ ଶୁଭିଲା । ମିନତି ଉଠି ଚାଲିଗଲା ।

ସେ ଦୁଇ ଜଣ ଚାଲିଗଲେ । ଚନ୍ଦ୍ରା ଦରଜା ବନ୍ଦକରି ମୋ ପାଖରେ ଆସି

ବସିପଡ଼ିଲା । ଦେହରୁ ତା'ର ବାହାରୁଥିଲା ଶସ୍ତା ଜାନ୍‌ର ଗନ୍ଧ । ଘୃଣାରେ ଘୃଣା ଆସିଲା ।

ଚନ୍ଦ୍ରା କହିଲା—'ଆଜି ଆଉ ଏଠି ନୁହେଁ ବାବୁ, ଉପରକୁ ଆସନ୍ତୁ ।'

ଇଚ୍ଛା ନଥିଲା; ମାତ୍ର ଅଦମ୍ୟ କୌତୂହଳ ଦମନ କରି ନ ପାରି ଚନ୍ଦ୍ରାର ପ୍ରସ୍ତାବରେ ସମ୍ମତ ହୋଇ ତା ପଛେ ପଛେ ଉପରକୁ ଆସିଲି । ଉପର ମହଲାରେ ଚନ୍ଦ୍ରାର କେଳି ମନ୍ଦିର । ଭିତରଟାଯାକ ହୁଇସ୍କି, ସୋଡ଼ା ବୋତଲ ଆଉ ସିଗାରେଟ୍ ଭର୍ତ୍ତି ।

ଚନ୍ଦ୍ରା ଖଣ୍ଡେ ସୋଫା ଉପରେ ବସି ପଡ଼ିଲା । ଜାନ୍ ଓ ହୁଇସ୍କି ନିଶାରେ ତାର ମୁଣ୍ଡ ଧରିଥିଲା ।

ହଠାତ୍ ଆଖି ପଡ଼ିଲା ମୋର, ଚନ୍ଦ୍ରାର ଡ୍ରେସିଂ ଟେବୁଲ ଉପରେ ଖଣ୍ଡେ ଫ୍ରେମବନ୍ଧା ଫଟୋ ଉପରେ । ଫଟୋଟି ଜଣେ ସୌମ୍ୟ-ଦର୍ଶନ ଯୁବକର । ପାଖକୁ ଯାଇଁ ସେ ଫଟୋଟିକୁ ଦେଖିଲି ।

ଚନ୍ଦ୍ରା ଝଡ଼ ପରି ସୋଫା ଉପରୁ ଉଠିଆସି, ସେ ଫଟୋ ଖଣ୍ଡିକ ଡ୍ରୟାର ଭିତରେ ପୂରାଇ ବନ୍ଦ କରିଦେଲା ।

ମୁଁ ବିସ୍ମିତ କଣ୍ଠରେ ପଚାରିଲି···'ଉସ୍ତନାହିଁ ଚନ୍ଦ୍ରା । ତୁମର ପ୍ରେମିକ ଶିରୋମଣିଙ୍କୁ ଥରେ ଭଲକରି ଦେଖିଲେ କ୍ଷତି କଣ ?'

ଚନ୍ଦ୍ରା ଅଶ୍ରୁ ଉଦ୍‌ବେଳିତ କଣ୍ଠରେ କାନ୍ଦି କାନ୍ଦି କହିଲା···'ଜାଣ, ଜାଣ ବାବୁ, କିଏ ସେ ! ସେ ମୋର ନିଜର ପୁଅ—ଜନ୍ମ ଦେଇଥିଲି ଯାହାକୁ ଦଶମାସ ଗର୍ଭରେ ଧରି ! ଜାରଜ ନୁହେଁ ସେ ବାବୁ, ତା ବାପର ପୁଅ । ଓଃ, ଯେଉଁଦିନ ତାକୁ ମୋ'ରି ଆଖି ଆଗରେ ହାଣି ପକାଇଲେ । ମଣିଷ କେମିତି ପଶୁ ହୁଏ, ସେହିଦିନ ମୁଁ ଦେଖିଛି । ସ୍ୱାମୀଙ୍କୁ ମାରିଲେ ସେମିତି । ତା'ପରେ ମୋତେ କେବଳ ବଞ୍ଚାଇଲେ ମୋର ଦେହଲାଗି । ସେହି ଭୁକ୍ତାବଶିଷ୍ଟ ଦେହକୁ କୌଣସିମତେ ବଞ୍ଚାଇ ମୁଁ ପଳାଇ ଆସିଲି ଏଠିକି !'

ଚନ୍ଦ୍ରା ମୋର ଗ୍ରୀବ ଉପରେ ମୁହଁ ଲୁଚାଇ ଅବୋଧ ବାଳିକା ପରି କାନ୍ଦିବାକୁ ଲାଗିଲା । ଜାନ୍‌ର କଦର୍ଯ୍ୟ ଗନ୍ଧ ଯୋଗୁଁ ଇଚ୍ଛା ହେଉଥିଲା ତାକୁ ଠେଲି ଫିଙ୍ଗି ଦେବାପାଇଁ । ତଥାପି···ଯେତେ ଇଚ୍ଛା ହୁଏ କାନ୍ଦ, କାନ୍ଦ ଚନ୍ଦ୍ରା—କାନ୍ଦିଲେ ଯଦି ତା'ର ଅତ୍ୟାଚାରିତ ଆତ୍ମା ଶାନ୍ତି ପାଇପାରେ !

କିଛି ସମୟ ପରେ ଚନ୍ଦ୍ରା ମୋ ଗ୍ରୀବ ଉପରୁ ମୁହଁ ଉଠାଇ ଲୁହ ପୋଛିଲା । ମୁହଁର ପେଣ୍ଟ ଲୁହରେ ଠାଏଁ ଠାଏଁ ଧୋଇଯାଇ ଦିଶୁଥିଲା ତଳର କଳା ଚେହେରା

ଚମଡ଼ା···ଅତି କଦର୍ଯ୍ୟ ଓ ଭୟଙ୍କର ; କଳେଇଛଡ଼ା ଚିଣପଣ ! ଚନ୍ଦ୍ରାର ଦୁଇ ଆଖିରେ ଦୁଇ ବିନ୍ଦୁ ଲୁହ ଜମିଥିଲା, ଦୁଇମୁଣ୍ଡା ରଡ଼ନିଆଁ ପରି ।

ପକେଟରୁ କେଇ ଖଣ୍ଡ ନୋଟ କାଢ଼ି, ଚନ୍ଦ୍ରା ହାତରେ ଗୁଞ୍ଜି ଦେଇ କହିଲି, —'ମୁଁ ଆସୁଛି ଚନ୍ଦ୍ରା ।'

ଚନ୍ଦ୍ରା କହିଲା—'ନା ବାବୁ ଆଜି ଛାଡ଼ିବି ନାହିଁ ତମକୁ, ସେ ମାତାଲ ଦୁଇଟା··· ।'

ରାତି ଦୁଇଟା ବାଜିବାକୁ ପାଞ୍ଚମିନିଟ୍ ବାକି ।

ମୁଁ କହିଲି—'ନା, ମୁଁ ଯିବି ଚନ୍ଦ୍ରା !'

ଚନ୍ଦ୍ରା ମୋ ମୁହଁ ଉପରେ ତାର ଲିପ୍‌ଷ୍ଟିକ୍‌ମଖା ଓଠ ଚାପି ଧରି କହିଲା, 'ନା ତମେ ଯାଇ ପାରିବ ନାହିଁ ବାବୁ ।'

ଦେହ ଉପରେ ମୋର କିଏ ଯେପରି ମାଡ଼ ଧରିଥିଲା ଖଣ୍ଡେ ଜଳନ୍ତା କୋଇଲା । ଚନ୍ଦ୍ରାର ରଙ୍ଗଛଡ଼ା ଗାଲ ଉପରେ ଗୋଟାଏ ଚଟକଣା ମାରି କହିଲି, —'ଛାଡ଼ ମୋତେ ।'

ଚନ୍ଦ୍ରା ବିସ୍ମିତ ଓ ଆହତ କଣ୍ଠରେ କହିଲା—'ବାବୁ' !

ମୁଁ କହିଲି—'ବାବୁ ନୁହେଁ । ଡାକିବା ପାଇଁ ଇଚ୍ଛା ହୁଏ ତ କୁହ ବାପ ବୋଲି—ତମର ପୁଅ ବଞ୍ଚିଥିଲେ··· ।'

ଚନ୍ଦ୍ରା ମୋ ଛାତି ଉପରେ ମୁହଁ ମାଡ଼ି କାନ୍ଦି କାନ୍ଦି କହିଲା—'ହେ ଭଗବାନ !'

ବାହାରେ ମହାନଗରୀର ରାତ୍ରି ଉପହାସ କରି ଉଠୁଥିଲା—'ହେ ଭଗବାନ ।'

ଗଙ୍ଗା ଜେଟୀରେ କୂଳଛଡ଼ା ଷ୍ଟୀମର୍‌ର ସେହି ଅଶାନ୍ତ ଚିତ୍କାର ଭିତରେ ତାହାର ପ୍ରତିଧ୍ୱନି ଶୁଭୁଥିଲା ।

[ ୧୯୪୯ ]



# ତ୍ରୁଟି ଓ ଚନ୍ଦ୍ର

ପୁଞ୍ଜିପତି—ଙ୍କର ଲୁଗାକଳରେ ଗତ ଗୋଟାଏ ମାସ ଧରି ଚାଲିଛି ଶ୍ରମିକ ମାନଙ୍କର ବ୍ୟାପକ ଧର୍ମଘଟ ।

ବିରୁଦ୍ଧ ୟୁନିଅନର ସମସ୍ତ କୂଟଚକ୍ରାନ୍ତ, ମିଲ୍ ମାଲିକଙ୍କର ସମସ୍ତ ଅପଚେଷ୍ଟା ଓ ସର୍ବୋପରି ସରକାରୀ କଳର ସମସ୍ତ ଚାପ ଏଡ଼ି—ମିଲ୍‌ର ଶ୍ରମିକ ଧର୍ମଘଟ, ଉତ୍ତରୋତ୍ତର ଶକ୍ତି ଓ ବେଗ ସଞ୍ଚୟ କରି ଚାଲିଛି ।

ସ୍ଥାନୀୟ କମ୍ୟୁନିଷ୍ଟ୍ ୟୁନିଅନର ବିଚକ୍ଷଣତା ଓ ନେତୃତ୍ୱକୁ ଏଥିପାଇଁ ତାରିଫ୍ ନ ଦେଇ ରହି ହେବନାହିଁ ।

ଦିନସାରା ଶ୍ରମିକ ବସ୍ତିରେ ବୁଲି ବୁଲି, ଶ୍ରମିକମାନଙ୍କୁ ଉତ୍ତେଜିତ ଓ ଉତ୍ସାହିତ କରିବା, ଚାନ୍ଦା ଆଦାୟ କରିବା, 'ଲାଲଝଣ୍ଡା ଜିନ୍ଦାବାଦ୍' ସ୍ଲୋଗାନ ଦେଇ ଶ୍ରମିକମାନଙ୍କର ଶୋଭାଯାତ୍ରା ସାରା ସହର ବୁଲି ବୁଲି ପରିକ୍ରମା କରାଇବା ପରେ କମ୍ରେଡ୍ ବିନୋଦର ଚଳତ୍‌ଶକ୍ତି ପ୍ରାୟ ଆଉ ନ ଥିଲା । ସେଆଡ଼ୁ ଫେରି ସେ ପାର୍ଟି ଅଫିସର ଗୋଟିଏ ଛୋଟ ଘରେ, ଗଦାଏ ପାମ୍ଫ୍‌ଲେଟ୍ ଆଉ ଖବରକାଗଜ ଉପରେ କ୍ଳାନ୍ତ ଭାବରେ ଦେହ ମେଲି ଶୋଇ ପଡ଼ିଥିଲା । ଶଯ୍ୟା ଧରୁ ଧରୁ ଆଖିରେ ତା'ର ମାଡ଼ିଆସିଥିଲା ନିଦ ।

ଏହାର କେତେ ସମୟ ପରେ ସେ କୋଠରି ଭିତରକୁ ଆସିଲେ କମ୍ରେଡ୍ ଲଳିତା । କମ୍ରେଡ୍ ଲଳିତା—ସୁଲେଖିକା, କ୍ଷୀଣାଙ୍ଗୀ କ୍ଷୀଣମେଧମା ଓ ସ୍ୱଳ୍ପଭାଷିଣୀ । ତାଙ୍କ ଦାୟିତ୍ୱ, ପାର୍ଟିର ସମସ୍ତ ଇଂରାଜୀ ସର୍କୁଲର ଓ ପତ୍ରିକା ତର୍ଜମା କରିବା । ପାର୍ଟିର ସାପ୍ତାହିକ କାଗଜ ଖଣ୍ଡିର ସମ୍ପାଦନା ଭାର ମଧ୍ୟ କମ୍ରେଡ୍ ଲଳିତାଙ୍କ ଉପରେ । ଧର୍ମଘଟ ଯୋଗୁ, ତାଙ୍କ ଭାଗରେ ଆଉ ଗୋଟିଏ ନୂଆ କାମ ପଡ଼ିଥିଲା—ବୁଲେଟିନ୍ ଲେଖିବା ।

ଏଇ ଘରଟି, କମ୍ରେଡ୍ ଲଳିତାଙ୍କର ଅଫିସ । କମ୍ରେଡ୍ ଲଳିତା, ସୁଇଚ୍ ମାରି ଘରେ ଆଲୁଅ ଜଳାଇଲେ । ପଶ୍ଚିମପଟର ଖୋଲା ଝରକା ପାଖକୁ ଲାଗି ପଡ଼ିଛି ଖଣ୍ଡେ ଛୋଟ ଟେବୁଲ । ତା' ଉପରଯାକ କାଗଜ ବନ୍ଧା ଆଉ ଖବରକାଗଜର ଗହଳି । କାନ୍ଥରେ ଝୁଲୁଛି ତିନିଖଣ୍ଡ ସମାନ ଆକାରର ବନ୍ଧେଇ ଫଟୋ—ମଝିରେ ମାର୍କସ । ମାର୍କସ୍‌ଙ୍କ ବାମରେ ଷ୍ଟାଲିନ୍ ଓ ଦକ୍ଷିଣରେ ଲେନିନ୍ ।

ଟେବୁଲ୍ ଉପରେ ସେଇ କାଗଜ ଗଦା ଭିତରେ କେବେକାର

ଝଲଙ୍କିଲଗା ଗୋଟିଏ କଲ୍‌ବେଲ । ଲଳିତା ସେଇ ବେଲ୍‌ଟାକୁ ତାଙ୍କର ଚମ୍ପକାଙ୍ଗୁଳିରେ ତିନି ଥର ବାଜେଇଦେଲେ ।

ଭିତରକୁ ଆସିଲା, ଅଫିସ୍‌ର ବୟ—ରମୁ ! ରମୁ ମଧ୍ୟ ଜଣେ କମ୍ରେଡ୍ । ଗୋଟିଏ ଶ୍ରମିକର ପୁଅ ।

ଲଳିତା କହିଲେ—କଫି !

ରମୁ ଚାଲିଗଲା ।

ବାହାରେ ସୁନ୍ଦର ଜହ୍ନ ଉଠିଥିଲା । ଫାକ୍‌ଟରୀ ଅଞ୍ଚଳର ଶେଷ ଆଡ଼କୁ ପାର୍ଟି ଅଫିସ । ଝରକା କଡ଼ ଦେଇ, ଅଙ୍କା ବଙ୍କା ଗୋଟିଏ ନାଲି ଗୋଡ଼ିବିଛା ରାସ୍ତା ଚାଲିଯାଇଛି, ତା'ର ଉପରେ ବେଳେ ବେଳେ ଚାଲିଯାଉଛି ଗୋଟାଏ ଶଗଡ଼ କମ୍ବା ଚାଲି ଯାଉଛନ୍ତି ଜଣେ ଦୁଇ ଜଣ ବାଟୋଇ । ରାସ୍ତାର ସେପାଖକୁ ଅପନ୍ତରା ପଥୁରିଆ ପଡ଼ିଆ···ପଡ଼େଇ, ଚିପେଇ, ଦିଗ୍‌ବଳୟର ଧୂମ୍ରାଭ ରେଖା ପର୍ଯ୍ୟନ୍ତ ।

କୋଉଠି ଗୋଟାଏ ଫୁଲର ଗନ୍ଧରେ, ରାତିର ସେଇ ଶାନ୍ତ ମୁହୂର୍ତ୍ତଗୁଡ଼ିକ ପୁଲକିତ, ସ୍ନିଗ୍ଧ ହୋଇ ଉଠିଥିଲା ।

ଲଳିତା, ଭିତରର ଆଲୁଅ ପୁଣି ନିଭାଇ ଦେଲେ କ୍ଳାନ୍ତିରେ, ଅବସାଦରେ ଓ ବିରକ୍ତିରେ ।

ବାହାରର ଜହ୍ନଆଲୁଅର ଗୋଟିଏ ଫଳକ ପଡ଼ିଲା ଆସି ଲଳିତାଙ୍କର କୋଳରେ ମୂର୍ଚ୍ଛିତ ହୋଇ ! ନ ଏକ ଅନିର୍ବଚନୀୟ ପରିପୂର୍ଣ୍ଣତା ଓ ତୃପ୍ତିରେ ଲଳିତାଙ୍କର ପ୍ରାଣର କୋଣ, ଅନୁକୋଣ ସ୍ନିଗ୍ଧ ହୋଇଉଠିଲା ! ଲଳିତାଙ୍କର ମନେହେଲା ; ମନୁଷ୍ୟର ଇତିହାସରେ କେତେ ସଂଗ୍ରାମ ବ୍ୟର୍ଥ ହୋଇଛି, କେତେ 'ବାଦ' ବିବାଦ ଭିତରେ ବିଳୟ ପାଇଛି, ଅଥଚ ଜ୍ୟୋତ୍ସ୍ନା-ପୁଲକିତା ଏଇ ମାଧବୀ ସନ୍ଧ୍ୟାର ଶେଷ ନାହିଁ, ଏହାର ପୁଲକସଞ୍ଚାରର ବିରାମ ନାହିଁ !

ଲଳିତା ପୁଣି ସୁଇଚ୍ ଆଲୁଅ ଜାଳିଲେ । ଏ ପଳାୟନବାଦ—ବିପ୍ଳବ-ବିରୋଧୀ [Counter revolutionary] ବୁର୍ଜୋୟା ବିଳାସ !

କମ୍ରେଡ୍ ବିନୋଦର ଘୁଙ୍ଗୁଡ଼ି କ୍ରମେ ଗମ୍ଭୀରତର ହେଲାଣି ।

ଲଳିତା ଏପର୍ଯ୍ୟନ୍ତ ନିଦ୍ରିତ ବିନୋଦକୁ ଦେଖି ନ ଥିଲେ । ଘୁଙ୍ଗୁଡ଼ି ଶବ୍ଦରେ ଚମକି ପଡ଼ି ସେଆଡ଼େ ଚାହିଁଲେ । ଅଧାମଇଳା ଟ୍ରାଉଜର ଆଉ ଖଣ୍ଡେ ହାଫ୍ ସାର୍ଟ, ବିନୋଦର ପରିଧାନରେ । ପାଦରେ କାବୁଲି ସାଣ୍ଡେଲ, ଦରଚିରା ହାଫ୍ ସାର୍ଟର ବାମପାଖ କାନ୍ଧରେ ଗୋଟିଏ ପାର୍ଟି-ବ୍ୟାଜ୍, ଦା' ଆଉ ହାତୁଡ଼ି !

ରମୁ ଗୋଟିଏ କପ୍ କଫି ଆଣିଲା । ଲଳିତା କହିଲେ ଆଉ କପେ କଫି ପାଇଁ । ରମୁ ଚାଲିଗଲା ।

ଲଳିତା ମନେ ମନେ କମ୍ରେଡ୍ ବିନୋଦଙ୍କୁ ସମ୍ମାନ କରନ୍ତି, ତା'ର ନେତୃତ୍ୱ ଓ ମାର୍କସବାଦରେ ପାଣ୍ଡିତ୍ୟ ଲାଗି। ବିନୋଦ କଥା କଥାରେ ମାର୍କସ କୋଟ କରୁଥିଲେ, ଡଗ ଡଗ କରି ଆବୃତ୍ତି କରିଯାଇପାରେ। ଥରେ ବିନୋଦ ଗୋଟିଏ ଝିଅର ପ୍ରେମରେ ପଡ଼ିଥିଲା। ଝିଅଟି ମଧ୍ୟ ବିନୋଦର ପ୍ରସ୍ତାବର ପ୍ରତିଦାନ ଦେଇଥିଲା ଯଥେଷ୍ଟ। ଗାନ୍ଧର୍ବ ମତରେ ବିବାହ ପ୍ରାପ୍ତ ସରିଥିଲା। କିନ୍ତୁ କନ୍ୟାପିତା ଅମିଶ୍ରିତ ବୁର୍ଜୋଆ। କନ୍ୟାର ବରବରଣ ଶୁଣି, ସ୍ପଷ୍ଟ ଭାବରେ ସେ ଉଭୟଙ୍କୁ ଜଣାଇ ଦେଲେ, ଜାମାତା ପକ୍ଷେ ନଦିଆର ଚୈତନ୍ୟଙ୍କର ଟିକିକ କାଟିଲେ ସେ ସହ୍ୟ କରିପାରିବେ, କିନ୍ତୁ ତା' ହାତୁଡ଼ିର ଟିକିକ···ଅସହ୍ୟ।

ବିନୋଦ ନିରାଶ ହୋଇ ଫେରିଲା। ନୈରାଶ୍ୟ କିନ୍ତୁ ବ୍ୟର୍ଥ ପ୍ରଣୟ ଲାଗି ନୁହେଁ। ମାଲା ପରି ଜଣେ ଝିଅ ପାର୍ଟିରେ ଯୋଗ ଦେଇଥିଲେ, କମ୍ୟୁନିଜ୍‌ମର ଉତ୍ତରୋତ୍ତର ଉନ୍ନତି ହୋଇଥାନ୍ତା! ତଥାପି ଆଜି ପର୍ଯ୍ୟନ୍ତ ବି ବିନୋଦ ମାଲା ପାଖକୁ ବୁଲେଟିନ୍ ପଠାଇବାରେ ତ୍ରୁଟି କରେ ନାହିଁ। ଜଣେ ଅଧେ ବନ୍ଧୁ ଯେତେବେଳେ ବିନୋଦର ଏ ବ୍ୟର୍ଥପ୍ରଣୟ ଘେନି ଉପହାସ କଲେ, ବିନୋଦ କହିଲା—ମାର୍କସ କହିଛନ୍ତି, 'Nothing is being, Every thing is becoming' ଅର୍ଥାତ୍ କେହି ସ୍ଥିର ଗତିହୀନ ନୁହେଁ। ପ୍ରେମର ଗୋଟାଏ ଗତି ଅଛି। ଡାଏଲେକ୍‌ଟିସରେ ପ୍ରେମର ଗତି ଯଦି ବ୍ୟର୍ଥପ୍ରେମ ହୁଏ, ସେଥିରେ ଦୁଃଖ କରିବାର କଅଣ ଅଛି ?

ରମୁ ଆଉ କପେ କଫି ଆଣିଲା। ଲଳିତା ଉଠିଯାଇଁ ବାଳିକାସୁଲଭ ଚପଳତାରେ ନିଦ୍ରିତ ବିନୋଦର କପାଳ ଉପରେ ଆଙ୍ଗୁଠିରେ ଟିପା ମାରିଲେ।

ବିନୋଦ ଆଖି ମଳି ମଳି ଖବରକାଗଜ ଗଦା ଉପରେ ଉଠି ବସିଲା।

ଲଳିତା ପଚାରିଲେ—କପେ କଫି ଚଳିବ କମ୍ରେଡ୍ !

ବିନୋଦର ଆଖିରେ ମୁହଁରେ ଫୁଟିଉଠିଲା, ଅପ୍ରତ୍ୟାଶିତର ପ୍ରାପ୍ତିରେ ଆନନ୍ଦର ଦୀପ୍ତ।

ବିନୋଦ କହିଲା—ଧନ୍ୟବାଦ କମ୍ରେଡ୍ !

ତା'ପରେ ଦୁହେଁ ଆସି ବସିଲେ, ସେଇ ଟେବୁଲ ପାଖରେ। ଲଳିତା କଫି କପ୍‌ଟା ଓଠ ପାଖକୁ ଉଠାଇ ନେଲେ। ଦୁହେଁ ନୀରବରେ କଫି ପିଉଥାନ୍ତି।

ବାହାରେ ଶୁକ୍ଳ ତିଥି ଚନ୍ଦ୍ରର ସେଇ କଳରୋଳ। ରାସ୍ତା ସେପାଖର ସେଇ ଉଠେଇ ପଡ଼େଇ ଅପନ୍ତରା।

ପଥୁରିଆ ପଡ଼ିଆ—ତା'ରି ଭିତରୁ କୋଉଠୁ ଭାସି ଆସୁଥିଲା କାହାର ବଂଶୀରେ ନାଗେଶ୍ୱରୀ ରାଗର ଲହରିଆ ମାତାଲ ଆଳାପ।

ବିନୋଦ ପଚାରିଲା—କାଲିପାଇଁ ବୁଲେଟିନ୍‌ଟା ପ୍ରେସ୍‌କୁ ଯାଇ ପାରିଲାଣି କମ୍ରେଡ୍ ଲଳିତା ?

ଲଳିତା ମନେ ମନେ ଗୋଟାଏ କବିତାର କଥା ଭାବୁଥିଲେ—'ହେ ଚନ୍ଦ୍ର ! ଆଜି ତମ ଓ ମୋ ଭିତରେ ସହସ୍ର ସହସ୍ର ଯୋଜନର ବ୍ୟବଧାନ ଦୂର ହୋଇ ଯାଇଛି । ତମେ ଆସିଛ ଆଜି ନବୀନ ନଟବର ବେଶରେ, ଅଭିସାରର ପ୍ରଣୟୀ ସାଜି, ମୋର ବାତାୟନ ପାଖକୁ ! ହେ ସୁନ୍ଦର ! ହେ କାନ୍ତ ! ଗାଢ଼ ଆଶ୍ଳେଷରେ ଆଲିଙ୍ଗନ କର ମୋତେ !'

ବିନୋଦ କହିଲା—କାଲି ସନ୍ଧ୍ୟାବେଳେ ଗୋଟାଏ ବିରାଟ ସଭା ପାଇଁ ଆୟୋଜନ ହେଉଛି । ମିଲ୍ ଏରିଆର ଅନ୍ୟାନ୍ୟ ମିଲ୍‌ଗୁଡ଼ିକର ସବୁ ଶ୍ରମିକ ମଧ୍ୟ ଆମର ଧର୍ମଘଟରେ ଯୋଗ ଦେଉଛନ୍ତି, କାଲିଠାରୁ । ତମର ବୁଲେଟିନ୍‌ଟା ସେଥିପାଇଁ ବୁଲେଟ୍ ପରି ତୀକ୍ଷ୍ଣ ହେବା ଉଚିତ । ଗୋଟାଏ ଗୀତ ରଚନା କରି-ପାରିଲେ ଭଲ ହୁଅନ୍ତା, ସଭା ଆରମ୍ଭରେ କୋରସ୍ ଗାଇବା ପାଇଁ ।

ଲଳିତା କୌତୁକମିଶ୍ରିତ କଣ୍ଠରେ ପଚାରିଲେ—କେମିତି ଗୀତ କୁହ ତ ?

ବିନୋଦ କହିଲା—ଏଇ ଏମିତି ହେଲେ ଚଳିବ,

'ବାଂଝ ମାଟିରେ
ଫଳାଇଲୁ ଆମେ
ସୁନାର ଫସଲ—ସୁନେଲି ଫସଲ ।

ଲଳିତା ଅଟ୍ଟହାସ କରି ଉଠିଲେ ।

ବିନୋଦ ଅପ୍ରତିଭ କଣ୍ଠରେ ପଚାରିଲା—ହସିଲ ଯେ !

ଲଳିତା ସଂକ୍ଷେପରେ ଜବାବ ଦେଲେ—ନା !

ପକେଟରୁ ଖଣ୍ଡେ ସିଗାରେଟ୍ କାଢ଼ି, ବିନୋଦ ସେଥିରେ ନିଆଁ ଲଗାଇଲା ।

ଲଳିତା କ୍ଳାନ୍ତ ଓ ଅବସାଦରେ ଚାହିଁଲେ ମାର୍କ୍‌ସଙ୍କ ଛବି ଆଡ଼େ ! ହାୟ ମାର୍କ୍‌ସ, ତମର 'Economical interpretation of history' (ଇତିହାସର ଅର୍ଥନୈତିକ ସୂତ୍ର) ମଣିଷକୁ କରିଛି ଯନ୍ତ୍ରଟା, ଜୀବନ ଯାହାର ଖାଲି 'ହେଟିକା ସବାଲ୍ ।' ମଣିଷର ବଞ୍ଚିବାର ଏକମାତ୍ର ଲକ୍ଷ୍ୟ, ତମେ ଆଣି ଦେଇଚ ଖାଲି ପେଟଭରି ଗିଳିବା ! ମଣିଷର ଆଖିରେ ଲୁଟିକୁ କରିଚ ତମେ ଏଇ ଚନ୍ଦ୍ରଠାରୁ ବଳି ଆଉରି ଲୋଭନୀୟ । ପ୍ରାଚୁର୍ଯ୍ୟକୁ କରିଚ ତମେ ଜୀବନର ଲକ୍ଷ୍ୟ । କିନ୍ତୁ ପ୍ରାଚୁର୍ଯ୍ୟ ପରେ ଅଛି ଯେଉଁ ବୃହତ୍ତର ଲକ୍ଷ୍ୟ, ତାର ସନ୍ଧାନ ଦେଇ ନା ତମେ !

ବିନୋଦ ଜଳା ସିଗାରେଟ୍‌ଟା ଝରକା ବାଟେ ବାହାରକୁ ଫିଙ୍ଗିଦେଇ ଗମ୍ଭୀର କଣ୍ଠରେ କହିଲା—ମୁଁ କେତେଦିନ ହେଲା ଲକ୍ଷ୍ୟ କରି ଦେଖୁଛି, ତମେ କ୍ରମଶଃ ପଳାୟନବାଦୀ ହୋଇଯାଉଛ କମ୍ରେଡ୍! ଫ୍ରଏଡ୍ ଏ ପଳାୟନବାଦକୁ କହନ୍ତି ମୃତ୍ୟୁର ପ୍ରବୃତ୍ତି (Death instinct)—ବୌଦ୍ଧଦର୍ଶନର 'ଅଭୂଦାମ'। ବିଶ୍ୱାସଶୂନ୍ୟତା ଦେହରେ ଏଇ ସତ୍ତା ବିଲୋପର ପ୍ରବୃତ୍ତି ଗୋଟାଏ ମାନସିକ ଦୁର୍ବଳତା, ଗୋଟାଏ ବୁର୍ଜୋୟା ବିଳାସ, ଗୋଟାଏ ଅଧାର୍ମିକ ଜଡ଼ତା—ଏରିକ୍ ଫ୍ରୋମଙ୍କ ଭାଷାରେ 'ସ୍ୱାଧୀନତାର ସନ୍ତ୍ରାସ।'

ଲଳିତା ମନେ ମନେ ବିରକ୍ତ ହୋଇ ଉଠିଲେ। ଗ୍ରନ୍ଥକୀଟ ଏଇ ଆତ୍ମସ୍ୱାତନ୍ତ୍ର୍ୟହୀନ କଲର ମଣିଷମାନଙ୍କୁ ଲଳିତା ଆଦୌ ସହ୍ୟକରି ପାରନ୍ତି ନାହିଁ। ମାର୍କସ କଣ କହିଲେ, ଫ୍ରଏଡ଼ଙ୍କ ମତ କଣ, ଫ୍ରୋମ୍ କେଉଁଠି କଣ କହିଛନ୍ତି—ତାହାହିଁ ଯେପରି ଜୀବନର ଚରମ ଓ ପରମ। ସେଥିରୁ ଯାହାକିଛି ବାହାରେ, ସବୁ ଅବାନ୍ତର, ସବୁ ଦୁର୍ବଳତା, ସବୁ ବୁର୍ଜୋୟା-ବିଳାସ।

ଲଳିତା କହିଲେ—ସେ ସବୁ ବହୁତ ଶୁଣିଛି କମ୍ରେଡ୍! ବରଂ ବୁଲିଯିବ ବାହାରକୁ? ଚମତ୍କାର ଜହ୍ନ ପଡ଼ିଛି!

ଅନ୍ୟଦିନ ହୋଇଥିଲେ ବିନୋଦ ଲଳିତାର ଏ ପ୍ରସ୍ତାବକୁ counter revolutionary ବୁର୍ଜୋୟା ବିଳାସ କହି, ଲଳିତାକୁ ହୁଏତ ଲେନିନ୍‌ଙ୍କର Insurrection tactics ବା ଷଡ଼ଯନ୍ତ୍ରୀ ବିପ୍ଳବର ଗୂଢ଼ତଥ୍ୟ ସବୁ ବୁଝାଉଥାନ୍ତା! ଆଜି କିନ୍ତୁ ସାରାଦିନର ପରିଶ୍ରମ ଓ କ୍ଳାନ୍ତି ପରେ, ସେ ଲୋଡ଼ୁଥିଲା ରାତ୍ରିର ଜ୍ୟୋତ୍ସ୍ନା, ଶୀତଳତା ଓ ଶାନ୍ତି!

ବିନୋଦ କହିଲା—ଚାଲ।

ଚାଲି ଚାଲି, ବିନୋଦ ଆଉ ଲଳିତା ବହୁ ଦୂର ଚାଲି ଆସିଥିଲେ। ସହର ଆଉ ଆଖିରେ ପଡ଼ୁନା। ଯୁଆଡ଼େ ଆଖି ଯାଏ ସେ ଆଡ଼େ ଖାଲି ସେଇ ଉଠେଇ ପଡ଼େଇ ପଡ଼ିଆର କ୍ରମାଗତ ବିସ୍ତାର, ଜ୍ୟୋତ୍ସ୍ନାର ଝିଅଲି ଚପଲତା!

ବିନୋଦ ଆଉ ଲଳିତା ଦୁହେଁ ଗୋଟାଏ ଡାଲୁ ଜାଗା ଉପରେ ବସିପଡ଼ିଲେ। ବେଳେବେଳେ, ବିନୋଦ ପାଟିରୁ ମାର୍କସ କେବେ କଣ ଏଙ୍ଗେଲସଙ୍କ ପାଖକୁ ଚିଠି ଲେଖିଥିଲେ, ସେଇସବୁ ଖଇ ଫୁଟିଲା ଭଳି ଫୁଟି ଉଠୁଥିଲା!

ଲଳିତା କୌତୁକରେ ପଚାରିଲେ—ଆଚ୍ଛା ମାର୍କସ୍ କେଉଁଠି ଏ ଜହ୍ନରାତି ବିଷୟରେ କିଛି କହି ନାହାନ୍ତି?

ବନୋଦର ସେଇ ପ୍ରଶ୍ନର ଉତ୍ତର ଖୋଜୁଥିଲା, ଏତିକବେଳେ ଜ୍ୟୋତ୍ସ୍ନାର ସେଇ ସମୁଦ୍ର ଭିତରୁ ଦୂରରୁ, ବହୁତ ଦୂରରୁ ଶୁଭିଲା କାହାର ବଂଶୀର ଲହରିଆ ସୁର ! ବଂଶୀର ସେଇ ସୁର ଯେପରି ମିଶି ଏକ ହୋଇ ଯାଇଥିଲା ଏଇ ଉଠଇ ପଡ଼େଇ ଅପନ୍ତରା ପଡ଼ିଆ, ଏଇ ଶାନ୍ତ, ସ୍ତବ୍ଧ ରାତ୍ରି ଓ ଏହି ଜ୍ୟୋତ୍ସ୍ନାର ଚଞ୍ଚଳ ଚପଳତା ସହିତ । ଲଳା ଓ ବନୋଦ ମନ୍ତ୍ରମୁଗ୍ଧ ପରି ଶୁଣୁଥିଲେ ବଂଶୀର ସେଇ ଆଳାପ ।

କିଛି ସମୟ ପରେ, ଦୁଇଟି ଛାୟା ଆସି ସେମାନଙ୍କଠାରୁ ଦୂରରେ ଆଉ ଗୋଟାଏ ସ୍ଥାନରେ ବସି ପଡ଼ିଲେ । ବଂଶୀର ସେ ଆଳାପର ବିରାମ ନ ଥିଲା । ପ୍ରାଣର ଗିରିନଦୀ ଯେପରି କୂଳ ଲଙ୍ଘି ମିଶିଯିବାକୁ ଚାହୁଁଥିଲା ଜ୍ୟୋତ୍ସ୍ନାର ସମୁଦ୍ର ସହିତ ।

ଲଳତା ଓ ବନୋଦ, ଉଭୟଙ୍କର ମନେମନେ ଅଦମ୍ୟ କୌତୂହଳ, ସେ ଦୁଇଜଣଙ୍କୁ ଦେଖିବା ପାଇଁ !

ଦୁହେଁ ଉଠିଲେ ।

କ୍ରମେ ନିକଟବର୍ତ୍ତୀ ହେବାରୁ ବଂଶୀର ଆଳାପ ବନ୍ଦ ହୋଇଗଲା । ଲଳତା ଓ ବନୋଦ ପାଖକୁ ଆସି ଚିହ୍ନିଲେ···ସେ ଦୁଇଜଣ ନୟନା ଆଉ କାଳିଆ । ଯେଉଁ ମିଲରେ ଧର୍ମଘଟ ହୋଇଛି, ସେଇ ମିଲ୍‌ର ଶ୍ରମିକ ସେମାନେ । ଗ୍ରେଟନାଗପୁରିଆ !

ଧର୍ମଘଟ ପାଇଁ ମଜୁରି ବନ୍ଦ । ରାତି ହୁଏତ ଉପାସରେ କଟିବ । ତଥାପି ପ୍ରାଣର ପ୍ରାଚୁର୍ଯ୍ୟରେ ସେମାନେ ପରିପୂର୍ଣ୍ଣ !

ଲଳତା କହିଲେ—ତମେ ଚମତ୍କାର ବଂଶୀ ବଜାଇ ପାର ତ ନୟନା !

ନୟନା ଭାଙ୍ଗିଗଡ଼ି ବୋଲରେ ଜବାବ ଦେଲା—ହଁ ଦିଦି । ଆମ ମୁଲକରେ ଜହ୍ନ ଉଠିଲେ ଆମେ ଏମିତି ଜଙ୍ଗଲ ପାହାଡ଼ରେ ବୁଲି ବାହାରୁ !

ରାତି ଅନେକ ହୋଇଛି । ଲଳତା ଆଉ ବନୋଦ ପୁଣି ଅଫିସ ଆଡ଼େ ଫେରିଲେ ।

ଲଳତା ମନେମନେ ଭାବୁଥିଲେ, ମାର୍କସବାଦର ଅପୂର୍ଣ୍ଣତା ତ ଏଇଠି ! ଜୀବନ କେବଳ ଉତ୍ପାଦନ ଆଉ ବଣ୍ଟନ ନୁହେ ! ପୁରା ମଜୁରି ଆଉ ପୁରା ପେଟ, ଜୀବନର ପ୍ରୟୋଜନୀୟତା ହୋଇପାରେ; କିନ୍ତୁ ଜୀବନର ଲକ୍ଷ୍ୟ ନୁହେଁ । ତା' ହେଲେ ଜ୍ୟୋତ୍ସ୍ନାର ଏ ବିଳାସ, ପ୍ରକୃତିର ଆନନ୍ଦମୟ ପୂର୍ଣ୍ଣତା କାହାପାଇଁ ? ବଞ୍ଚିବାଠାରୁ ଜୀବନ ଯେ ଆହୁରି ସୁନ୍ଦର !

ବଞ୍ଚିବାର କୋଳାହଳ ଓ ସଂଗ୍ରାମ ଭିତରେ ମାର୍କସବାଦ ଭୁଲିଯାଇଛି କିନ୍ତୁ ଜୀବନର ସୌନ୍ଦର୍ଯ୍ୟ !

ଲଳିତା କହିଲେ—ବେଶ୍ ଅଛନ୍ତି ଦୁଇଜଣ !

ବିନୋଦ ଚମକି ପଡ଼ି ଚାହିଁଲା ଲଳିତା ଆଡ଼େ । ତାହାର ପ୍ରାଣରେ କେଉଁ ରୁଦ୍ଧ ଦ୍ୱାରରେ କିଏ ଯେପରି ମୃଦୁ ଅଥଚ ଦୃଢ଼ ଆଘାତ କଲା । ନସୁନାର ବଂଶୀ ପୁଣି ବାଜି ଉଠିଲା । କାକ୍ଟସର କବଗସର ହେନାର ଗନ୍ଧ ସେ ପର୍ଯ୍ୟନ୍ତ ଯେମିତି ମିଶି ମିଶି ରହିଥିଲା ରାତିର ପବନରେ ।

ବିନୋଦ ତାଙ୍କୁ ଆଖି ଉଠାଇ ଚାହିଁଲା ଲଳିତାଙ୍କ ଆଡେ !

ଜ୍ୟୋତ୍ସ୍ନାସ୍ନାତା ଲଳିତାଙ୍କର ଅଙ୍ଗେଅଙ୍ଗେ ଅନୁପମ ମାଧୁର୍ଯ୍ୟ ! ପର ମୁହୂର୍ତ୍ତରେ ତା'ର ମନେହେଲା ଏ ସବୁ କେବଳ ନିର୍ଜଳା ବୁର୍ଜୋୟା ଭାବପ୍ରବଣତା ।

ଲଳିତା ଓ ବିନୋଦ ଦୁହେଁ ଫେରୁଥାନ୍ତି—ସେଇ ଉଠେଇ ପଡ଼େଇ ରାସ୍ତାରେ ।

ପାର୍ଟି ଅଫିସ ଏଇ ଦେଖାଯାଉଛି ।

ଲଳିତାଙ୍କୁ ଫେରି ଯାଇଁ ପୁଣି ବର୍ତ୍ତମାନ ବୁଲେଟିନ୍ ଲେଖିବାପାଇଁ ପଡ଼ିବ ! କ୍ଳାନ୍ତି ଓ ବିରକ୍ତିରେ ଲଳିତାଙ୍କର ଦେହ ଓ ମନ ବିଷାକ୍ତ ହୋଇ ଉଠିଲା ।

ନସୁନାର ବଂଶୀର ଆଓ୍ୱାଜ, ରାତିର ନିଃଶବ୍ଦତା ଓ ନିର୍ଜନତା ଭିତରେ ଶୁଭୁଥିଲା ଅସ୍ପଷ୍ଟ ହୋଇ ।

ଲଳିତାଙ୍କର ମନେହେଲା, ମାର୍କସବାଦର ଅପୂର୍ଣ୍ଣତା ପୁଣି ବଞ୍ଚିବାର ମାଳକୀ ଏବଂ ସଂଗ୍ରାମ ପ୍ରତି ଶୁଭ୍ର ଶାଶ୍ୱତ ଜୀବନର ଏ ଯେପରି ଏକ ସୁତୀବ୍ର ଆହ୍ୱାନ !

[ ୧୯୪୮ ]



# ଉଦ୍‌ଗାବଣ୍ଟ

## ( ଏକ )

ଭଦ୍ରଲୋକ । ମାସକୁ ମାସ ବେଶ ମୋଟା ଉପାର୍ଜନ । ସ୍ତ୍ରୀ, ପୁତ୍ର, ପରିବାର । କାର୍ ଖଣ୍ଡେ । ଶାନ୍ତ, ସମସ୍ୟାହୀନ ଜୀବନ । ବ୍ୟାଙ୍କ ବାଲାନ୍‌ସ । ବାଲାନ୍‌ସ ବୃଦ୍ଧି ସଙ୍ଗେ ସଙ୍ଗେ ଦେହର ମେଦବୃଦ୍ଧି । ତା'ପରେ ଡିସ୍‌ପେପ୍‌ସିଆ, ଡାଇବେଟିସ୍-ବ୍ଲଡ଼ ପ୍ରେସର ! ସଂସାର ! ସଂସାର ଆନନ୍ଦ ଦିଏ । କିନ୍ତୁ ଆଦର୍ଶ···ଆଃ ଦନ୍ତଡ଼ା ବ୍ଲେଡ଼ଟା ଓଠତଳୁ ଟିକିଏ ଘୁଞ୍ଚିଗଲା । ଦୂର୍···କିନ୍ତୁ ଆଦର୍ଶ ଦିଏ ଜ୍ୱାଳା, ଦହନ, ତିଳେ ତିଳେ ମୃତ୍ୟୁ । ରକ୍ତ ଝରିଲା ।

ରକ୍ତ ପୋଛିବା ପାଇଁ କମଳ ପକେଟରୁ ରୁମାଲ ଉଣ୍ଡାଇଲା । ସିଲ୍‌କ୍ ରୁମାଲରେ ଇଭନିଂ-ଇନ୍-ପାରିସର ଭୁରୁ ଭୁରୁ ଗନ୍ଧ । 'ହେ ପ୍ରିୟତମ'···ମଲ୍ଲିକା ହାତରେ ଏମ୍ବ୍ରୋଏଡରି । ମଲ୍ଲିକା ବାଇ ଗଡ୍ ! ଆଜି ସକାଳେ ମଲ୍ଲିକା ଏଠିକି ଆସିବ ବୋଲି କଥା ଦେଇଥିଲା । କମଳ ଅଧା ଖିଅର ମୁହଁରେ ଉଠିଯାଇ, ବାହାରୁ କବାଟ ବନ୍ଦ କରି ତାଲା ଦେଇଦେଲା । ତା' ପରେ ଝରକାର ଭଙ୍ଗା ରେଲିଂଟା ଉଠାଇ ଘର ଭିତରକୁ ପୁଣି ଫେରିଆସି ମୁହଁରେ ସାବୁନ ଫେଣ ଘଷିଲା । ତୃପ୍ତିର ଦୀର୍ଘଶ୍ୱାସ । ଚମତ୍କାର ବୁଦ୍ଧି । ବାହାରୁ ତାଲା ଦେଇ ଭିତରେ ବେଶ୍ ନିଶ୍ଚିନ୍ତରେ ଶୋଇ ହୁଏ ! ଘରବାଲା, କାବୁଲିବାଲା, ଓ ମଲ୍ଲିକା ସମସ୍ତଙ୍କର ଆକ୍ରମଣ ଏଡ଼ି ହୁଏ ।

କମଳ, ମୋର ଲକ୍ଷସ୍ୱପ୍ନର ରାଜକମଳ !

ମଲ୍ଲିକା ସେ ଦିନ ସନ୍ଧ୍ୟାରେ ଲୋଟି ପଡ଼ିଥିଲେ କମଳର ଗ୍ରୀବା ଉପରେ । ନିର୍ଜନ ପାର୍କକୋଣ । 'ମଲ୍ଲିକା, ପ୍ରେମରେ ମୁଁ ବିଶ୍ୱାସ କରେ ନା ! ପୁରୁଷର ଆକାଙ୍‌କ୍ଷା ନ ଥାଏ, ପୁରୁଷର କାମନା ନ ଥାଏ, ପୁରୁଷଠାରେ ପ୍ରତ୍ୟୟ ନ ଥାଏ । ବୀଜବିକ୍ଷେପ ତାର ଧର୍ମ । ପ୍ରେମ ତାର ଶୃଙ୍ଖଳା, ବିବାହ ତାର ବନ୍ଧନ । ନାରୀର କିନ୍ତୁ ଲୋଡ଼ା ସୃଷ୍ଟି । ସୃଷ୍ଟି ପାଇଁ ଲୋଡ଼ା ତାର ପୁରୁଷ ! ପୁରୁଷ ପାଇଁ ତେଣୁ ତା'ର ଯେତକ ଆକାଙ୍‌କ୍ଷା, କାମନା, ପ୍ରତ୍ୟୟ ! ମାତ୍ର ପୁରୁଷ ଆତ୍ମସମର୍ପଣକୁ କହେ ଭଲପାଇବା । ମୁଁ ଆତ୍ମସମର୍ପଣ ଘୃଣା କରେ ମଲ୍ଲିକା !'

'ତମେ ବଡ଼ ନିଷ୍ଠୁର କମଳ ! ତମେ ଜାଣନା କମଳ, ତମକୁ ଭଲପାଇ କି ମୋର ଅଶାନ୍ତ, କି ଜ୍ୱାଳା !'

ମଲ୍ଲୀକାର ସାମ୍ନାରେ ଫୁଟନ୍ତା ରକ୍ତ କମଲର ଏମ୍ବ୍ରୟୋଡରି ।

ମଲ୍ଲୀକା···ନାଗ୍ପୁ ପୋଲିସ ବିଭାଗରେ ସବ୍‌ଇନ୍‌ସପେକ୍ଟର । ନତମ୍ବସୁନ୍ଦରୀ, ଶିଥିଳବକ୍ଷା, ଶ୍ୟାମା, ଦୀର୍ଘଦନ୍ତା···ମଲ୍ଲୀକା !

କୋଉଠି ପାଖ ଘଣ୍ଟାରେ ବାଜିଲା ନ'ଟା ! କମଲ ଖଣ୍ଡେ କାଗଜ ଉପରେ ପେନ୍‌ସିଲରେ ଦିନର କାର୍ଯ୍ୟ ନିର୍ଘଣ୍ଟ ଟିପିଲା । ପ୍ରଥମେ ଆଜି ସେ ରାସ୍କେଲ ବସନ୍ତକୁ ଧରିବାପାଇଁ ପଡ଼ିବ । ଓଃ, ସିଗାରେଟ୍ ନାହିଁ ! କମଲ, ଆସ୍‌ଟ୍ରେରୁ ଖଣ୍ଡିଆ ସିଗାରେଟ୍ ଖଣ୍ଡେ କାଢ଼ି ସେଥିରେ ନିଆଁ ଲଗାଇଲା ।

'ଦୂର୍, ନ ହେଲା ସେ ରୋଜଗାର ! ଚୂଡ଼ିଆ ବାରବାର କର କାଇ—ଆ—ଆ—ଚୂଡ଼ିଆ ।'

'ବସନ୍ତ, ତୁ କେବଳ ଷ୍ଟୁପିଡ଼ ନୋହୁ, ବଡ଼ ଷ୍ଟୁପିଡ ! ଅରେ ମୂର୍ଖ, ଟିଉସନ ତ କେତେଟା ଧରିଥିଲୁ, ସେତକ ଥିଲା ତୋର ମାସର ସମ୍ବଳ । ଅବିକା ସେ ଟିଉସନଗୁଡ଼ାକ ଗୁଡ଼ି ଚାଲିବୁ କପରି ?'

'ସତେ ତ ! ଏ କଥାଟା ତ ଆଗରୁ କେବେ ଭାବି ନାହିଁ । କିନ୍ତୁ କମଲ, ଯୋଉଠି ପ୍ରାଣରେ ପ୍ରାଚୁର୍ଯ୍ୟ ନାହିଁ, ମୁକ୍ତି ନାହିଁ, ସେଠି ସଙ୍ଗୀତ ଆସିବ କୁଆଡୁ ? ଏ ଝିଅଗୁଡ଼ା ସଙ୍ଗୀତ ଶିଖୁଛନ୍ତି କାହିଁକି ? କୌଣସି ଏକ ରାସଭନିନ୍ଦିତ କଣ୍ଠକୁ ତ ବଜାର ସଉଦାର ବରାଦ କରିବାପାଇଁ ନା ଆଉ କଣ ? ମୋତେ କପରି ସେମାନଙ୍କ ଅ.ଗ୍ରରେ ନିଃଶ୍ୱାସ-ରୁଦ୍ଧ-ହୋଇଗଲା ପରି ଲାଗେ ! ଆଚ୍ଛା···କୋଡ଼ିଏଟା ଟଙ୍କା ଧାର ଦେ ନା ! ଘରବାଲା ପାଷଣ୍ଡ, ମୋ ହାରମୋନିୟମଟା ଛଡ଼ାଇ ନେଇଛି ! ଏବେ ଡୁମ୍ବା ଡାବ୍‌ଲା ହାଲକ ଉପରେ ଆଖି !

ବସନ୍ତ ମୁଣ୍ଡର କନ୍ଦର୍ପ ଲମ୍ବା ବାଳଗୁଡ଼ା କପାଳ ଉପରୁ ପଛକୁ ଗୁଞ୍ଜିଦେଲା ।

ଆ ଭିତରେ ଛ'ମାସ ବିତି ଗଲଣି । ଟଙ୍କା କୋଡ଼ିଏଟିର ଦେଖା ନାହିଁ । ବସନ୍ତ ବାବୁଙ୍କର ମଧ୍ୟ ସାକ୍ଷାତ ନାହିଁ ।

ଆଜି ଷ୍ଟୁପିଡ଼କୁ ଧରିବାକୁ ପଡ଼ିବ । ଏକ—ବସନ୍ତ ଦାସ, ୩ ନମ୍ବର ଫିସ୍ ମାର୍କେଟ ଗଳି । ଦୁଇ—ଦୁଇ—ଶ୍ରୀପତି ଚୌଧୁରୀ । ଲେକ୍ ରୋଡ଼ । କୋଉ ନାକରେ ନିଃଶ୍ୱାସ ଯାଉଛି ? ବାଁ ନାକ, ସୋମବାର । ସୋମବାର ବାଁ ନାକର ନିଶ୍ୱାସ ଶୁଭ । ହେ ମା କାଳୀକରାଳଦଶନା, ନୃମୁଣ୍ଡମାଳିନୀ, ଶ୍ୟାମା···ଶ୍ରୀପତି ଚୌଧୁରୀର ଜୀବନଟା ଯଦି ଆଜି ବୀମା କରିପାରେ ! ଲକ୍ଷେ ଟଙ୍କାର ବୀମା କରିବାପାଇଁ ଭଦ୍ରଲୋକ କୁଆଡ଼େ ପ୍ରସ୍ତୁତ । ଓ···ଗୋଟିଏ ବର୍ଷର ଖୋରାକ । ଇସ୍ କୋଟ୍‌ଟାର ଇସ୍ତ୍ରୀ ଗଲଣି । ତଥାପି ଚଳନୀୟ । କିନ୍ତୁ ମଲ୍ଲୀକାର ଦେଖାନାହିଁ ଯେ ! ଶେଷ ଯୌବନର କ୍ଲାନ୍ତ ମଲ୍ଲୀକା । ସୌନ୍ଦର୍ଯ୍ୟ ଦେହର ନା ପ୍ରାଣର ? ମଲ୍ଲୀକାକୁ ବିବାହ

ହେଲେ ମନ୍ଦ କଣ ? ହେଉନା ପଛେ ସହସ୍ର ଶଯ୍ୟାର ନାୟିକା, ମଲ୍ଲୀକା । ତଥାପି ଗନ୍ଧ ଅଛୁ । ଗନ୍ଧ ହିଁ ଯଥେଷ୍ଟ ।

ଏଗୋରଟା ବାଜିଲା ? ନା ମଲ୍ଲୀକା ଆଉ ଆସିଲା ନାହିଁ ଆଜ ! କମଲ ସେଇ ରୁମାଲରେ ଥରେ ମୁହଁ ପୋଛିଲା । ଇଭିନିଂ-ଇନ୍-ପାରିସର ଭୁରୁ ଭୁରୁ ଗନ୍ଧ । ମଲ୍ଲୀକାର ଶୀତଳ ସ୍ପର୍ଶର ସ୍ନିଗ୍ଧ ଅନୁଭୂତ । ବାଁ ନାକରେ ନିଃଶ୍ୱାସ ତଥାପି ଚାଲିଛୁ ।

( ଦୁଇ )

ସର୍ବନାଶ । ଗୋଟାଏ ଛିମା ଗେଙ୍ଗୁଟି ଦେହରେ ଠୋକର ବାଜି, ଡାହାଣ ପାଦର ବୁଢ଼ା ଆଙ୍ଗୁଠି ପାଖରେ ସୋଲ୍‌ଟା ଫାଟିଗଲା ! ସ୍ୱପ୍ନେଲ କର୍‌ପୋରେସନ ! ରାସ୍ତାଯାକ ଛିମା ଗେଙ୍ଗୁଟି ଆଉ ଆଣୁଆଣି ଗାତ । ପାଦଫାଳେ ଛୁଣ୍ଡି ଯାଇଥିଲେ ଆପତ୍ତି ନାହିଁ । ଡାକ୍ତରଖାନା ଆଉଟ୍‌ଡୋରରୁ ଟିକିଏ ଟିଞ୍ଚର ଆଇଡନ୍ ଆଉ ତୁଳା । ବେଶ୍, ଘା ଶୁଖିଲା ! କିନ୍ତୁ ଏ ଫଟା ସୋଲ୍‌ରେ ତାଳି ପକାଇବା ପାଇଁ ତ ଆଠଗଣ୍ଡା ପଇସାରୁ କମ୍ ପଡ଼ିବ ନାହିଁ । ମାନେ ଗୋଟାଏ ପାକେଟ ସିଗାରେଟ୍ । ଅର୍ଥାତ୍ ଦଶଗୋଟି ଧୂମମଧୁର ମୁହୂର୍ତ୍ତ ! ନୋହିଲେ ଚାରି କପ୍ ଚା' ! ଫିସ୍ ମାର୍କେଟ ଗଲି, ଆଗ ମୋଡ଼ଟା ବୁଲିଗଲେ ! ବ୍ରଡ଼ଉଏ ରେସ୍ତୋରାଁ । କୋଟ୍‌ତଳେ, ଗୋଟାଏ କାନୁଆର, ଲମ୍ବା ଲମ୍ବା ମୂନିଆଁ ଦାନ୍ତ ଲଗାଇ କୋରି ଲଗାଇଛୁ !··· କ୍ଷୁଧା ! ନା ନା କ୍ଷୁଧା ନୁହେଁ, ନୂତନର ପ୍ରସୂତ ବେଦନା ! କପେ ଚା' ପିଇ ଅନ୍ତତଃ ଏ କବିତ୍ୱ କଲେ ଚଳନ୍ତା ! ହୁଁ—ହୁଁ କପେ ଚା' ସ୍ୱାସ୍ଥ୍ୟଶୁଡ଼ା ଏକଦମ ଜଡ଼ ଅଥବା ପାଲଟି ଗଲେଣି । ଚା' କପ୍ ଦୁଇଅଣା । ସିଗାରେଟ୍ ଏକ ପାକେଟ ଆଠଅଣା, ବସ୍ ଭଡ଼ା ଚାରିଅଣା, ଚଉଦଅଣା । ସମ୍ବଳ କିନ୍ତୁ ଟଙ୍କାଟିଏ ? ନା ସିଗ୍ରେଟ ଅଧ-ପାକେଟ ଚାରିଅଣା, ଶ୍ରୀପତି ଚୌଧୁରୀ ପାଖକୁ ପଦବ୍ରଜରେ ଗମନ ! ନେଟ୍ ଲାଭ ଆଠଅଣା ! କିନ୍ତୁ କପେ ଚା' ।

···ଚା' ଏକ କପ୍ !

କମଲ ରେସ୍ତୋରାଁ ଭିତରକୁ ପଶିଗଲା !

( ତିନି )

ବଡ ରାସ୍ତା । ସୁ-ପଲିଶ୍ ସା'ବ୍, ସୁ-ପଲିଶ୍ ! ଦୁର୍ । ସୁ-ପଲିଶ୍ ସା'ବ୍ ! ନେହିଁ ମାଙ୍ଗ୍‌ତା । ଫଟା ସୋଲ ବାବୁ ! ଫଟା ସୋଲ୍ ! ହାଃ-ହାଃ-ହାଃ

ଶତାବ୍ଦୀର ଫଟା ଖୋଲ୍। ବୁଢ଼ା ଆଙ୍ଗୁଠିଟା ବଢ଼ିଲାଣି ଫାଟବାଟେ। ସୁ-ପଲିଶ୍ ସା'ବ। ଆଉ କେଇ ପାହୁଣ୍ଡ ବୁଲିଗଲେ ଫିସ୍ ମାର୍କେଟ। ତା'ପରେ ଫଟା ଖୋଲ ପ୍ରତି ଏ ଅଯାଚିତ ସହାନୁଭୂତିରୁ ରକ୍ଷା।

୩ନମ୍ବର ମାର୍କେଟ ଲେନ୍ ତ ହେଲା। କିନ୍ତୁ ଶ୍ରୀମାନ ବସନ୍ତ ଦାସ କାହାନ୍ତି? ଦୁଆରେ ତାଲା। ଅଳ୍ପ ଦୂରରେ ରାସ୍ତା ଉପର ଗୋଟିଏ ଚା' ଦୋକାନରେ ଖଣ୍ଡେ ବେଞ୍ଚ ଉପରେ କାବୁଲିବାଲା ଖାଁ ସାହେବ, ବସନ୍ତ ଅପେକ୍ଷାରେ ହୁଏତ ବସି ବସି ସମୟ କାଟିବାପାଇଁ ଚା' ପିଉଛନ୍ତି। ତା ହେଲେ ରାତ୍ରେଲର ଆଉ ଦେଖା ମିଳିବ ନାହିଁ ଆଜି। ଓଃ, ବହୁଦୂର···ଶ୍ରୀପତି ଚୌଧୁରୀ, ଲେକ୍ ରୋଡ଼ ଆଉଣି ଚାରି ମାଇଲ।

ଏଇ ଯେ, ବସନ୍ତର ଘରମାଲିକ। ସେ ନିଶ୍ଚୟ ବସନ୍ତର ସନ୍ଧାନ କହି ପାରିବେ।

'ନମସ୍କାର। କମଳ ବାବୁ ଯେ। ଦେଖନ୍ତୁ ନା ବସନ୍ତ ବାବୁଙ୍କ କଥା। ଭଦ୍ରଲୋକ। ମାସ ମାସ ଭଡ଼ା ବାକୀ ରଖିଲି। ଏବେ—'

'ବସନ୍ତ ବାବୁ କାହାନ୍ତି? ତାଙ୍କୁ ତ ମୁଁ ବି ଖୋଜୁଛି।'

'ଆଉ ବସନ୍ତ ବାବୁ? ହାରମୋନିୟମଟା ନେଇଥିଲି। ଏବେ ଫଟା ଡ୍ରମ୍ ଡାବଲା ହଲେ ମୋ ଘରେ ପକାଇଦେଇ କୁଆଡ଼େ ଚମ୍ପଟ। ତାଙ୍କର କୁଆଡ଼େ କେଉଁଠି ବିଭାଘର ହେଉଛି। ବିବାହ ପରେ ଯାଇଁ ଭଡ଼ା ଛୁଣ୍ଡାଇବେ।'

ବସନ୍ତର ବିବାହ। କେଉଁଠି, କେଉଁଦିନ ବିବାହ?···ସେ ଦିନ ମଲ୍ଲୀକା ମଧ୍ୟ କହିଥିଲା ସେହି ବିବାହର କଥା—

—'କମଳ, ସହରର କୋଳାହଳରୁ ଦୂରରେ, ବହୁ ଦୂରରେ ଆମେ ଦୁହେଁ ଗଢ଼ିବା ସ୍ୱପ୍ନର ସଂସାର। ତମେ ଆଉ ମୁଁ, ଗୋଟିଏ ଛୋଟିଆ ବଙ୍ଗଳା, ପଛରେ ପାହାଡ଼, ସାମନାରେ ନଈଧାର।'

ସେ ଆଉ ଗୋଟିଏ ସନ୍ଧ୍ୟାର କଥା। ମଲ୍ଲୀକା, କମଳ ପାଖକୁ ଆସିଥିଲା ସେଇ ପୁରୁଣା ଆବ୍ଦାର୍ ନେଇ।

କମଳ ଆଘାତ ଦେବା ଉଦ୍ଦେଶ୍ୟରେ ପଚ୍ଚାରିଲା—'ମୋ ଆଗରୁ ଆଉ କେତେ ଜଣଙ୍କୁ ନେଇ ତମେ ଏଇପରି କେତେ ସ୍ୱପ୍ନର ସଂସାର ଗଢ଼ିଚ ମନେପଡ଼େ ମଲ୍ଲୀକା?'

ମଲ୍ଲୀକା ଅଦ୍ଭୁତ। ହାସ୍ୟମୁଖୀ ମଲ୍ଲୀକା। ହସି ହସି ଆଘାତ ସହିବା ତାର ବିଶେଷତ୍ୱ। ସଂସାର ତା'ର ଆଦର୍ଶ। ସେ ଆଦର୍ଶ ପାଇଁ ଆସୁ ଯେତେ

ଦୁର୍ଯୋଗ, ଲଜ୍ଜା, ଅପମାନ । ମଲ୍ଲୀକା ଜୁଡ଼ାରେ ସେ ଦନ ଖୋସିଥିଲ ରକ୍ତ କରବୀ । କଲା ଜୁଡ଼ାରେ ଲାଲ କରବୀ ।

ମଲ୍ଲୀକା କହିଲ—'କମଲ, ଦେହ ଆଉ ପ୍ରାଣ ଦୁଇଟା ସ୍ୱତନ୍ତ୍ର କଥା । ବହୁ ଦେହରେ ହୁଏତ ମୁଁ ସେଇ ପ୍ରାଣର ସନ୍ଧାନ କରିଛୁ । ଆଜି ତ ମୋର ଦେହ ନାହିଁ । ଏ ଘରଣ ବର୍ଷର ଦେହ ପାଇଁ, ତମପରି ଯୁବକର କବା ଆକର୍ଷଣ ଥାଇପାରେ ? ଆଜି କନ୍ତୁ ମୁଁ ଆସିଛୁ ପ୍ରାଣରେ ଆବେଦନ ଘେନ ।'

ମଲ୍ଲୀକାର ଦେହରେ ଇଭନିଂ-ଇନ୍-ପାରିସର ଗନ୍ଧ, ମୃଦୁ, ମଧୁର, ସୁନ୍ଦର ।

ଫିସ୍ ମାର୍କେଟ ଲେନ୍ , ସର୍ପେଣ୍ଟାଇନ୍ ଲେନ, ଗ୍ରେ ରୋଡ଼, ମୋଡଗଞ୍ଜ ଷ୍ଟ୍ରୀଟ୍ ···ଓଃ ବହୁଦୂର । ଫିସ୍ ମାର୍କେଟ ଲେନ୍ ଯେ ସରେନା ।

କେଇଟା ବାଜିଲ ?

ପାନ ଦୋକାନର ଘଣ୍ଟାରେ ଗୋଟାଏ ପାଞ୍ଚ ମିନଟ୍ । ରେସ୍ତୋରାଁ ଘଣ୍ଟାରେ ଗୋଟାଏ ବାଜିବାକୁ ପନ୍ଦର ମିନଟ୍ ।

ଶେଠଜୀଙ୍କ ଗଦ ଘଣ୍ଟାରେ ଗୋଟାଏ ଦଶ ମିନଟ୍ । ଗଣିଷ୍ଠ ସାଧାରଣ ଗୁଣିତକ—ଗୋଟାଏ ।

ମଲ୍ଲୀକା, ତମେ ଆଉ ମୁଁ···ଦୂରରେ ସହରଠାରୁ ବହୁ ଦୂରରେ ! ବାଉଁଶ-ବଣ ଘେରି କେଉଁ ଶାନ୍ତ ପଲ୍ଲୀଗ୍ରାମ ! ଗ୍ରାମଆଡ଼େ ଘେରି ତା'ର ସବୁଜ କ୍ଷେତ ପରେ କ୍ଷେତ, ଆକାଶ ସହିତ ମିଶି ଯାଇଛୁ ! ହେଉନା ପଛେ ଆତ୍ମ ସମର୍ପଣ ! ଆତ୍ମ ସମର୍ପଣରେ ଶାନ୍ତି ଅଛୁ । ଆତ୍ମ ରକ୍ଷାର ଦୈନ୍ୟ ନାହିଁ, ପୀଡ଼ନ ନାହିଁ, ଲଜ୍ଜା ନାହିଁ । ବସନ୍ତ ଠିକ୍ ରାସ୍ତା ଧରିଛୁ । ସଂସାରର ଶସ୍ତ୍ରାଘାତରୁ କେହି ଆତ୍ମ ରକ୍ଷା କରି ପାରିନାହିଁ । ବୃଥା ଏ ମହାଯୁଦ୍ଧ ! ଓଁ ଶାନ୍ତି, ଶାନ୍ତି, ଶାନ୍ତି ! 'ଋଏଷ୍ଟଲାଣ୍ଡ'··· ଉପର ମରୁର ଶସ୍ୟଶ୍ୟାମଳ ପରିସମାପ୍ତି !

( ଗ୍ଲୁଷ )

ଆଉ ଅଳ୍ପ ଦୂର ।

ମୋଡଗଞ୍ଜ ଷ୍ଟ୍ରୀଟର ସେଇ ଆଗ ମୋଡ଼ରୁ ଖଙ୍ଗିଗଲେ···ଲେକ୍ ରୋଡ଼୍ । ଦଶ ନମ୍ବର ଲେକ୍ ରୋଡ଼···ଚନ୍ଦ୍ରଧୂରୀ ମାନ୍‌ସନ୍‌ସ । ଶ୍ରୀପତି ଚୌଧୁରୀ, ଭାଗ୍ୟ-ଦେବୀଙ୍କର ବରପୁତ୍ର । କହାଠ କମ୍‌ରେ ଲକ୍ଷେ ଟଙ୍କାର ବୀମା ଭଦ୍ରଲୋକ କରି-ପାରନ୍ତି । ସିଗାରେଟ୍···ଓଃ ଥାଙ୍କ୍‌ସ । ଦେଖନ୍ତୁ ମିଷ୍ଟର ଚୌଧୁରୀ, ମହାକବି ଭାରବି କହିଛନ୍ତି, ନଳିନୀ ଦଳଗତ ଜଳମତି ତରଳଂ । ଜୀବନ ପଦ୍ମପତ୍ରରେ ଜଳବିନ୍ଦୁ ପରି । ଭାରବି ? ନା ମାଘ ? ନା ବାଣ ? ନା କାଳିଦାସ ? ନା ଶଙ୍କରାଚାର୍ଯ୍ୟ ?

ଆମେରିକାରେ ଶୁଣିଥିବେ ହିଁ‌ଅମାନେ ଗାଲର ଢଲବନ୍ଧୁଟି ସୁଦ୍ଧା ସାମା କରିଥାନ୍ତି ! ମୁଣ୍ଡର ବାଳ ବି ।

କମଳ, ଦେହ ଓ ମନରେ ଉତ୍ତେଜନା ଆଣିବା ପାଇଁ, ଖଣ୍ଡେ ସିଗାରେଟ ଓଠରେ ଧରି, ନିଆଁ ଲଗାଇଲା । ଶେଷ ବସନ୍ତର ଦୀର୍ଘାୟିତା ଗୋଧୂଳି । ଲେକ୍‌ରୋଡ଼ ଦୁଇ ପାଖେ ଧାଡ଼ି ଧାଡ଼ି ଦେବଦାରୁ । ମହାକାଳ ଏଠାରେ ଯେପରି ନିଦ୍ରିତ । ଫେଣବାଲା ନାହିଁ, ସୁ-ପଲ୍ସ ନାହିଁ, କୋଳାହଲ ନାହିଁ । ଖାଲି ଝିଙ୍କି ଦେବଦାରୁ ପତ୍ରର ମର୍ମର ଆଉ ଶାନ୍ତ—ଶାନ୍ତ—ଶାନ୍ତ । ଏଠି ଠୋକ୍‌କର ନାହିଁ, ବାଧା ନାହିଁ, ଖାଲ୍‌ଢିପ ନାହିଁ···ସଂସାରର ଗତି ଏଠି ନିର୍ବିବାଦ । କମଳର ପାଖ ଦେଇ ଗୋଟିଏ ଦାମୀ ମୋଟର ଗାଡ଼ି ନିଃଶବ୍ଦରେ ଚାଲିଗଲା । ରାସ୍ତାର ଦୁଇ ପାଖକୁ ଉଡ଼ିଗଲା ଘୂରି ଘୂରି ଦେବଦାରୁ ପତ୍ର ଘୂର୍ଣ୍ଣି ।

ଆଗରେ ପ୍ରକାଣ୍ଡ ଚଉଧୁରୀ ମାନ୍‌ସନ୍‌ । ଫାଟକରେ ଗୁର୍ଖା ଦରଓ୍ବାନ୍ ଢୁଲାଉଛି । କମଳ ଦେହରେ କୋଟ୍‌ଟାକୁ ଟାଣି, ଲେସ୍ତକୋଟ୍ର ଅଂଶଗୁଡ଼ାକ ହାତରେ କେଇଥର ଅଉଁସି ଦେଲା । ଭିତରୁ ଇଲେକ୍‌ଟ୍ରିକ୍ ମଟର ହର୍ଣ୍ଣ ଶୁଭିଲା । ଗୁର୍ଖା ଦରଓ୍ବାନର ଢୁଳ ଭାଙ୍ଗିଗଲା । ବାଉଁଶ ଲଠି ଖଣ୍ଡ କାଖତଳେ ଚାପି, ସଳାମ ଠୁକି ଦୁଇ ହାତରେ ସେ ଲୁହା ଫାଟକଟା ଖୋଲିଦେଲା । କଳାରଙ୍ଗର ଗୋଟାଏ ପ୍ରକାଣ୍ଡ ଗାଡ଼ି, ଫାଟକ ବାଟେ ବାହାରି ଚାଲିଗଲା । ପଛରେ ରହିଗଲା ଖାଲି ନାଲି ଧୂଳି ଆଉ ଶୁଖିଲା ଦେବଦାରୁ ପତ୍ରର ଘୂର୍ଣ୍ଣି ।

'କ୍ୟା ମାଙ୍ଗତା ହେ ?' ଗୁର୍ଖା ଦରଓ୍ବାନ ଏଥର ପୂର୍ବସ୍ଥାନରେ ବସିପଡ଼ି କମଳକୁ ପ୍ରଶ୍ନ କଲା । ଅସମୟରେ ଢୁଳ ଭାଙ୍ଗିଥିବାରୁ ମିଜାଜ କପାଳ ଚଢ଼ା, ସେଇ ଅନୁପାତରେ କଣ୍ଠର ସ୍ୱର ବି ।

କମଳ ଦାନ୍ତରେ ଦାନ୍ତ ଚପି ମନେ ମନେ କହିଲା—ତେରା ଶିର ମାଙ୍ଗ୍‌ତା ।

ଦରଓ୍ବାନ ଖଣ୍ଡେ ଖଣ୍ଡିଆ ବଡ଼ିରେ ନିଆଁ ଲଗାଇ ଲଗାଇ କହିଲା—ସାହେବ ଅଭି ବାହାର ଚଲିଗିଆ । ମୁଲାକାତ୍‌ ନେହିଁ ମିଲେଗା ।

ମୁଲାକାତ୍‌ ନେହିଁ ମିଲେଗା । ଦରଓ୍ବାନଟାର ଚେପଟା ନାକ ଉପରେ ଗୋଟାଏ ମୁଥ ମାରିବା ପାଇଁ ଇଚ୍ଛା ହେଉଥିଲା କମଳର ।

## ( ପାଞ୍ଚ )

ତା' ପରେ ?

ପୁଣି ପାଞ୍ଚମାଇଲ ରାସ୍ତା । ଗୋଡ଼ ଦୁଇଟା ବନ୍ଧିଲାଣି । କାଲି ପୁଣି ଥରେ ଚେଷ୍ଟା କରିବା ପାଇଁ ପଡ଼ିବ । ପକେଟରେ ସମ୍ବଳ ମାତ୍ର ଦଶଅଣା । କାଲି ଅବଶ୍ୟ,

ବସ୍‌ରେ ନ ଆସିଲେ ଚଳିବ ନାହିଁ । ବସଭଡ଼ା ସୁବିଧା । ମୁଠାଏ ଚନାବାଦାମ ଖୋସା କିଏ ଫିଙ୍ଗି ଦେଲା କମଳ ଉପରେ । ସନ୍ଧ୍ୟାର ଆସନ୍ନ ଅନ୍ଧକାର ଭିତରେ କମଳ ଚାହିଁଲା ଫୁଟପାଥ କଡ଼ର ପାଚେରି ଉପରକୁ । କିଏ ଜଣେ ଦ୍ରବ୍ୟ ଆଗ୍ରହରେ ଅଳ୍ପ ଦୂରରେ ପାଚେରି କାନ୍ଥ ଉପରେ ବସି ଚନାବାଦାମ ଖୋଉଛି । ପାଖରୁ ପାଦ ଦୁଇଟା ଟାଣି କମଳ ନିଶ୍ଚୟ ତଳେ ଫିଙ୍ଗି ଦେବ । ଫାଜିଲାମି ନା ? କମଳ କେଇ ପାହୁଣ୍ଡ ଆଗେଇ ଯାଇଛି, ଲୋକଟା ଡେଇଁ କରି ପାଚେରି ଉପରୁ ଫୁଟପାଥ୍ ଉପରକୁ ଡେଇଁ ପଡ଼ିଲା । ରାସ୍ତାକଡ଼ର ବିଜୁଳି ଆଲୁଅରେ କମଳ ଦେଖିଲା···ବିନୋଦ ହାତରେ ଗୋଟାଏ ଚନାବାଦାମ ଠୁଙ୍ଗା ଧରି ନାଟକୀୟ ଭଙ୍ଗୀରେ ଠିଆ ହୋଇଛି ।

କମଳ ପଚାରିଲା—ଏଠି ପାଚେରି ଉପରେ ବସି କଣ କରୁଥିଲୁ ବିନୋଦ ?

ବିନୋଦ କହିଲା—ଯୋଗାଭ୍ୟାସ ।

କମଳ ପଚାରିଲା—ମାନେ ?

ବିନୋଦ କହିଲା—ମାନେ ଯୋଗ । ମୁଁ ତ୍ରିକାଳଦର୍ଶୀ । ତୁ ବର୍ତ୍ତମାନ ଶ୍ରୀପତି ଚୌଧୁରୀ ପାଖକୁ ଯାଇଥିଲୁ ତା ଜୀବନବୀମା କରିବା ପାଇଁ । ମାତ୍ର ତୁ ଫାଟକ ପାଖରେ ପହଞ୍ଚିଛୁ କି ନାହିଁ, ସେ ତା ପାକାର୍ଡ଼ ଗାଡ଼ିରେ ଚଢ଼ି ବାହାରିଗଲା ସାନ୍ଧ୍ୟ ଭ୍ରମଣରେ ।

କମଳ ବିସ୍ମିତ କଣ୍ଠରେ କହିଲା—ଆଶ୍ଚର୍ଯ୍ୟ । କିନ୍ତୁ ତୁ ଏ ସବୁ ଜାଣିଲୁ କିପରି ବିନୋଦ ?

ବିନୋଦ କୃପାପୂର୍ଣ୍ଣ ଦୃଷ୍ଟିରେ କମଳ ଆଡ଼େ ଚାହିଁ କହିଲା—ଆରେ ମୂର୍ଖ, ମୁଁ ଏଇଠୁ ବସି ସବୁ ଲକ୍ଷ୍ୟ କରୁଥିଲି । ତୁ ଶ୍ରୀପତି ଚୌଧୁରୀର ଫାଟକ ପର୍ଯ୍ୟନ୍ତ ଗଲୁ, ସଙ୍ଗେ ସଙ୍ଗେ ଗୋଟାଏ ମଟରଗାଡ଼ି ବାହାରକୁ ଚାଲିଗଲା । ତା'ପରେ ଦରଓ୍ୱାନ ଠାରୁ ତଡ଼ା ଖାଇ ତୁ ଫେରୁଛୁ ତଳକୁ ମୁଣ୍ଡ ନୁଆଇଁ । ଶ୍ରୀପତି ଚୌଧୁରୀ ପାଖକୁ ତୁ ଆଉ କାହିଁକି ଯାନ୍ତୁ, ଯଦି ତା' ଜୀବନବୀମା କରିବା ତୋର ଉଦ୍ଦେଶ୍ୟ ନ ଥାନ୍ତା ? ପୁଣି ଶ୍ରୀପତି ଚୌଧୁରୀର ଗାଡ଼ିଟା ତ ପାକାର୍ଡ଼ ଗାଡ଼ି । ଏ ସବୁ ଅତି ସାଧାରଣ ବୁଦ୍ଧି ; ଦୁଇରେ ଦୁଇ ମିଶାଇଲେ ଚାରି ହେଲା ପରି ।

କମଳ ପଚାରିଲା—କିନ୍ତୁ ହଠାତ୍ ପାଞ୍ଚମାଇଲ ଦୂରରୁ ଆସି ଏ ଲେକ୍‌ରୋଡ଼ କଡ଼ରେ ପାଚେରି ଉପରେ ବସି ଚନାବାଦାମ ଖୋବାଇବାର ମତଲବ୍ କଣ ବିନୋଦ ?

ବିନୋଦ ଓ କମଳ ଦୁହେଁ ଚାଲିବା ପାଇଁ ଆରମ୍ଭ କରିଥିଲେ ।

ବିନୋଦ ଚନାବାଦାମ ଠୁଙ୍ଗାଟା କମଳ ହାତରେ ଧରାଇ ଦେଇ କହିଲା—ବଡ଼ ଦୁଃସମ୍ବାଦ ଭାଇ । ତୁ ମକ୍ଷୀକାକୁ ଜାଣୁ ? ମକ୍ଷୀକା—ନାରୀ ପୋଲିସ

ବିଷୟରେ ସବଇନ୍‌ସପେକ୍‌ଟ୍ରେସ । ମାସକୁ ଦରମା ପାଏ ପ୍ରାୟ ଦୁଇଶହ ଟଙ୍କା, ତା' ଛଡ଼ା ମାଗଣାରେ ରହିବାକୁ ଘର । ସ୍ୱଚ୍ଛନ୍ଦ, ସ୍ୱଚ୍ଛଳ ଜୀବନ । ତା ସହିତ ବିବାହର ପ୍ରସ୍ତାବ କରୁଥିଲି ମୁଁ । ହେଉନା ପଛେ ବୟସ ତା'ର ତିରିଶିରୁ ଉପରେ, ହେଉନା ପଛେ ସେ ରୂପହୀନା···

କମଳ ତା' ଉପରେ ଟିପ୍‌ପଣୀ କରି କହିଲା—ଶିଥିଳବକ୍ଷା, କୃଷ୍ଣା, ଦୀର୍ଘଦନ୍ତା···

ବିନୋଦ କହିଲା—କିନ୍ତୁ ତାକୁ ବିବାହ କରିଥିଲେ ମୋର ସବୁ ସମସ୍ୟାର ସମାଧାନ ହୋଇ ଯାଇଥାନ୍ତା । 'ଆଦିମ ମନୁଷ୍ୟର ସଂସ୍କୃତି' ସମ୍ବନ୍ଧରେ ମୁଁ ଯେଉଁ ଗବେଷଣା ଆରମ୍ଭ କରିଛି, ନିର୍ବିଘ୍ନରେ ସେ ଗବେଷଣା ଶେଷ ହୋଇ ପାରିଥିଲେ, ଅର୍ଥର ଆଉ ବା କି ଚିନ୍ତା ଥିଲା ?

କମଳ ପଚାରିଲା—କିନ୍ତୁ ମଲ୍ଲୀକା ତୋ ପରି ଗୋଟିଏ ଅପଦାର୍ଥକୁ ବିବାହ ହୋଇଥାନ୍ତା କାହିଁକି ?

ବିନୋଦ କହିଲା—ଆରେ ମୂର୍ଖ, ଏ ପୃଥିବୀଟା relative ମାନେ ଆପେକ୍ଷିକ । ତୋ ପକ୍ଷରେ ମୁଁ ହୋଇପାରେ ଅପଦାର୍ଥ, କିନ୍ତୁ ମଲ୍ଲୀକା ମୋତେ କଣ କହେ ଜାଣୁ ? କହେ—'ବିନୋଦ । ମୁଁ ଆସିଛି ପ୍ରାଣର ଆବେଦନ ଘେନି । ଆଜି ତିରିଶି ବର୍ଷ ବୟସରେ ମୋର ଦେହର ବା ଆଉ କି ଆକର୍ଷଣ ଥାଇ ପାରେ ?'

କମଳ ଆହତ କଣ୍ଠରେ ପଚାରିଲା—ତା'ପରେ ? ବିନୋଦ କହିଲା—ତା'ପରେ ଆଉ କଣ ? ମୁଁ ଏତେଦିନ ମଲ୍ଲୀକାର ପ୍ରାଣର ଆବେଦନର ଅତ୍ୟାଚାରରୁ ଲୁଚି ଲୁଚି ଆତ୍ମରକ୍ଷା କରି ବୁଲୁଥିଲି । କିନ୍ତୁ ଏବେ ମଲ୍ଲୀକା ସହିତ ବିବାହର ଶେଷ ସିଦ୍ଧାନ୍ତରେ ପହଞ୍ଚି ଦେଖେ ମଲ୍ଲୀକାର ବିବାହ ହୋଇ ସାରିଛି ।

କମଳ ଆକାଶରୁ ପଡ଼ିଲା ପରି ପଚାରିଲା—ମଲ୍ଲୀକାର ବିବାହ ହୋଇ ଯାଇଛି । କେବେ ? କାହା ସଙ୍ଗରେ ?

ବିନୋଦ କହିଲା—କେବେ ଜାଣେନା । କିନ୍ତୁ ସେଇ ଖଗାବଣ୍ଡ ବସନ୍ତ ଦାଶକୁ ଜାଣୁ ? ବସନ୍ତ ମଲ୍ଲୀକାକୁ ଗିଟାର୍ ଶିଖାଉଥିଲା । ସେହି ସୁଯୋଗ ନେଇ ବସନ୍ତ ମଲ୍ଲୀକାକୁ ଭୁଲାଇ ବିବାହ ହେଇ ପଡ଼ିଛି । କାଲିଠୁ ସେମାନେ ହନିମୁନ୍‌ରେ ସହର ଛାଡ଼ି ବାହାରକୁ ଯାଇଛନ୍ତି କୁଆଡ଼େ ।

ସର୍ବନାଶ ! ମଲ୍ଲୀକାର ଆଶା ତ ଗଲା । ତା' ସଙ୍ଗେ ସଙ୍ଗେ ବସନ୍ତଠାରୁ କୋଡ଼ିଏ ଟଙ୍କା ଫେରି ପାଇବାର ଆଶା ବି । ଏହାପରେ ବସନ୍ତକୁ ଟଙ୍କା ମାଗିଲେ ସେ ତ ଜବାବ ଦେବ—ସେ କୋଡ଼ିଏ ଟଙ୍କା ତା'ର ବିବାହରେ ପ୍ରୀତି-ଉପହାର ବାବଦକୁ ଯାଇଛି । ତା'ଛଡ଼ା ମଲ୍ଲୀକାଠାରୁ କମ୍ ଟଙ୍କା ତ କମଳ ନେଇ ନାହିଁ !

ତଥାପି ଏଇ ସୁଯୋଗରେ ବସନ୍ତର ଜୀବନଟା ଯଦି ବୀମା କରାଯାଇପାରେ । ଦେଖ୍ ବସନ୍ତ, ମୁଁ ତୋର ଶୁଭକାଂକ୍ଷୀ ହିସାବରେ କହୁଛି—ସଂସାର କଲୁ ଏଥର । ସଂସାରରେ ନାନା ଦାୟିତ୍ୱ ଅଛି, ଦୁର୍ଯୋଗ ଅଛି । ସେଥିରୁ ନିରାପଦ ରହିବାପାଇଁ ତୋର ଜୀବନ ବୀମା କରିବା ଉଚିତ । ଜୋତାରେ ଗୋଟାଏ କଣ୍ଟା ବାହାରିଲାଣି । ଜୋତା ମାଡ଼ି ଆଉ ବାଟ ଚାଲିବା ଅସମ୍ଭବ । କମଳ ରାସ୍ତା ଉପରୁ ଗୋଟାଏ କାଗଜ ଟୁଙ୍ଗା ଗୋଟାଇ ନେଇ, ସେଥିରେ ଜୋତା ହଳକ ପୁରାଇ କାଖ ତଳେ ରଖି ଚାଲିଲା ।

ବିନୋଦ କହିଲା—ସେଇ ଦୁଃଖରେ ମୁଁ ସହରର କୋଳାହଳଠାରୁ ଦୂରରେ, ପାଚିରି ଉପରେ ବସି ତ ଚିନାବାଦାମ ଖାଉଥିଲି, ଆଉ ଭାବୁଥିଲି ପୃଥିବୀର ଏ ଅବସ୍ଥାର କାହିଁକି ?

କମଳ କିନ୍ତୁ ଏତେ ସହଜରେ, ଏତେ ନିର୍ବିକାର ଭାବରେ ବସନ୍ତକୁ ମନେ-ମନେ କ୍ଷମା କରିପାରୁ ନଥିଲା । ଷ୍ଟୁପିଡ୍, ଧାର କୋଡ଼ିଏ ଟଙ୍କା ଫେରାଇବା ଦୂରେ ଥାଉ, ବିଶ୍ୱାସଘାତକତା କରି ମଲ୍ଲୀକାକୁ ବିବାହ ହୋଇ ପଡ଼ୁଛି, ପୁଣି କାହାକୁ ନ ଜଣାଇ !

ଆଗରେ 'ବୋଲ୍‌ଭାର୍ଡ' ରେସ୍ତୋରାଁ ।

ସୁନ୍ଦର ଚିଙ୍ଗୁଡ଼ି କଟ୍‌ଲେଟ ମିଳେ ଏଠି । ଚିଙ୍ଗୁଡ଼ି କଟ୍‌ଲେଟର ବାସନାରେ ସନ୍ଧ୍ୟାର ପବନ ଲୋଭନୀୟ ହୋଇ ଉଠିଛି । ଦୁଇବନ୍ଧୁ ଚିଙ୍ଗୁଡ଼ି କଟ୍‌ଲେଟ୍‌ର ଗନ୍ଧ ନାସାପୁଟ ବିସ୍ତାର କରି ଉପଭୋଗ କରିବାରେ ଲାଗିଲେ । କମଳ ଅତି ସାବଧାନରେ ପକେଟରେ ଦଶଣା ପଇସା ଥରେ ଅଣ୍ଡାଳିଲା । ପେଟ ଭିତରେ ସେଇ ଜାନୁଆରଟା ପୁଣି ଲମ୍ବା ଲମ୍ବା ଦାନ୍ତ ଲଗାଇ କୋରିବା ଆରମ୍ଭ କରିଛି ।

ରେସ୍ତୋରାଁ ସାମନାରେ ବିନୋଦ କମଳର କାନ୍ଧ ଉପରେ ହାତ ରଖି କହିଲା—ଆ, କମଳ । ବଡ଼ ଭୋକ ଲାଗିଲାଣି ।

କମଳର ଉତ୍ତର ପ୍ରତି ଅପେକ୍ଷା ନକରି ବିନୋଦ ରେସ୍ତୋରାଁ ଭିତରକୁ ଉଠିଗଲା । ତା' ପଛେ ପଛେ କମଳ । ଦୁହେଁ ଗୋଟିଏ କୋଣରେ ଫଣ୍ଡେ ଟେବୁଲ ପାଖରେ ବସି ପଡ଼ିଲେ ।

ବିନୋଦ ଟେବୁଲ୍ ଉପରେ ହାତ ବାଡ଼େଇ ଅମିଷ୍ଟ ଗଳାରେ ଡାକିଲା—ବୟ୍—ବୟ୍ ।

କମଳ ଭୀରୁ କଣ୍ଠରେ କହିଲା—ମୋର ପକେଟ୍ ଏକଦମ ଖାଲି ବିନୋଦ । କପର୍ଦ୍ଦକ ସୁଦ୍ଧା ନାହିଁ ।

ବିନୋଦ କହିଲା—ମୋତେ ଫାଙ୍କି ଦେବା ସହଜ ନୁହେଁ କମଳ । ତୋ ପକେଟରେ ପଇସା ଝଣଝଣ ହେବା ମୁଁ ଶୁଣିଛି । ଏଇ ଦେଖ୍ ନା ମୋ ପକେଟ...

ବିନୋଦ ଦୁଇ ହାତରେ କମିଜର ଦୁଇ ପକେଟ୍ ପଦାକୁ କାଢ଼ି ଆଣିଲା । ସେଥିରୁ କେଇଟା ଚନାବାଦାମ ଚଲ ଚଟାଣ ଉପରେ ଖସି ପଡ଼ିଲା ।

କମଳ ଦାନ୍ତ ଚିପି ମନେମନେ ବିନୋଦକୁ ଅଭିଶାପ ଦେଲା—କର୍ମକୋଢ଼ୀ, ଅପଦାର୍ଥ, ଭଗାସ୍ୱତ, ସ୍ୱାର୍ଥପର, ବନ୍ଧୁଭାବ ଦ୍ୱାହରେ ଏଠି ରେସ୍ତୋରାଁକୁ ଆଣି ମୋର ଶେଷ ସମ୍ବଳ ପୁଞ୍ଜା ଲୁଟ କରିବାର ମତଲବ !

କଳା ହାଫ୍‌ପ୍ୟାଣ୍ଟ ପିନ୍ଧା 'ବୟ୍' ସେତେବେଳକୁ ଆସି, ଟେବୁଲ ପାଖରେ ଠିଆ ହୋଇ ସାରିଥିଲା ।

କମଳ ନିରୁପାୟ ପରି କହିଲା—ଗ୍ରିଲ୍ କଟ୍‌ଲେଟ୍ ।

ରେସ୍ତୋରାଁ ରେଡ଼ିଓରେ ଗୀତ ବାଜୁଥିଲା...ହିନ୍ଦୀ ଗଜଲ୍ । ବିନୋଦ ଟେବୁଲ ଉପରେ ଦୁଇ ହାତରେ ତାଳ ଧରିଥିଲା । ଷ୍ଟୁପିଡ଼ ।

ବୟ୍ ଦୁଇଟା ପ୍ଲେଟରେ ଦୁଇଟା କରି ଚିଙ୍ଗୁଡ଼ି କଟଲେଟ୍ ଦେଇଗଲା । ବିନୋଦ ଗୋଟାଏ ଚିଙ୍ଗୁଡ଼ି କଟଲେଟ୍ ପାଟି ଭିତରେ ପୁରାଇ ହିଂସ୍ର ଭାବରେ ଚୋବାଇବାରେ ଲାଗିଲା ।

## ( ଛଅ )

ରେସ୍ତୋରାଁ ବାହାରକୁ ଆସି ଦୁଇ ବନ୍ଧୁ ଦୁଇଖଣ୍ଡ ସିଗାରେଟ୍‌ରେ ନିଆ ଲଗାଇଲେ । କମଳ ପଚାରିଲା—

—ତା' ପରେ ?

ବିନୋଦ କଳେ ଧୂଆଁ ଛାଡ଼ି ଉତ୍ତର ଦେଲା—ଯାହା ଲକ୍ଷ୍ୟହୀନ ।

କମଳର ମନେ ପଡ଼ିଲା, ବସ୍ତି ଅଞ୍ଚଳର ସେଇ ଆବର୍ଜନାପୂର୍ଣ୍ଣ ଗଳି କଡ଼ର ଭଡ଼ା ଘର । ଘର ମାଲିକ ଅବିକା ନିଶ୍ଚୟ ଦୁଆରେ ବସି, କମଳ ଅପେକ୍ଷାରେ ସମସ୍ତ କାଟିବା ପାଇଁ ନିଶ ମୋଡ଼ୁଥିବ । ଘରକୁ ଫେରିଯିବାର ସବୁ ନୈତିକ ସାହସ ମୁହୂର୍ତ୍ତିକ ଭିତରେ କମଳ ମନରୁ ଉଭେଇ ଗଲା ।

କମଳ କହିଲା—ବାସ୍ତବିକ ଯାହା ଲକ୍ଷ୍ୟହୀନ ।

ବିନୋଦ କମଳର ଗୋଟିଏ ବାହୁଧରି ପାଖର ଗୋଟିଏ ଗଳିଆଡ଼େ ଟାଣି ନେଇ କହିଲା—ମୁଁ ବଡ଼ କ୍ଳାନ୍ତ କମଳ ।

କମଳ ପଚ୍ଚାରିଲା—କେଉଁ କୁଆଡ଼େ ? ପାର୍କରେ ରାତି ବାରଟା ପରେ ଯେ ପ୍ରବେଶ ମନା । ଅନର୍ଥକ ଶେଷକୁ ହୁଏତ ପୁଲିସ ହାଜତ ମାଡ଼ିବା ପାଇଁ ପଡ଼ିବ ।

ବିନୋଦ କହିଲା—ନା ପାର୍କ ନୁହେଁ; ଆଗରେ ରିଫ୍ୟୁଜି କ୍ୟାମ୍ପ ।

## ( ସାତ )

ରିଫ୍ୟୁଜି କ୍ୟାମ୍ପ ।

ଆଗେ କାହାର ଗୋଟାଏ ଷ୍ଟୋର ଗୋଦାମ ଥିଲା । ଦସ୍ତା ଛାଉଣୀ ପ୍ରକାଣ୍ଡ ହଲ୍ ପରି ଘର । ପ୍ରାୟ ଚାଳିଶିଟି ପରିବାର ସେଇଥିରେ ନେଇଛନ୍ତି ଆଶ୍ରୟ । ଭିତରେ ପ୍ରଚଣ୍ଡ ଗରମ । ତେଣୁ ସାମନା ଖୋଲା ପଡ଼ିଆ ଖଣ୍ଡିକରେ ଚାଳିଶିଟି ପରିବାରର ଚାଲିଛି ଜୀବନଯାତ୍ରାର କୋଳାହଳ । ଚାଳିଶଟି ଚୁଲି ଦକ୍ ଦକ୍ ହୋଇ ଜଳୁଛି । ସବୁ ଚୁଲିକୁ କେନ୍ଦ୍ର କରି ଗୋଟିଏ ଗୋଟିଏ ପରିବାର । କୋଉଠି ଭାତହାଣ୍ଡିରୁ ଫେନ ଗଳା ହେଉଛି, କୋଉଠି ରୁଟି ବେଲା ଚାଲିଚି । ଆଉ ତା ସାଙ୍ଗରେ ଶିଶୁର କୋଳାହଳ, କ୍ରନ୍ଦନ, ବୃଦ୍ଧର ଗର୍ଜନ, ଚୁଡ଼ିର ଠୁଣଠାଣ ଶବ୍ଦ ! ବିନୋଦ ଚିତ୍ତ ହୋଇ ଦୁଇ ହାତ ମୁଣ୍ଡତଳେ ରଖି ପଡ଼ିଆରେ ଘାସ ଉପରେ ଲେଟି ପଡ଼ିଲା । କମଳ କାଖତଳୁ ଜୋତା ପୁଡ଼ିଆଟି କାଢ଼ି ମୁଣ୍ଡତଳେ ଦେଇ ଶୋଇ ପଡ଼ିଲା । କୋଟ୍‌ଟାର ଭାଙ୍ଗ ଲେଉଟି କୋଚି ହୋଇଯିବା ଭୟରେ କୋଟ୍‌ଟି ଓହ୍ଲାଇ କମଳ ମୁଣ୍ଡତଳେ ମଧ୍ୟ ରଖିଦେଲା । ଆଃ···କି ଶାନ୍ତ ! ସନ୍ଧ୍ୟାର ଝିର୍ ଝିର୍ ପବନ । ଆକାଶରେ ଲକ୍ଷ ଲକ୍ଷ ଅଗଣିତ ତାରା ! ସୁପ୍ତିମଧୁର ଅନ୍ଧକାର । ଦୂରରୁ ଶୁଭୁଛି ମହାନଗରୀର ସନ୍ଧ୍ୟାର ପ୍ରମତ୍ତ କୋଳାହଳ !

ଅଳ୍ପ ଦୂରରେ ଗୋଟିଏ ସ୍ତ୍ରୀଲୋକ ଦୁଇ ହାତରେ ରୁଟି ବେଲି, ନିଆଁରେ ସେକୁଛି । ପାଖରେ ତାର ଚାରିଟି ଶିଶୁ ଘେରି ବସି ସେହିଆଡ଼େ ଚାହିଁ ରହିଛନ୍ତି କ୍ଷୁଧାର୍ତ୍ତ କୁକୁର ପରି । ନିଆଁ ଧାସରେ ନାରୀଟିର ରୁଗ୍ଣ, ଶୀର୍ଣ୍ଣ, ମୁହଁ ଦିଶୁଛି ଅଳ୍ପ ଅଳ୍ପ । ସର୍ବଂସହା ଧରିତ୍ରୀର ସହନଶୀଳତାର ପ୍ରତିମୂର୍ତ୍ତି ଯେପରି !

କମଳ ଭାବିଲା—ଗୋଟିଏ ଘର ଭାଙ୍ଗିଛି, ଦୁଃଖ ନାହିଁ, ଭୟ ନାହିଁ, ଆଶଙ୍କା ନାହିଁ । ପୁଣି ନୂଆ ଘର ଗଢ଼ା ହେବ । ସବୁ ଦୁର୍ଯୋଗ, ଦୁଃଖ, ଅଭିଶାପ ଭିତରେ ମଣିଷ ବଞ୍ଚୁଛି, ଆଉ ବଞ୍ଚିବ ! ସେ ସ୍ତ୍ରୀଲୋକଟି ଖଣ୍ଡେ ରୁଟି ଚାରିଭାଗ କରି, ଚାରିଜଣ ଶିଶୁଙ୍କ ହାତରେ ଖଣ୍ଡେ ଖଣ୍ଡେ କରି ଧରାଇ ଦେଇ, ପୁଣି ଆଉ ଖଣ୍ଡେ ରୁଟି ନିଆଁ ଧାସ ଉପରେ ଦୁଇଖଣ୍ଡି କାଠିରେ ଟେକି ଧରିଲା ।

ବିନୋଦର ନାକ ଘୁଙ୍ଗୁଡ଼ି ଡାକିଲାଣି ।

( ଆଠ )

କମଳ ମଧ୍ୟ ଶୋଇ ପଡ଼ିଲଣି ।

ଏମାନଙ୍କ ଇଚ୍ଛା ହୁଏତ କୁହ ସ୍ୱଗାବଣ୍ଡ, ଆପତ୍ତି ନାହିଁ । ଭିକ୍ଷୁକ କୁହ ଦୁଃଖ ନାହିଁ । ବିନୋଦ ଶୋଇ ପଡ଼ିଛି । ମାତ୍ର ଚେଇଁଥିଲେ, ସେ ଶତସିଂହର ଶୀର୍ଷରେ ଉଠବସି କରିଥାନ୍ତା···ମୁଁ ଆଦିମ ପ୍ରସ୍ତର ଯୁଗରୁ ଆଜି ପର୍ଯ୍ୟନ୍ତ ମନୁଷ୍ୟର ସବୁ ଇତିହାସ ଆଲୋଚନା କରି ଦେଖିଛି, ସମାଜ ସଂସାର ପାଖରେ ଯେଉଁମାନେ ଆତ୍ମସମର୍ପଣ ନକରି ଅଲଗା ରହିଛନ୍ତି, ଦୁଃଖ, ଦୁର୍ଯୋଗ, ଲାଞ୍ଛନା ଓ ଅପମାନ ହୁଏତ ହୋଇଛି ସେମାନଙ୍କର ଚିର ସହଚର । ମାତ୍ର ନୂତନର ସନ୍ଧାନ ପାଇଁ ସେମାନେ ନିଜକୁ ଜଳାଇ ଜାଳିଛନ୍ତି ମୁକ୍ତିର ଆଲୋକ । ସେ ଆଲୋକରେ ପୁରାତନ ପୃଥିବୀ ଯୁଗେ ଯୁଗେ ପାଇ ଆସିଛି ନିଜର ନୂତନ ପରିଚୟ । ହୁଏତ ଅଭିଶପ୍ତ ସେମାନେ । ଶିଥିଳବକ୍ଷା, ଦୀର୍ଘଦନ୍ତା, କୃଷ୍ଣା, ମଲ୍ଲିକା ରୂପରେ ସଂସାର, ସେମାନଙ୍କ ଦ୍ୱାରକୁ ବାରମ୍ବାର ଆସିଛି ପ୍ରାଣର ନିବେଦନ ଘେନି । ମାତ୍ର ସଂସାରଠାରୁ ସେମାନେ ଆତ୍ମରକ୍ଷା କରି ଲୁଚି ଲୁଚି ବୁଲିଛନ୍ତି । ହୁଏତ କହିପାରି ସେମାନେ ପାଗଳ । ମାତ୍ର ବିନୋଦ ତା ଯୁକ୍ତି ସପକ୍ଷରେ ଇତିହାସରୁ ସଂଗ୍ରହ କରି ରଖିଛି ଭୂରିଭୂରି ପ୍ରମାଣ ।

ବିନୋଦ ଶୋଇ ପଡ଼ିଛି ।

କମଳର ନାକ ଘୁଙ୍ଘୁଡ଼ି ଡାକୁଛି ।

ସେ ସ୍ତ୍ରୀଲୋକଟିର ରୁଟି ଶେକା ସରିଲଣି । ସେ ଶିଶୁ ବ୍ୟବେଟି ମଧ୍ୟ କେତେବେଳୁ ଶୋଇ ପଡ଼ିଲେଣି ।

[ ଜୁଲାଇ, ୧୯୬୦ ]



# କୃଷ୍ଣଚୂଡ଼ା

ସାପ୍ତାହିକ 'ସଂଗ୍ରାମ' ଖବରକାଗଜ ଅଫିସ ।

ସଦାନନ୍ଦ ପ୍ରୁଫ୍ ଦେଖୁଛି । କେବେକାର ପୁରୁଣା କୋଠା । ଛାତ ଫାଟି ବର୍ଷା ଝରୁଚି । ତଳର ଚଟାଣରେ ପାଣିର ସ୍ରୁଅ ବହି ଯାଉଚି । ଗୋଟାଏ ପାଖ କାନ୍ଥରେ ମାଡ଼ିଯାଇଚି ଶିଉଳୀର ନେଳୀ ଆସ୍ତରଣ ।

ବାହାରେ ଆଦ୍ୟ ଆଷାଢ଼ର ଅବିରାମ ବର୍ଷା ଧାରା ଟିକିଏ କମି ଆସିଛି । କ୍ଲାନ୍ତିରେ, ଅବସାଦରେ ସଦାନନ୍ଦ କାଗଜର ପ୍ରୁଫ୍ ଟେବୁଲ୍‌ର ଗୋଟାଏ ପାଖକୁ ଠେଲିଦେଲା । ପ୍ରୁଫ୍ ଦେଖି ଦେଖି, ଗତ କେଇଟା ବର୍ଷ ଭିତରେ ସେ କିପରି ଅସ୍ୱାଭାବିକ ଭାବରେ ନୈରାଶ୍ୟବାଦୀ ସିନିକ୍ ପାଲଟି ଗଲାଣି । ଜୀବନରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସବୁଠି ଖାଲି ଭୁଲ୍ ଆଉ ଭୁଲ୍ ପୁଣି ଭୁଲ୍ ।

କାଗଜ ବାହାରିବା ପାଇଁ ଆଉରି ଚାରିପୃଷ୍ଠା ବାକି, ଅର୍ଥାତ୍ ଷୋଳ କଲମ । ଷୋଳ କଲମ ପୁଣି ପୂର୍ଣ୍ଣ କରିବାକୁ ପଡ଼ିବ । କ୍ଲାନ୍ତି ଓ ବିରକ୍ତିରେ ସଦାନନ୍ଦ ପକେଟ୍‌ରୁ ଖଣ୍ଡେ ସିଗାରେଟ୍ କାଢ଼ି ନିଆଁ ଲଗାଇଲା ।

ସଦାନନ୍ଦ ସବୁ । ଏକାଧାରରେ ସମ୍ପାଦକ, ପ୍ରୁଫ୍ ରିଡ଼ର ସବୁ । ଆଉ ଜଣେ ସହକର୍ମୀ ଅଛି । କିନ୍ତୁ ସେ ବାହାରର କଥା ବୁଝିବା ପାଇଁ ।

ସଦାନନ୍ଦ କେଜାଣି କାହିଁକି ଅକାରଣରେ ପଛକୁ ଫେରି ଖୋଲା ଝରକା-ବାଟେ ଚାହିଁଲା ପୃଥିବୀକୁ ।

ଅନେକ ଦିନ ଧରି ସେ ଭୁଲରେ ସୁଦ୍ଧା କେବେ ଥରେ ହେଲେ ଏମିତି ଚାହିଁ ନ ଥିଲା । କେତେଦିନ ଧରି ସେ ଜାଣେନା, କିନ୍ତୁ ଅନେକ ଦିନ ଧରି ।

ଝରକା ଦେହକୁ ଲାଗି ଗୋଟିଏ କୃଷ୍ଣଚୂଡ଼ା ଗଛ । ସାବଜା ଗଛର ଶ୍ୟାମଳ ଶୀର୍ଷ ଲୁଚିଯାଇଛି କୃଷ୍ଣଚୂଡ଼ାର ଛବିଳ ଆବରଣ ତଳେ ।

ସୁନ୍ଦର···ନା ଖାଲି ସୁନ୍ଦର କହିଲେ ଅନେକ କିଛି ଅସମ୍ପୂର୍ଣ୍ଣ ରହିଯିବ । ସୁନ୍ଦର, କୋମଳ, କାନ୍ତ, ମଧୁର ଓ କମନୀୟ କୃଷ୍ଣଚୂଡ଼ାର ସେ ରକ୍ତିମ ବିକାଶ ।

ଆଷାଢ଼ର ଆକାଶରେ କାଳାହାଣ୍ଡିଆ ମେଘ ଯେପରି ମାଟି ଛୁଉଁଚି, ଆଉ

ମେଘର କୋଳରେ କୃଷ୍ଣଚୂଡ଼ା । ବୈଷ୍ଣବ-ସାଧକର ଅତସୀ-କୁସୁମ କୃଷ୍ଣଚୂଡ଼ାରେ ଯେପରି ପିନ୍ଧିଛନ୍ତି ସଦ୍ୟଫୁଟନ୍ତ କୃଷ୍ଣଚୂଡ଼ାର ଗୁଚ୍ଛ ।

ସିଗାରେଟ୍ ସରିଗଲା । ସଦାନନ୍ଦ ଜଳନ୍ତା ସିଗାରେଟ୍‌ଟା ଫିଙ୍ଗିଦେଲେ ବାହାରକୁ ।

······ଅନ୍ତରେ ଷୋଳ କଳମ ବାକୀ ।

ସଦାନନ୍ଦ ହଂସ୍ର ଭାବରେ ଝରକାଟା ବନ୍ଦ କରିଦେଲେ । କ୍ରୀତଦାସର ପୃଥିବୀରେ ଜୀବନ ମାନେ ବଞ୍ଚିବା ନୁହେଁ କିନ୍ତୁ ଏକ ଅର୍ଥହୀନ ଜୀଇ ରହିବା । କ୍ରୀତ-ଦାସର ଏ ପୃଥିବୀ । ଏହାର ପ୍ରତ୍ୟେକ ଅଧିବାସୀର ଅସ୍ଥି ମଜ୍ଜାରୁ ବଞ୍ଚିବାର ଆନନ୍ଦ ଶୋଷଣ କରିନେଇଛି ଦାସତ୍ୱ ।

ସହରତଳୀ କୁଲିବସ୍ତିର କୁଲୀ ଆଉ ସଦାନନ୍ଦ ଭିତରେ କଣ ବା ତଫାତ୍ ଅଛି ? କୁଲି, କାରଖାନା ମାଲିକର କ୍ରୀତଦାସ, ଆଉ ଆଦର୍ଶବାଦୀ ସଦାନନ୍ଦ, କ୍ରୀତଦାସ ଏକ ଆଦର୍ଶର ବା ଆଦର୍ଶବାଦର ।

ବରଂ କୁଲିର ଜୀବନରେ ପୂର୍ଣ୍ଣତାର ଆସ୍ୱାଦ ଅଛି । ସପ୍ତାହରେ ମଜୁରୀ ମିଳିଲା ଦିନ, ଅନ୍ତତଃ ଦିନକ ଲାଗି ସୁଦ୍ଧା ପାଣିମିଶା ସସ୍ତା ପିଇ, ସେ ଜୀବନରେ ତୃପ୍ତି ପାଏ । କିନ୍ତୁ ସଦାନନ୍ଦର ସେତକ ନାହିଁ ଯେ ! ଜୀବନ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଏକ ବିସ୍ରାଟ ଅତୃପ୍ତି । ଆଦର୍ଶର ପୂର୍ଣ୍ଣତା କାହିଁ ?

ଦମକାଏ ପବନରେ ଝରକାଟା ଆପେ ଆପେ ପୁଣି ଖୋଲିଗଲା ।

କ୍ରୀତଦାସର ମୁମୂର୍ଷୁ ଜୀବନ ପ୍ରତି ଜୀବନୋଚ୍ଛଳ କୃଷ୍ଣଚୂଡ଼ାର ସେଇ ରଙ୍ଗ । ଉପହାସ ।

ଏହା ଭିତରେ ଅନେକ ବର୍ଷ ବିତିଯାଇଛି । ଦିନେ ତମସାର ଚୂଡ଼ାରେ ନିଜ ହାତରେ ସେ ପିନ୍ଧାଇଥିଲେ କୃଷ୍ଣଚୂଡ଼ାର ସ୍ତବକ । ସେ ଅନେକ ଦିନ ତଳେ, ଯେଉଁଦିନ ତମସା ଆସିଥିଲା ନବବଧୂ ସାଜି । ସେ ଦିନ ଏମିତି ହୁଏତ ବର୍ଷଣକ୍ଲାନ୍ତ ଆଷାଢ଼ର ଗୋଟିଏ ଅଳସ ମଧ୍ୟାହ୍ନ ।

ଆଜି ହାତରୁ ସେ ଚପଳତା ମରିଗଲାଣି ।

ଷୋଳଟି ପ୍ରଶ୍ନ ଆଉରି ବାକୀ ।

ସଦାନନ୍ଦ ପୁଣି ଆସି ଟେବୁଲ୍ ପାଖରେ ବସି ପଡ଼ିଲେ । କିନ୍ତୁ କଣ ଦେଇ ବା ସେ ପୂର୍ଣ୍ଣ କରିବ ଏ ବାକୀ ଷୋଳଟି ପ୍ରଶ୍ନ ? ବଳିତର ଦଳମୀ ? ବୁଢିଆର ଜମିଦାରୀ ବୃଦ୍ଧି ? ଆମେରିକାର ମହାଜନୀ ? ଭାରତର ମାନସିକ ଦାରିଦ୍ର୍ୟ ?···ସେ ସବୁ ଲେଖିବା ପାଇଁ ସଦାନନ୍ଦର ଆଉ ଧୈର୍ଯ୍ୟ ନାହିଁ ।

ଆଚ୍ଛା ଏଇ କୃଷ୍ଣଚୂଡ଼ାର କଥା ଖବରକାଗଜରେ ଲେଖି ହୁଏନା । ଏଇ କାନ୍ତ, ଲଳିତ, ରଙ୍ଗା କୃଷ୍ଣଚୂଡ଼ା···ଯାହାର ରକ୍ତିମ ବିଳାସରେ ଆଷାଢ଼ର ଏଇ ନୀରବ, ମେଦୁର ମଧ୍ୟାହ୍ନ ଚପଳ ହୋଇଉଠିଛି ।

ନାଁ, ସମ୍ପାଦକର ପୃଥିବୀରେ କୃଷ୍ଣଚୂଡ଼ା ଏକ ଅବାନ୍ତର ସୃଷ୍ଟି । ସମୁଦାୟ ପୃଥିବୀ ହୁଏତ ଉପହାସ କରିବ, ଖବରକାଗଜ ପୃଷ୍ଠାରେ କୃଷ୍ଣଚୂଡ଼ାର ବର୍ଣ୍ଣନା ।

କିନ୍ତୁ ଏପରି ପୃଥିବୀର କଣ ପରିକଳ୍ପନା ହୁଏନା, ଯେଉଁଥିରେ ଜୀବନର ଅର୍ଥ ଖାଲି ବଞ୍ଚିବା ନୁହେଁ, ଲକ୍ଷ୍ୟ ଖାଲି ସାମ୍ରାଜ୍ୟ ନୁହେଁ, ଆଧିପତ୍ୟ ନୁହେଁ, କ୍ଷମତା ନୁହେଁ, ଅନ୍ୟକୁ ଶୋଷଣ କରି ଅଭିବୃଦ୍ଧି ନୁହେଁ । ଯୋଉ ଜୀବନରେ କୃଷ୍ଣଚୂଡ଼ାର ମଧ୍ୟ ସ୍ଥାନ ଅଛି !

ସଦାନନ୍ଦ ପୁଣି ଆସି ପ୍ରୁଫ୍‌ବିଡ଼ା ପାଖରେ ବସି ପଡ଼ିଲା ।

କିନ୍ତୁ ଏ ସଙ୍କୀର୍ଣ୍ଣ କୋଣ ବିରୁଦ୍ଧରେ ମନ ଆଜି ତାର ଯେମିତି ବିପ୍ଳବ କରି ଉଠିଛି । କୃଷ୍ଣଚୂଡ଼ା ସେଇ ବିପ୍ଳବର ଗୈରିକ ପତାକା ଉଡ଼ାଇ ଦେଇ ଯାଇଛି ବାହାରର ପୃଥିବୀରେ ।

ସଦାନନ୍ଦ ଚଉକୀ ଛାଡ଼ି ଉଠି ଆସିଲା ସମ୍ମୋହିତ ପରି । ତା' ପରେ ଅଫିସ ଛାଡ଼ି ପଳାଇଗଲା ବାହାରକୁ ।

ବାହାରେ ବର୍ଷା ବନ୍ଦ ହୋଇ ଯାଇଛି । ସଦାନନ୍ଦ ଠିଆ ହେଲା ଆସି କୃଷ୍ଣଚୂଡ଼ାର ସେଇ ଗଛ ତଳେ । ତଳର ସାବୁଜା ଘାସ ଶେଯ ଉପରେ ପବନରେ ବିଛେଇ ହୋଇ ପଡ଼ୁଛି କୃଷ୍ଣଚୂଡ଼ାର ନାଲି ପାଖୁଡ଼ା ।

ସଦାନନ୍ଦର ଦେହର ପ୍ରତି ଧମନୀରେ ଜାଗିଉଠିଲା ଯେପରି ଆଦ୍ୟ ଯୌବନର ମୃତ ଚପଳତା । ଗଛରେ ଚଢ଼ି ଇଚ୍ଛା ହେଲା ତା'ର ମନଭରି କୃଷ୍ଣଚୂଡ଼ା ତୋଳିବା ପାଇଁ ।

ଭିତରେ କିନ୍ତୁ, ସଦାନନ୍ଦ ଖୋଜି ପାଇଲା ନାହିଁ ସାହସ । ସଦାନନ୍ଦ ଏ ବୟସରେ ଗଛ ଚଢ଼ି କୃଷ୍ଣଚୂଡ଼ା ତୋଳୁଛି—ପୃଥିବୀ ଉପହାସ କରିବ । ସଦାନନ୍ଦ ଚାରିଆଡ଼କୁ ଚାହିଁଲା । ଚାରିଆଡ଼େ ମଣିଷ । ଚାରିଆଡ଼େ ଖାଲି ଅଗଣିତ ଘୃଣ୍ୟ କୁତ୍ସିତ ଦ୍ୱିପଦ ପଶୁ ।

ଏଇ ରମେଶ ଆସୁଛି, ଆସୁଛି ନିଶ୍ଚୟ କଣ ଗୋଟାଏ ନୂଆ ଅସୁବିଧାର ଅଭିଯୋଗ ନେଇ ।

ରମେଶ କହିଲା—ପ୍ରେସ ବନ୍ଦ । ଆପଣ ଏଣେ ବୁଲୁଛନ୍ତି, କିନ୍ତୁ କାଲି କମ୍ପୋଜିଟରମାନେ କେମିତି ଦରମା ପାଇବେ କହନ୍ତୁ ତ ।

ସଦାନନ୍ଦ କହିଲା—ଜାଣେନା ।

ରମେଶ ପଚାରିଲା—ମାନେ ?

ସଦାନନ୍ଦ କହିଲା—ଜାଣେ ନା । ତମେ ଯାଅ ରମେଶ । ମୋତେ ଆଉ ବିବ୍ରତ କରନା ।

ରମେଶ ଅଭିଭୂତ ପରି ସେଠୁ ଚାଲି ଆସିଲା ।

କିଛି ସମୟ ପରେ ସଦାନନ୍ଦ ମଧ୍ୟ ଫେରି ଆସିଲା । ଘୁରିଆଡ଼େ ମଶିଷ । ଗଛରେ ଚଢ଼ି କୃଷ୍ଣଚୂଡ଼ା ତୋଳିବା ପାଇଁ ସାହସ ହେଲା ନାହିଁ ତା'ର ।

ରାତି ଅନେକ ହୋଇଛି ।

ମେଘାଚ୍ଛନ୍ନ ଆକାଶରେ ହୋଇଛି କୃଷ୍ଣାତିଥିର ମଳିନ, ବିଳମ୍ବିତ ଚନ୍ଦ୍ରୋଦୟ ।

ସେଇ ମଳିନ ଜ୍ୟୋସ୍ନାର ଗୋଟିଏ ଫଳକ ପଡ଼ିଛି ଆସି ସୁପ୍ତା ତମସା ଉପରେ ।

ସଦାନନ୍ଦର ଆଖିରେ ନିଦ ନାହିଁ । ଦୁଇ ଆଖିରେ ତା'ର କୃଷ୍ଣଚୂଡ଼ାର ରକ୍ତିମ ଚପଳତା ।

ଏଇ ସେଇ ତମସା···ଯାହାର କବରୀରେ ସଦାନନ୍ଦ ଦିନେ ଖୋସି ଦେଇଥିଲା କୃଷ୍ଣଚୂଡ଼ାର ସ୍ତବକ ? ନା ଏ ତମସା, ସେ ନବବଧୂ ତମସା ନୁହେଁ, ଯାହାର କବରୀରେ ସେ ଦିନ ପୁଞ୍ଜୀଭୂତ ହୋଇ ରହିଥିଲା ତମସାବୃତ ରାତ୍ରିର ମାୟା । ସେ ତମସା ମରିଗଲାଣି ।

ମଣିଷ ମରିଯାଏ, କୋଉଦିନ ନିଜର ଅଲକ୍ଷିତରେ ମରିଯାଏ । ତା' ପରେ ଯେଉଁ ଅବଶିଷ୍ଟ ଜୀବନ ପଡ଼ିରହେ, ସେ ଖାଲି ଜୀତଦାସର ବୈଚିତ୍ର୍ୟହୀନ ବଞ୍ଚିବା ।

ତମସା ମରିଯାଇଛି, ସଦାନନ୍ଦ ମରିଯାଇଛି ।

ସଦାନନ୍ଦ ବିଛଣା ଛାଡ଼ି ଅତି ସନ୍ତର୍ପଣରେ ଘରୁ ବାହାରିଗଲା । ସେଇ କୃଷ୍ଣଚୂଡ଼ା ଗଛ ।

ସୁପ୍ତା ପୃଥିବୀର ଶଯ୍ୟା ଉପରେ କୃଷ୍ଣଚୂଡ଼ା ଯେପରି ଚାମର ଦୋଳାଉଛି ।

ସଦାନନ୍ଦ ଗଛ ତଳେ ଆସି ଠିଆ ହେଲା । ଦେହରେ ଲୁଗାପଟା ଭିଡ଼ିଲା, ଗଛରେ ଚଢ଼ିବା ପାଇଁ; କିନ୍ତୁ ମନେହେଲା ତା'ର ସେ ଯେମିତି ଅଥର୍ବ, ପଙ୍ଗୁ ହୋଇଯାଇଛି । ଦେହର ପ୍ରତି ଅଙ୍ଗ ପ୍ରତ୍ୟଙ୍ଗରୁ ଆଗର ସେ ଜୀବନ୍ତ ଚପଳତା ମରିଯାଇଛି ।

ତଥାପି ସଦାନନ୍ଦ ଗଛରେ ଚଢ଼ିବାକୁ ଆରମ୍ଭ କଲା, ସମସ୍ତ ଶକ୍ତି ଓ ସାମର୍ଥ୍ୟ ପ୍ରୟୋଗ କରି ।

ହଠାତ୍ ପଛରୁ ଶୁଭିଲା···କୋନ୍ ହ୍ୟାୟ ?

ରାତି ଡିଉଟିର କନେଷ୍ଟବଲ । ବେକରୁ ପାଦ ପର୍ଯ୍ୟନ୍ତ ବର୍ଷାତି । ହାତରେ ଖଣ୍ଡେ ଠେଙ୍ଗା । ଓଠରେ ଖଣ୍ଡେ ବିଡ଼ି ।

ସଦାନନ୍ଦ ଗଛରୁ ଖସି ଆସିଲା ।

କନେଷ୍ଟବଲ ଟର୍ଚ୍ଚ ମାରିଲା ସଦାନନ୍ଦ ଉପରକୁ ।

'—ଓ ଆପଣ ! ଏତେ ରାତିରେ ?'

ସଦାନନ୍ଦ ଅପ୍ରତିଭ ହୋଇ କହିଲା—'ନା—ଏମିତି—କିଛି ନୁହେଁ ।'

କନେଷ୍ଟବଲ ଆଉ କିଛି କହିବା ଆଗରୁ ସଦାନନ୍ଦ ଦ୍ରୁତପଦରେ ସେଠୁ ଚାଲିଆସିଲା ।

ମନେହେଲା ତା'ର ଏ ପୃଥିବୀ ମରିଯାଇଛି । ସଦାନନ୍ଦ ମରିଯାଇଛି । କୃଷ୍ଣଚୂଡ଼ା କେବଳ ସେଇ ଏକଦା ଛବିଳ ଜୀବନର ଅମୂଲ ସ୍ମାରକୀ ।

[ ଜୁଲାଇ, ୧୯୪୮ ]



# ଡଇନୋସାରର ଆତ୍ମା

ବୋଧହୁଏ ରୂପା ବ୍ରିଜ୍ ଉପରେ ଗାଡ଼ି ଚାଲିଛି ।

ମହାରାଜ ରାୟ ବ୍ରଜେଶ୍ୱର ରାୟ ସଟର୍‌ର କାଚପର୍ଦ୍ଦା ଉଠାଇ ଜାଲିବାଟେ ଚାହିଁଲେ ବାହାରକୁ । ପୂର୍ବ ଆକାଶରେ ପାଉଁଶିଆ ଆଲୁଅ ଧୀରେ ଧୀରେ ଉକୁଟି ଆସୁଚି, ଉଷା ଆସୁଚି ଅଶ୍ରୁସିକ୍ତା ନାରୀ ପରି ।

ଗତ ରାତରେ ହୁଇସ୍କିର ମାତ୍ରାଧିକ୍ୟ ଲଗି ମୁଣ୍ଡଟା ଭାରି ଲଗୁଚି ।

ହଁ…ରୂପା ବ୍ରିଜ୍ । ବ୍ରିଜ୍ ତଳେ ରୂପାର ଅଙ୍କାବଙ୍କା ପାଣି ଧାର ବାଲୁକା-ଶଯ୍ୟା ଉପରେ ଶୋଇଚି, ରାତଶେଷରେ ରତିକ୍ଳାନ୍ତା ପରି । ମାଧବୀ ? ମୋହିନୀ ? ଶ୍ରୀମତୀ ? ଅନୁରାଧା ?

ବ୍ରଜେଶ୍ୱର ନିଭା ପାଇପ୍‌ରେ ନିଆଁ ଲଗାଇଲେ । ଏ ଗତ ଦଶ ବର୍ଷ ଭିତରେ କିଛି ପରିବର୍ତ୍ତନ ହୋଇନାହିଁ ତ ! ସେଇ ରୂପା, ରୂପା କୂଳରେ ସେଇ ଅତି ପରିଚିତ ଲାଣ୍ଡସ୍କେପ୍…ଏଇତ ଆଗ ଷ୍ଟେସନଟା ରାଜକାଞ୍ଚନଗଡ଼ । କିଛି ପରିବର୍ତ୍ତନ ହୋଇନାହିଁ ।

ଦଶବର୍ଷ କିଛି ନୁହେଁ ! ବ୍ରଜେଶ୍ୱର ଉଲ୍ ସ୍ଲିପିଙ୍ଗ୍ ଗାଉନଟା ଖୋଲି ବିଛଣା ଉପରେ ଫିଙ୍ଗି ଦେଲେ ।

ଦୀର୍ଘ ଦଶ ବର୍ଷ ପରେ ଆଜି ଏ ଶୀତ ସକାଳରେ କାଞ୍ଚନଗଡ଼ ପ୍ରତ୍ୟାବର୍ତ୍ତନ ବ୍ରଜେଶ୍ୱରଙ୍କର ହୁଇସ୍କି-ଭାରି ମସ୍ତିଷ୍କକୁ…ସତେଜ, ଚଞ୍ଚଳ କରିଦେଲା । ରାଜକାଞ୍ଚନ-ଗଡ଼ ଷ୍ଟେସନ ୟାର୍ଡ ଭିତରକୁ ପଶି ଗାଡ଼ିର ଗତି ମନ୍ଥର ହୋଇଗଲା । ପ୍ଲାଟଫର୍ମ ଉପରୁ ସମବେତ କଣ୍ଠରେ ଚିତ୍କାର ଶୁଭୁଥିଲା…କାହାର ଜୟଧ୍ୱନି । ବ୍ରଜେଶ୍ୱର କାନପାତି ଶୁଣିଲେ…ଜୟ ମହାରାଜ ରାୟ ବ୍ରଜେଶ୍ୱର ରାୟ…ଙ୍କ ଜୟ ! ବ୍ରଜେଶ୍ୱରଙ୍କର ନିଷ୍ଠୁର ଲୁହାର ମୁହଁ ହସର ରେଖାରେ ଅଳ୍ପ କୁଞ୍ଚିତ ହୋଇଗଲା ।

ଗାଡ଼ି ରହିଲା । ବ୍ରଜେଶ୍ୱର ଝରକା ବାଟେ ଚାହିଁଥିଲେ ବାହାର ପ୍ଲାଟଫର୍ମକୁ । ଦୀର୍ଘ ଦଶବର୍ଷର ନିର୍ବାସନ ପରେ ବ୍ରଜେଶ୍ୱର ଫେରୁଥିଲେ ଆଜି କାଞ୍ଚନଗଡ଼ । ତାଙ୍କୁ ଅଭିନନ୍ଦନ କରିବାପାଇଁ ତେଣୁ ପ୍ଲାଟଫର୍ମରେ ତିଳ ଧାରଣାପାଇଁ ସୁଦ୍ଧା ସ୍ଥାନ ନ ଥିଲା । ଏହା ଭିତରେ ଅବଶ୍ୟ ବହୁତ ପରିବର୍ତ୍ତନ ହୋଇଯାଇଛି । କାଞ୍ଚନଗଡ଼ ରାଜ୍ୟ ନାହିଁ, ରାଜୁତି ଯାଇଛି, ବ୍ରଜେଶ୍ୱରଙ୍କ ଲୁହାର ଦେହରେ ପ୍ରୌଢ଼ତ୍ୱର କଳଙ୍କି…

କମ୍ପାର୍ଟମେଣ୍ଟର ଦରଜା ବ୍ରଜେଶ୍ୱର ଖୋଲିଦେଲେ । ଭିତରକୁ ଅତି ସନ୍ତର୍ପଣରେ ପଶି ଆସିଲେ ତିନି ଜଣ ଭୃତ୍ୟ । ଜଣେ ପିନ୍ଧାଇ ଦେଲା ପୋଷାକ, ଆଉ ଜଣେ ପାଖରେ ଧରିଲା ମୁହଁ ଧୋଇବାପାଇଁ ପାଣି ଓ ତଉଲିଆ, ଅନ୍ୟଜଣେ ଟ୍ରେରେ ଆଣି ଦେଲା ସକାଳ ଟି'। ବାହାରେ କମ୍ପାର୍ଟମେଣ୍ଟ ଦୁଆରେ ଜନତାର ଜୟଧ୍ୱନି । ଗାଡ଼ି ଛାଡ଼ିବାରେ ତିନି ମିନଟ ଡେରି ହୋଇଗଲାଣି । ତଥାପି ବ୍ରଜେଶ୍ୱର ଏ ପର୍ଯ୍ୟନ୍ତ କୁପେ ଭିତରୁ ବାହାରି ନାହାନ୍ତି । ଅନ୍ୟ ଏକ କମ୍ପାର୍ଟମେଣ୍ଟରୁ ତାଙ୍କ ଜିନିଷପତ୍ର ଓହ୍ଲା ଯାଉଛି । ଗଣ୍ଡା ଗଣ୍ଡା ବନ୍ଧୁକ, ଅସୁମାରି ବାକ୍ସ, କାମେରା, ଇତ୍ୟାଦି ଇତ୍ୟାଦି । ବ୍ରଜେଶ୍ୱର ଧୀରେ ଧୀରେ କୁପେ ଭିତରୁ ପ୍ଲାଟଫର୍ମ ଉପରକୁ ଓହ୍ଲାଇ ଆସିଲେ । ତାଙ୍କ ଜୟଧ୍ୱନିରେ ସକାଳର ଶାନ୍ତ ଆକାଶ ଯେପରି ବିଦୀର୍ଣ୍ଣ ହୋଇଗଲା । ରାଶିରାଶି ଶିଶିରଭିଜା ଗେଣ୍ଡୁ ଫୁଲ ମାଳାରେ ବ୍ରଜେଶ୍ୱରଙ୍କର ମୁହଁ ଆଉ ଦେଖାଯାଉ ନଥିଲା ।

ବ୍ରଜେଶ୍ୱର ପାଇପ୍‌ରୁ କଳେ ଧୂଆଁ ଛାଡ଼ି ପାଖରେ ଜଣକୁ ପଚାରିଲେ—'କିପରି ଅଛ ମହାପାତ୍ରେ ? ଏମାନେ ସବୁ କାଞ୍ଚନଗଡ଼ର ଲୋକ ?'

ମହାପାତ୍ର, ନୀଳାମ୍ବର ମହାପାତ୍ର କହିଲେ—'ହଜୁର ବଜେ କରୁଛନ୍ତି ଶୁଣି ଷ୍ଟେସନ ବାହାରେ ରାସ୍ତା ଦୁଇ ପାଖରେ ତୋରଣ, ପୂର୍ଣ୍ଣକୁମ୍ଭ ସଜାଇ ଲୋକେ ରାତି ପାହାନ୍ତାରୁ ଜଗି ବସିଛନ୍ତି ।'

ଦଶ ବର୍ଷ ତଳେ ଆଉ ଗୋଟିଏ ରାତିର ସ୍ମୃତି ବ୍ରଜେଶ୍ୱରଙ୍କ ଆଖି ଆଗରେ ଭାସି ଉଠିଲା । ୧୯୪୬ ସାଲ ସେପ୍‌ଟେମ୍ବର ମାସରେ ସେ ଗୋଟିଏ ଅନ୍ଧକାର ରାତିର କଥା । ପଲିଟିକାଲ ଏଜେଣ୍ଟ ମିଚେଲ ସାହେବ, ହୁଇସ୍କି ନିଶାରେ ଢୁଳାଇ ଢୁଳାଇ କହିଥିଲା—ଏଇ ମୁହୂର୍ତ୍ତରେ ସାର୍ବଭୌମ ବ୍ରିଟିଶ ସରକାରଙ୍କ ଆଦେଶରେ କାଞ୍ଚନଗଡ଼ ଛାଡ଼ିବାକୁ ପଡ଼ିବ, ପାଞ୍ଚ ବର୍ଷ ନିର୍ବାସନ ଆଦେଶ !

କାଞ୍ଚନଗଡ଼ ପ୍ରାସାଦ ବାହାରେ ଉତ୍ତ୍ୟକ୍ତ ଜନତା ଦେଶୀବନ୍ଧୁକ ଆଉ ଟାଙ୍ଗିଆ ଧରି ଠିଆ ହୋଇ ରହିଥିଲେ ସ୍ୱେଚ୍ଛାଚାରୀ, ସ୍ୱୈରାଚାରୀ ବ୍ରଜେଶ୍ୱରଙ୍କର ରକ୍ତପାଇଁ । ଏଇ ମହାପାତ୍ର ସେଦିନ ରାତିରେ ତାଙ୍କୁ ବହୁ କୌଶଳରେ ଲୁଚାଇ ନେଇ ରାଜକାଞ୍ଚନଗଡ଼ ଷ୍ଟେସନରେ ପହଞ୍ଚାଇ ଦେଇ ଆସିଥିଲା । ମହାପାତ୍ର···ସବୁ ନୃଶଂସ, ନିଷ୍ଠୁର ଖିଆଲର ସହଚର, ନୀଳାମ୍ବର ମହାପାତ୍ର । ମହାପାତ୍ର ମଧ୍ୟ ଜେଲରେ ତା'ପରେ ତିନିବର୍ଷ ଅଟକ ରହିଥିଲେ, ନାନା ଦୁଷ୍କର୍ମ ଅଭିଯୋଗରେ ।

ମହାପାତ୍ର ପାଟି କରୁଥିଲେ, ପାଖାପାଖିରେ ଗଲେ ।

ଷ୍ଟେସନ ଫାଟକ ବାହାରେ ଗୋଟାଏ ଲାଲ୍‌ରଙ୍ଗର ରୋଲସରୟେସ୍ ଗାଡ଼ି ବହୁ କଷ୍ଟରେ ଭିଡ଼ ଠେଲି ଆସି ଠିଆ ହେଲା । ବ୍ରଜେଶ୍ୱର ଗାଡ଼ି ଭିତରେ ବସିଲେ । ମହାପାତ୍ର ଡ୍ରାଇଭର ସ୍ଥାନରେ ବସି ଗାଡ଼ିରେ ଷ୍ଟାର୍ଟ ଦେଲେ ।

ବ୍ରଜେଶ୍ୱରଙ୍କର ଚେହେରାରେ ବହୁ ପରିବର୍ତ୍ତନ ହୋଇଥିଲେ ମୁଦ୍ଧା, ସେଇ ସୌମ୍ୟ ଶ୍ରୀ କ୍ଷୀଣ ଦେହ, ମଳିନ କପାଳ ଉପରେ ଅଯତ୍ନ କେଶରାଶି, କ୍ଷୁରର ଧାର ପରି ଦୁଇ ଜ୍ୱଳନ୍ତ ଆଖିରେ ସେଇ ପ୍ରମତ୍ତ ଦୃଷ୍ଟି ସେମିତି ଅପରିବର୍ତ୍ତିତ ରହିଥିଲା ।

ବ୍ରଜେଶ୍ୱର କହିଲେ—'ଜୋର୍‌ରେ ଚଳାଅ ମହାପାତ୍ର, ଘଣ୍ଟାଏ ପନ୍ଦର ମିନିଟରେ ମୋର ଗଡ଼ରେ ପହଞ୍ଚିବା ଦରକାର ।' ଷ୍ଟେସନରୁ ଗଡ଼ ପଚିଶ ମାଇଲ, କିନ୍ତୁ ଗାଡ଼ି ଗ୍ଭଲୁଥିଲା ଘଣ୍ଟାକୁ ତିରିଶମାଇଲ୍ ବେଗରେ ।

ମହାପାତ୍ର ଗାଡ଼ିର ବେଗ ସାମାନ୍ୟ ବଢ଼ାଇ କହିଲେ—'ଆଜ୍ଞା, ଲୋକେ ଯେମିତି ଭିଡ଼ ବାନ୍ଧିଛନ୍ତି !'

—ଏଇ ଗୋଟାଏ ଆକ୍‌ସିଡେଣ୍ଟ୍ ହୋଇଯାଇଥାନ୍ତା । ଜଣେ ଆସୁଥିଲା ବ୍ରଜେଶ୍ୱରଙ୍କ ମୋଟରଗାଡ଼ି ବନେଟ୍‌ରେ ଫୁଲ୍‌ମାଳ ଦେବାପାଇଁ ।

ବ୍ରଜେଶ୍ୱର କହିଲେ—'ଫୁଲ୍‌ସ୍ ! ଆଉରି ଜୋର୍‌ରେ ଚଳାଅ ମହାପାତ୍ର । ଲୋକମାନଙ୍କୁ କହିଦିଅ, ସାଧାରଣ ରାସ୍ତା ଅବରୋଧ କରିବା ଏକ ଦଣ୍ଡନୀୟ ଅପରାଧ ।'

ମହାପାତ୍ର ମୃଦୁ କଲେ—'କିନ୍ତୁ ହଜୁରଙ୍କୁ ଶ୍ରଦ୍ଧା ଜଣାଇବା ପାଇଁ ଏ ଲୋକେ ଯେ ବହୁ ଦୂର ଦୂରାନ୍ତରରୁ ଆସିଛନ୍ତି ।'

ବ୍ରଜେଶ୍ୱର ପାଇପ୍‌ରୁ କଳେ ଧୂଆଁ ଛାଡ଼ି କହିଲେ—'ଦିନେ ମୋର ରକ୍ତପାନ ପାଇଁ ସେମାନେ ମଧ୍ୟ ବହୁ ଦୂର ଦୂରାନ୍ତରରୁ ଆସି ଏମିତି ଭିଡ଼ ବାନ୍ଧିଥିଲେ । ସେମାନଙ୍କ ଶ୍ରଦ୍ଧା ବା ଶ୍ରଦ୍ଧାହୀନତାର କୌଣସି ସ୍ୱତନ୍ତ୍ର ମୂଲ୍ୟ ମୋ ପାଖରେ ନାହିଁ । ଦୁଇ ହାତ ଯୋଡ଼ି ମୁଁ ଅଭିନୟ କରି ପାରିବି ନାହିଁ, ଗାଡ଼ି ଜୋର୍‌ରେ ଚଳାଅ ମହାପାତ୍ର ।'

ହର୍ଣ୍ଣ ଦେଇ ଦେଇ, ପଛରେ ଲାଲ୍‌ଧୂଳିର ଘୂର୍ଣ୍ଣି ଉଡ଼ାଇ ଗୋଟାଏ ମୋଡ଼ରେ ଗାଡ଼ି ଅଦୃଶ୍ୟ ହୋଇଗଲା ।

## ( ଦୁଇ )

କାଞ୍ଚନଗଡ଼ ପ୍ରାସାଦର ଉଦ୍ୟାନରେ ହାତରେ ବନ୍ଧୁକ ଧରି ପଦଚାରଣା କରୁଥିଲେ ବ୍ରଜେଶ୍ୱର ।

ନୀଳ ଆକାଶରେ ଦଳ ଦଳ ହୋଇ ଉଡ଼ି ଯାଉଥିଲେ ମରାଳ, ଚିଲ୍, ଚକ୍ରବାକ । ଏଇ ଯେ ଆକାଶରେ ଉଡ଼ି ଯାଉଛନ୍ତି ଦଳେ ଚିଲ୍ ପକ୍ଷୀ, ମଲ୍ଲୀର ମାଳା ପରି । ବ୍ରଜେଶ୍ୱର ଲକ୍ଷ୍ୟ କରି ବନ୍ଧୁକ ଫୁଟାଇଲେ । ଗୁଳି ଶବ୍ଦରେ କେତୋଟି

ପକ୍ଷୀ ତଳେ ଖସି ପଡ଼ିଲେ । ବ୍ରଜେଶ୍ୱରଙ୍କର ଲୁହାର ମୁହଁରେ ସନ୍ତୋଷର ରେଖା ଉକୁଟି ଉଠିଲା । ଜଣେ ମାଳୀ ଦଉଡ଼ିଗଲା ମୃତ ଓ ଆହତ ପକ୍ଷୀମାନଙ୍କର ସନ୍ଧାନ କରିବା ପାଇଁ ।

ପୁଣି ଆଉ ଦଳେ ପକ୍ଷୀ ଆସୁଛନ୍ତି କଳରବ କରି ।

କାସ୍ପିୟାନ୍ ମାନସରୋବରରେ ଏମାନଙ୍କର ଜୀବନତୃଷ୍ଣା ମେଣ୍ଟି ନାହିଁ । ଶୀତଋତୁରେ ତେଣୁ ଏମାନେ ଉଡ଼ି ଆସୁଛନ୍ତି ବିଷୁବରେଖାର ନିକଟବର୍ତ୍ତୀ ଅଞ୍ଚଳ ଉଷ୍ଣତାର ସନ୍ଧାନରେ । ପକ୍ଷରେ ସେମାନଙ୍କର ସୁଦୂରର ଆହ୍ୱାନ, କଣ୍ଠରେ ଜୀବନର ସଙ୍ଗୀତ···ବ୍ରଜେଶ୍ୱର ଆଉ ଥରେ ଲକ୍ଷ୍ୟ କରି ବନ୍ଧୁକ ଫୁଟାଇଲେ । କେତୋଟା ଧଳାତଣ୍ଟ୍ରା, କଳା ଟିଲ୍‌ଡକ୍ ଘୂଳି ଗ୍ଲେଟରେ ତଳେ ଖସି ପଡ଼ିଲେ । ବହୁବର୍ଣ୍ଣଚିତ୍ରିତ ପକ୍ଷରେ ସେମାନଙ୍କର ବିନ୍ଦୁ ବିନ୍ଦୁ ରକ୍ତ ।

ବ୍ରଜେଶ୍ୱର ଗୋଟାଏ ପକ୍ଷୀକୁ ହାତରେ ଉଠାଇ ଧରିଲେ । ମୃତ୍ୟୁ ଧୀରେ ଧୀରେ ପକ୍ଷୀଟିକୁ କବଳିତ କରୁଥିଲା । ବ୍ରଜେଶ୍ୱର ପକ୍ଷୀଟିକୁ ତଳେ ଫିଙ୍ଗିଦେଲେ ।

ଶିକାରର ଏ ନିଷ୍ଫଳ ଅପଚୟ ଆଉ ଭଲ ଲାଗେନାହିଁ । ହତ୍ୟାରେ ଆଉ ଉତ୍ତେଜନା ନାହିଁ ! ବ୍ରଜେଶ୍ୱର ବନ୍ଧୁକଟା କାନ୍ଧରେ ରଖି ଧୀରେ ଧୀରେ ଉଆସ ଆଡ଼େ ଫେରି ଆସିଲେ ।

ଉଦ୍ୟାନର ସ୍ୱଚ୍ଛ ପୁଷ୍କରିଣୀରେ ଶ୍ୱେତମର୍ମର ଗଢ଼ା ପ୍ରାସାଦର ଛାୟା ଝଲମଲ କରୁଥିଲା । ଧ୍ୟାନମଗ୍ନାର ସାଇପ୍ରେସ ବୃଦା ଭିତରେ କି ଗୋଟିଏ ପକ୍ଷୀର କଳ-ରବରେ ବ୍ରଜେଶ୍ୱର ଚମକି ପଡ଼ିଲେ ।

ନିର୍ଜନ, ନିଃଶବ୍ଦ ପ୍ରାସାଦ । ବ୍ୟକ୍ତିତ୍ୱ, ନିଃସଙ୍ଗ, ନିଷ୍ଫଳ ଜୀବନ । ଚାରିଆଡ଼େ କେବଳ ପ୍ରାଣହୀନ ପ୍ରାଚୁର୍ଯ୍ୟ । ବ୍ରଜେଶ୍ୱର ତଳକୁ ମୁଣ୍ଡ ନୁଆଁଇ ଧୀରେ ଧୀରେ ପ୍ରାସାଦ ଆଡ଼କୁ ଆଗେଇଲେ ।

ସାମନା ପୋର୍ଟିକୋରେ ବ୍ରଜେଶ୍ୱରଙ୍କ 'ଦର୍ଶନ' ପାଇଁ କେତେଜଣ ଅପେକ୍ଷା କରି ଠିଆ ହୋଇଥିଲେ । ବ୍ରଜେଶ୍ୱର ବହୁ ବର୍ଷପରେ ପୁଣି କାଞ୍ଚନଗଡ଼ ଫେରି ଆସିଛନ୍ତି ଶୁଣି ବହୁ ଅଞ୍ଚଳରୁ ବହୁ ପ୍ରଜା ପ୍ରତିଦିନ ଆସୁଛନ୍ତି ତାଙ୍କ ସାକ୍ଷାତ ପାଇଁ । ରାଜ୍ୟ ନାହିଁ, ରାଜୁତି ଗଲାଣି, ତଥାପି ଏହି ଦୁର୍ଦ୍ଧର୍ଷ, ସ୍ୱେଚ୍ଛାଚାରୀ ବ୍ୟକ୍ତି ପ୍ରତି ଅଗଣିତ ପ୍ରଜାଙ୍କର ଅବଚେତନରେ ରାଜପ୍ରୀତି ଓ ମମତା କିଛି ତୁଟି ନାହିଁ । ବ୍ରଜେଶ୍ୱରଙ୍କୁ ଦେଖି ସେମାନେ ଆଭୂମି ଆନତ ହୋଇ ପ୍ରଣାମ ଜଣାଇଲେ । ବ୍ରଜେଶ୍ୱର ସେମାନଙ୍କ ପ୍ରତି ଦୃକ୍‌ପାତ୍ ସୁଦ୍ଧା କଲେନାହିଁ । ବନ୍ଧୁକଟା କାନ୍ଧରୁ ଓହ୍ଲେଇ ଜଣେ ଭୃତ୍ୟ ହାତରେ ଦେଇ ବ୍ରଜେଶ୍ୱର ଭିତରକୁ ଚାଲିଗଲେ ।

ଭିତରକୁ ଆସି ବ୍ରଜେଶ୍ୱର, ମହାପାତ୍ରଙ୍କୁ ଡାକି କହିଲେ—'କାହିଁକି ସେମାନେ ଭିଡ଼ ବାନ୍ଧିଛନ୍ତି ଏଠି ? କଣ ଦରକାର ? ସେମାନଙ୍କୁ ତଡ଼ିଦିଅ ଏଠୁ ।'

ମହାପାତ୍ର କହିଲେ—'ହଜୁର ! ଦିନ କାଳ ଯେପରି ବଦଳୁଛି, ସେମାନଙ୍କୁ ହାତରେ ରଖିଲେ ବହୁ ଲାଭ ଅଛି । ଶଳେ ଆସିଛନ୍ତି ଯେତେବେଳେ ଏମିତ ତଡ଼ି ଦେବାଟା କ ଠିକ୍ ହେବ ?'

ବ୍ରଜେଶ୍ୱର ଈଷତ୍ ରୁକ୍ଷକଣ୍ଠରେ କହିଲେ—'ଦିନ କାଳ ବଦଳିବା ସ୍ୱାଭାବିକ । ମୁଁ କିନ୍ତୁ ବଦଳି ନାହିଁ । ବଦଳିବାର ଆକାଂକ୍ଷା ମଧ୍ୟ ନାହିଁ ।'

ମହାପାତ୍ର ଚାଲିଗଲେ ।

ସବୁଠି ମର୍ମରର କସ୍ତୁରି ଉପହାସ । ସବୁଠି ଐଶ୍ୱର୍ଯ୍ୟର ପ୍ରାଣହୀନ ଶୀତଳତା ···ଖୋଲା ଝରକାବାଟେ ଦେଖାଯାଏ ବହୁ ବିଚିତ୍ରିତ ଗୋଲାପର ଉଦ୍ୟାନ । ଶାବକଟା ଯେପରି ପ୍ରାଣହୀନ ମାର୍ବଲରେ ଖୋଳା ଗୋଟିଏ ଭୁବନମୋହିନୀ ରୂପସୀର ପ୍ରତିମୂର୍ତ୍ତି । ତାକୁ ଅନୁଭବ କରି ହୁଏ କିନ୍ତୁ ଉପଭୋଗ କରି ହୁଏନାହିଁ; ତାର ରୂପକୁ କେବଳ ପାନ କରି ହୁଏ, କିନ୍ତୁ ସେଥିରେ ତୃଷା ଶାନ୍ତ ହୁଏ ନାହିଁ । ଏଠି ଧୂଳି ନାହିଁ, ମଳିନତା ନାହିଁ, ବ୍ୟର୍ଥତା ନାହିଁ, ଏଠି ସବୁ ଉଜ୍ଜ୍ୱଳ, ସବୁ ପରିଚ୍ଛନ୍ନ; ଏଠି ଅଛି ଖାଲି ଉଦଗ୍ର କାମନା ଆଉ ତାକୁ ପ୍ରଶମିତ କରିବାପାଇଁ ଅପରିମେୟ କାନ୍ତିବ ଶକ୍ତି !

ବ୍ରଜେଶ୍ୱର ଡାକିଲେ—'କିଏ ଅଛ ?'

ଜଣେ ଭିତରିଆ ଆସି ଠିଆ ହେଲା ଆଦେଶ ଅପେକ୍ଷାରେ । ବ୍ରଜେଶ୍ୱର କହିଲେ—'ହୁଇସ୍କି ଆଉ ସୋଡ଼ା !'

ହୁଇସ୍କି ଓ ସୋଡ଼ା ଆସିଲା । ବ୍ରଜେଶ୍ୱର ଗ୍ଲାସରେ ଗୋଟିଏ ଚୁମୁକ୍ ଦେଇ ଗ୍ଲାସଟା ରଖିଦେଲେ ।

ମହାପାତ୍ର ଆସି କହିଲେ—'ଦାମୋଦର ରାୟଗୁରୁ ଆସିଛନ୍ତି ।'

ବ୍ରଜେଶ୍ୱର ପଚାରିଲେ—'କେଉଁ ଦାମୋଦର ରାୟଗୁରୁ ?'

ମହାପାତ୍ର କହିଲେ—'ରାଣୀଦିହର ସେଇ ଦାମୋଦର ରାୟଗୁରୁ ଯେ ପ୍ରଜା-ଆନ୍ଦୋଳନ ବେଳେ ଉଆସ ଘେରାଉ କରିଥିଲା । ଦେଖା ହୋଇ ପାରିବ ନାହିଁ ବୋଲି ତାଙ୍କୁ ମୁଁ ଫେରାଇ ଦେଉଛି ।'

ବ୍ରଜେଶ୍ୱର କହିଲେ—'ନା, ତାଙ୍କୁ ଏଇଠାକୁ ସିଧା ପଠାଇ ଦିଅ ମହାପାତ୍ରେ ।'

କିଛି ସମୟ ପରେ ଦାମୋଦର ରାୟଗୁରୁ ଆସିଲେ । ଦାମୋଦର ରାୟଗୁରୁ ପ୍ରୌଢ଼ । ବହୁ ଆନ୍ଦୋଳନରେ ବହୁ କାରାବାସ ଓ ପୀଡ଼ନର ସୁସ୍ପଷ୍ଟ ଛାପ ଏବେ ସୁଦ୍ଧା ଚେହେରାରୁ ଲିଭି ନ ଥିଲା । ଦାମୋଦର ଅଣ୍ଟା ଓ ମୁଣ୍ଡ ନୁଆଁଇ ନମସ୍କାର କଲେ ।

ବ୍ରଜେଶ୍ୱର ପଚାରିଲେ—'ପୁଣି କି ନୂଆ ଦାବୀପତ୍ର ନେଇ ଆସିଛନ୍ତି ରାସ୍ବାବୁ ? ମୁଁ ତ ଆପଣଙ୍କର ସବୁ ଦାବୀ କେବେଠୁ ପୂରଣ କରି ସାରିଛି ।'

ରାସ୍ବାବୁ ଅଳ୍ପ ହସି କହିଲେ—'ଆଉ ଦାବୀ ପତ୍ର ? ଏବେ ମହର୍ଗରୁ ଯାଇଁ ତ କାନ୍ତାରରେ ପଡ଼ିବା କଥା ।'

ବ୍ରଜେଶ୍ୱର କହିଲେ—'ସେ ତ ଅତି ସ୍ୱାଭାବିକ । କାରଣ ମହର୍ଗ ନୋହିଲେ କାନ୍ତାର, ସେହି ଦୁଇଟାଇ ଏକମାତ୍ର ସତ୍ୟ । ମନୁଷ୍ୟର ଲଲାଟ ପଟରେ ଭାଗ୍ୟ-ବିଧାତା ତାଛଡ଼ା ତ ଆଉ କିଛି ଲେଖି ନାହାନ୍ତି !'

ରାସ୍ବାବୁ ପଚାରିଲେ—'ମାନେ ?'

ବ୍ରଜେଶ୍ୱର ପାଇପ୍‌ରେ ନିଆଁ ଲଗାଇ କହିଲେ—'ମାନେ ଅତି ସହଜ ରାସ୍ବାବୁ । ଅତ୍ୟାଚାର କରିବା ମନୁଷ୍ୟର ଧର୍ମ । ସୁଯୋଗ ପାଇଲେ ଜଣେ ମନୁଷ୍ୟ ଅନ୍ୟ ଜଣକର ଦୁର୍ବଳତା ଅଥବା ଅସତର୍କତାର ସୁଯୋଗ ନେଇ ଚଲାଉଥିବା ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ମନୁଷ୍ୟ ରାଷ୍ଟ୍ରର ସୃଷ୍ଟି କରିଥିଲା । କିନ୍ତୁ ମନୁଷ୍ୟଠୁ ବଳି ରାଷ୍ଟ୍ର ଯେ ଆହୁରି ଅତ୍ୟାଚାରୀ ହୋଇପାରେ, ସେ ଆଶଙ୍କା ବା କିଏ କରିଥିଲା କହ !'

ରାସ୍ବାବୁ ପଚାରିଲେ—'ତାହେଲେ ଆମେ ରାଜତନ୍ତ୍ରର ଲୋପ କଲୁ କାହିଁକି ?'

ବ୍ରଜେଶ୍ୱର ପାଇପ୍‌ରୁ କଳେ ଧୂଆଁ ଛାଡ଼ି କହିଲେ—'ରାଜତନ୍ତ୍ରରେ ଏକ ଘୋର ତ୍ରୁଟି ରହି ଯାଇଥିଲା ରାସ୍ବାବୁ । ମୁଁ ଅତ୍ୟାଚାର ଓ ପୀଡ଼ନ କରୁଥିଲି ପ୍ରଜାମାନଙ୍କର ମତାମତ ନ ନେଇ, କିନ୍ତୁ ଗଣତନ୍ତ୍ରରେ ତା'ଠୁ ବଳି ଆହୁରି ନିଷ୍ଠୁର ଅତ୍ୟାଚାର ଓ ପୀଡ଼ନ ଚାଲେ, ପ୍ରଜାମାନଙ୍କର ମତାମତ ନେବାର ଅଭିନୟ କରି । ଧରନ୍ତୁ ରାଜତନ୍ତ୍ରର ବ୍ୟବସ୍ଥାରେ ମୁଁ ଆପଣଙ୍କୁ ନ ପଚାରି ଆପଣଙ୍କ ମୁଣ୍ଡଟା ଫଟାଇ ଦେଉଥିଲି, କିନ୍ତୁ ଗଣତନ୍ତ୍ରର ବିଧାନରେ ଆପଣଙ୍କ ମୁଣ୍ଡଟା ଫଟାଇବା ପାଇଁ ପ୍ରଥମେ କିନ୍ତୁ ଆପଣଙ୍କ ସ୍ୱୀକୃତି ନେବା ଆବଶ୍ୟକ !'

ବ୍ରଜେଶ୍ୱର ଅଟ୍ଟହାସ କରି ଉଠିଲେ ।

ରାସ୍ବାବୁ କହିଲେ, 'ମୁଁ ମଧ୍ୟ କ୍ରମେ ଅତ୍ୟାଚାରରେ ବିଶ୍ୱାସ କରୁଛି । କାରଣ ମନୁଷ୍ୟ ଭୟ ଛଡ଼ା ଅନ୍ୟ କୌଣସିଥିରେ ବିଶ୍ୱାସ କରେନାହିଁ । ଭୟର ଭିତ୍ତି ଉପରେ ଗଢ଼ା ମନୁଷ୍ୟର ସମାଜ, ସଭ୍ୟତା, ସଂସ୍କୃତି, ଜ୍ଞାନ, ବିଜ୍ଞାନ ଓ ଧର୍ମ ! ଅତ୍ୟାଚାରର ଭୟ ଥିବା ପର୍ଯ୍ୟନ୍ତ ମନୁଷ୍ୟର ସମାଜଜୀବନ ନିରାପଦ ହୋଇ ରହିଥିବ । ଅତ୍ୟାଚାରର ଆଶଙ୍କା ନ ଥିଲେ ମନୁଷ୍ୟ ଆଉ ସମାଜର ବନ୍ଧନ ଭିତରେ ବନ୍ଦୀ ହୋଇ ରହିବ ବା କାହିଁକି ?'

ବ୍ରଜେଶ୍ୱର କକ୍ଷାନ୍ତରକୁ ଚାଲିଗଲେ ! ଏ ସବୁ ନିରର୍ଥକ ଆଲୋଚନା ପାଇଁ ତାଙ୍କର ସମୟ ନ ଥିଲା !

( ଛଅ )

ସନ୍ଧ୍ୟା—

ବ୍ରଜେଶ୍ୱର ପ୍ରମୋଦକକ୍ଷର ବାତାୟନ ପାଖରେ ଠିଆ ହୋଇଥିଲେ ବାହାରରେ ଜ୍ୟୋତ୍ସ୍ନା-ପୁଲକିତ ଉଦ୍ୟାନ ଆଡ଼େ ଦୃଷ୍ଟି । ଅଦୂରର ଇଉକାଲିପଟାସ୍ ଆଉ ଝାଉଁଗଛ ଉହାଡ଼ରୁ ଶୁକ୍ଳା ଅଷ୍ଟମୀ ତିଥିର ଚନ୍ଦ୍ରୋଦୟ ହେଉଥିଲା, ରୂପକଥାରେ ରାଜକୁମାରୀର ମଦବିହ୍ୱଳ ଆଖିରେ କେଉଁ ଅଜଣାଦେଶ ରାଜକୁମାରର ସ୍ୱପ୍ନ ପରି । ବ୍ରଜେଶ୍ୱରଙ୍କ ହାତରେ ହୁଇସ୍କିର ଗ୍ଲାସ ନିଃଶେଷ ହୋଇ ସାରିଥିଲା । ବ୍ରଜେଶ୍ୱର ବାତାୟନ ପାଖରୁ ଫେରି ଆସି ଖଣ୍ଡେ ସୋଫା ଉପରେ ବସି ପଡ଼ିଲେ । ବିଭିନ୍ନ ସମୟରେ ଶିକାର ହୋଇଥିବା କେତେଟା ବାଘମୁଣ୍ଡ ଟାକ୍ସୀଡର୍ମି ହୋଇ କାନ୍ଥରେ ଝୁଲୁଥିଲା—ବିସ୍ଫାରିତାସ୍ୟ, ବିକଟ, ଶାଭଗ୍ର ଲେଲିହାନ ଜିହ୍ୱାରେ ମହାକାଳର ସର୍ବଗ୍ରାସୀ କ୍ଷୁଧା ଯେପରି ଲହଲହ ହେଉଥିଲା । ମରି ସୁଦ୍ଧା ସେ କ୍ଷୁଧାର ନିବୃତ୍ତି ନ ଥିଲା । ସବୁଆଡ଼େ କିପରି ଏକ ପୈଶାଚିକ ନୀରବତା । ଭିତରେ ଇଲେକ୍ଟ୍ରିକ୍ ଆଲୁଅ ଗୁଡ଼ା ଜଳୁଥିଲା ନିଷ୍ପନ୍ଦ ହୋଇ ।

ବ୍ରଜେଶ୍ୱର ପାଖରେ ଗୋଟିଏ କଲିଂବେଲ୍‌ର ଇଲେକ୍ଟ୍ରିକ୍ ସୁଇଚ ଟିପିଲେ । କିଛିକ୍ଷଣ ପରେ ଭିତରକୁ ଆସିଲେ ନୀଳାମ୍ବର ମହାପାତ୍ର । ବ୍ରଜେଶ୍ୱର ପାଇପ୍‌ରେ ନିଆଁ ଲଗାଇ କହିଲେ—'ସନ୍ଧ୍ୟାଟା ଚମତ୍କାର ହୋଇଛି । "

ମହାପାତ୍ର କହିଲେ—'ହଜୁର !'

ବ୍ରଜେଶ୍ୱର ପାଇପ୍‌ରୁ କିଛି ଧୂଆଁ ଛାଡ଼ି କହିଲେ—'କିନ୍ତୁ ମହାପାତ୍ର, ସୌନ୍ଦର୍ଯ୍ୟ ଏକାଏକା କେବେ ଉପଭୋଗ କରି ହୁଏନା । ତା'ର କିଛି ବନ୍ଦୋବସ୍ତ କରିଛ ? ମାନେ କୌଣସି ଅକ୍ଷତ-ଯୌବନା, ଅନାଘ୍ରାତା··· ।'

ମହାପାତ୍ର ଅପରାଧୀ ପରି କହିଲେ—'ଆଜି କାଲିତ ଆଉ ସେ ଦିନ ନାହିଁ, ଯାହାକୁ ଇଚ୍ଛା କଲେ ସେଦିନ ଧରି ଆଣି ପାରୁଥିଲୁ, ଏବେ ନାନା ଅସୁବିଧା ।'

ବ୍ରଜେଶ୍ୱର କହିଲେ—'କି ଅସୁବିଧା ? ଆଗେ ଶାସନର ଦଣ୍ଡ ଥିଲା, ଭୟ ଦେଖାଇ ଅଧିକାର କରିବାର ଶକ୍ତି ଥିଲା, ଏବେ ଅର୍ଥ ଦେଇ ଅଧିକାର କରିବାର ସମ୍ବଳ ତ ଅଛି ! ଅର୍ଥର କିଛି ଅସାଧ୍ୟ ଥାଇପାରେ ବୋଲି ଏ ପର୍ଯ୍ୟନ୍ତ ମୋର ବିଶ୍ୱାସ ନ ଥିଲା ।'

ବ୍ରଜେଶ୍ୱର ଗ୍ଲାସ୍‌ରେ ଆଉଥରେ ହ୍ୱଇସ୍କି ଢାଳି ଦେଇ ଚୁମୁକ୍ ନୀରବରେ ପିଇଲେ । ତା'ପରେ ନିଃଶେଷପ୍ରାପ୍ତ ଗ୍ଲାସ୍‌ଟା ଆଖି ଆଗରେ କେତେ ସେକେଣ୍ଡ ପର୍ଯ୍ୟନ୍ତ ଉଠାଇ, ତା ଭିତରେ କଣ ନିରୀକ୍ଷଣ କରିବା ପରି କଣ୍ଠରେ କହିଲେ—'ମୁଁ ଶୁଣିଛି ମହାପାତ୍ର, ତମ ନିଜ ଘରେ ସେପରି ଦୁର୍ଲ୍ଲଭ ରତ୍ନ ରହିଛି, ସେଥିପାଇଁ, ତେଣୁ ତମକୁ ହୁଏତ ଅନ୍ୟତ୍ର ଅନ୍ୱେଷଣ କରିବାକୁ ପଡ଼ି ନପାରେ !'

ନୀଳାମ୍ବରଙ୍କର ଦୁଇ ଆଖି ନିଆଁ ରଡ଼ ପରି ଦପ୍ ଦପ୍ ହୋଇ ଉଠିଲା । ମୁହଁର ଭଙ୍ଗୀ ତାଙ୍କର କଠୋର ହୋଇଗଲା । ସେ ରୁଷ୍ଟ କଣ୍ଠରେ କହିଲେ— 'ମହାରାଜାଙ୍କର ଅନ୍ନ ଖାଇଛୁ, କିନ୍ତୁ ନିଜର ବିବେକ ତ ଖାଇନାହିଁ । କୌଣସି ପିତା ଆଗରେ ତା'ର କନ୍ୟା ସମ୍ପର୍କରେ ଏ ପ୍ରକାର କୁତ୍ସିତ ପ୍ରସ୍ତାବ କେହି କରିପାରେ, ଏପର୍ଯ୍ୟନ୍ତ ମୋର ବିଶ୍ୱାସ ନଥିଲା ।'

ନୀଳାମ୍ବର ଯିବା ପାଇଁ ଉଦ୍ୟତ ହେଉଥିଲେ; ବ୍ରଜେଶ୍ୱର ଡାକିଲେ—'ଶୁଣ ମହାପାତ୍ର ।'

ନୀଳାମ୍ବର ମନ୍ତ୍ର-ମୁଗ୍ଧ ପରି ରହିଗଲେ ବ୍ରଜେଶ୍ୱରଙ୍କର ଆଦେଶରେ । ବ୍ରଜେଶ୍ୱର କେତୋଟି ମୁହୂର୍ତ୍ତ କକ୍ଷ ଭିତରେ ନୀରବରେ ପାଦଚାରଣା କରି କହିଲେ —'ନିଜର ବିବେକର ମର୍ଯ୍ୟାଦା ରଖି କେହି ସାମନ୍ତବାଦର ଅନ୍ନ କେବେ ହଜମ କରି ପାରିନାହିଁ, ସେ କଥା ତମେ ଭଲ ଜାଣିଛ ମହାପାତ୍ର । ତୁମେ କେତେ ଶହ ବାର କେତେ ପିତାଙ୍କୁ ମୋ ଲାଗି କନ୍ୟାର ଅନୁରୋଧ କରିଛ ବା ଆଦେଶ ଦେଇଛ, ତାର କି ହିସାବ ରଖିଛ କେବେ ?'

ନୀଳାମ୍ବର କହିଲେ—'ମୋତେ ମାଫ୍ କରନ୍ତୁ ହଜୁର !'

ବ୍ରଜେଶ୍ୱର ଲେଡ଼ାଏ ଚାବି ନୀଳାମ୍ବରଙ୍କ ଆଡ଼େ ଫିଙ୍ଗି ଗୋଟାଏ ଲୁହା ସେଫ୍ ଦେଖାଇ କହିଲେ—'ଖୋଲ ସେ ସେଫ୍‌ଟା ' ।

ନୀଳାମ୍ବର ଯନ୍ତ୍ରଚାଳିତ ପରି ଲୁହାର ସେ ସେଫ୍‌ଟା ଖୋଲିଲେ । ତା' ଭିତରେ ରାଶି ରାଶି ବହୁ ମହାର୍ଘ ଅଳଙ୍କାର । ଅଳଙ୍କାରର ଦୀପ୍ତିରେ ନୀଳାମ୍ବରଙ୍କର ଦୁଇ କ୍ଷୁଧିତ ଆଖି ଉଜ୍ଜ୍ୱଳ ହୋଇ ଉଠିଲା ।

ବ୍ରଜେଶ୍ୱର କହିଲେ—'ରାଜମାତା ଏ ସବୁ ଅଳଙ୍କାର ରଖି ଯାଇଥିଲେ ଏହି ରାଜ-ବଂଶର ଭାବୀ ବଧୂଙ୍କ ପାଇଁ । କିନ୍ତୁ ତମେ ଜାଣ ମହାପାତ୍ର, ଅନାୟାସରେ ପାଇବା ଠାରୁ ବଳତ୍କାରରେ ଅଧିକାର କରିବାରେ ମୁଁ ଅଧିକ ବିଶ୍ୱାସ କରେ । କାରଣ ଅନାୟାସରେ ଯାହା ମିଳିଥାଏ ତାହା ଅନ୍ୟର ଦାନ ମାତ୍ର । ତେଣୁ କୌଣସି ଦିନ କୌଣସି ରାଜବଧୂ ଏ ଅଳଙ୍କାର ପିନ୍ଧି ନାହାନ୍ତି, ସେ ବିଷୟରେ ତମେ ନିଶ୍ଚିନ୍ତ ଥାଅ ମହାପାତ୍ର । ଇଚ୍ଛା କଲେ ତମର କନ୍ୟା ଏସବୁ ମଧ୍ୟ ପାଇ ପାରନ୍ତି ।'

ନୀଳାମ୍ବର ସମ୍ମୋହିତ ପରି ଗୃହି ରହିଲେ ବ୍ରଜେଶ୍ବରଙ୍କ ଆଡେ । ବ୍ରଜେଶ୍ବର କହିଲେ—'ମୁଁ କଳୁ ନିଜ ହାତରେ ସଜାଇ ଦେବ ତାଙ୍କୁ ମୋର ମନୋମତ କରି ।'

ନୀଳାମ୍ବର ଖଣ୍ଡେ କାଉଚ ଉପରେ ବସି ପଡ଼ିଲେ ।

ବ୍ରଜେଶ୍ବର କହିଲେ—'ମୁଁ ଅପେକ୍ଷା କରିଛି; ଶୀଘ୍ର ଆସ ତମେ ।'

## ( ଚାରି )

ରାତ୍ରି ଗମ୍ଭୀର ହୋଇଛି ।

ବାହାରେ ଶୁକ୍ଳାଷ୍ଟମୀର ଚନ୍ଦ୍ର ଅସ୍ତମୁଖୀ । ପ୍ରାସାଦ ବାହାରେ ଉଦ୍ୟାନ ଏକ ତରଳ ଅନ୍ଧକାରରେ ଧୀରେ ଧୀରେ ନିମଜ୍ଜିତ ହୋଇ ଆସୁଛି ।

ବ୍ରଜେଶ୍ବର ଗୋଟିଏ ହୁଇସ୍କି ବୋତଲରୁ ଶେଷ କେତେ ପେଗ୍ ହୁଇସ୍କି ଗ୍ଲାସରେ ଢାଳି କହିଲେ—'ସୁନ୍ଦରୀ ! ନାଁଟା ଚମତ୍କାର । ସେଥିରେ ଭୂମିକା ନାହିଁ, ଆଡ଼ମ୍ବର ନାହିଁ, ସରଳ, ସହଜ । ଯଥାର୍ଥରେ ତମେ ସୁନ୍ଦରୀ ।'

ସୁନ୍ଦରୀ—ନୀଳାମ୍ବରଙ୍କର କନ୍ୟା । ବ୍ରଜେଶ୍ବର ଠିକ୍ ଶୁଣିଥିଲେ ସୁନ୍ଦରୀ ନିରୁପମା ।

ସୁନ୍ଦରୀ ନୀରବରେ ଅଧୋମୁଖୀ ହୋଇ ଠିଆ ହୋଇଥିଲା ବ୍ୟାଧର ପାଶବଦ୍ଧା ତ୍ରସ୍ତା ହରିଣୀ ପରି । ବ୍ରଜେଶ୍ବରଙ୍କର ମାତାଲ ଚେହେରା ଆଡ଼େ ଗୃହି ଦେଖିବା ପାଇଁ ତା'ର ସାହସ ନଥିଲା ।

ବ୍ରଜେଶ୍ବର କହିଲେ—'ପାଖକୁ ଆସ ସୁନ୍ଦରୀ, ଠିଆ ହୋଇ ରହିଲ କାହିଁକି ?'

ସୁନ୍ଦରୀ ଭୟଜଡ଼ିତ ପାଦରେ ଧୀରେ ଧୀରେ ଆସି ଠିଆ ହେଲା ବ୍ରଜେଶ୍ବରଙ୍କ ପାଖରେ, ଅଦୂରରେ ।

ବ୍ରଜେଶ୍ବର ସୁନ୍ଦରୀର କପାଳ ଉପରୁ ଅବଗୁଣ୍ଠନ ଦୁଇ ହାତରେ ଖସାଇ ଦେଇ ତା'ର ଚିବୁକ ଗୋଟିଏ ହାତରେ ଟେକି ଧରିଲେ । ସୁନ୍ଦରୀର ଜବାଧାର ତଳେ କଳା ତିଳ ଚିହ୍ନ । ବ୍ରଜେଶ୍ବର କହିଲେ—'ସୁନ୍ଦର, କୁଳବଧୂର ଗୋପନ ଅଭିସାର ପରି ତମର ଚିବୁକରେ ଏ ତିଳବିନ୍ଦୁଟି ସୁନ୍ଦର !'

ବ୍ରଜେଶ୍ବର ସୁନ୍ଦରୀକୁ ଦୁଇ ହାତରେ ବିବସନା କରିଦେଲେ ।

ଜ୍ୟୋତ୍ସ୍ନାଚର୍ଚ୍ଚିତା ସଦ୍ୟ ପରି, ଅବଗୁଣ୍ଠିତା, ବ୍ରୀଡ଼ାକୁଣ୍ଠିତା ସୁନ୍ଦରୀ ।

ଦୁଇ ବକ୍ଷୋଜର ଆବରଣ ସୁଦ୍ଧା ରହିଲା ନାହିଁ ।

ମାର୍ବଲରେ ଯେପରି ସୁନନ୍ଦାର ଦୁଇ ଜାନୁକୁ କେଉଁ ନିପୁଣ ଶିଳ୍ପୀ ବହୁ ଅଧ୍ୟବସାୟ ଦେଇ ଗଢ଼ିଛି ।

ବ୍ରଜେଶ୍ବର କହିଲେ—'ଚମତ୍କାର ସିମେଟ୍ରୀ !'

ସୁନନ୍ଦା ଲଜ୍ଜାରେ ଦୁଇ ହାତର ଅଞ୍ଜଳି ଭିତରେ ମୁହଁ ଢାଙ୍କିଦେଲା ।

ବ୍ରଜେଶ୍ବର ନିଜ ହାତରେ ସୁନନ୍ଦାର ସବୁ ଆଭରଣ ଘୁଞ୍ଚାଇ ଦେଲେ ।

ଆତ୍ମରକ୍ଷା କରୁ କରୁ ଅକସ୍ମାତ୍ ସୁନନ୍ଦାର ହାତବାଜି ଓଠର ତିଳବିନ୍ଦୁ ଗୋଟିଏ କଳା ଗାର ପରି ଚିବୁକରେ ଟାଣି ହୋଇଗଲା ।

ସୁନନ୍ଦା କଜ୍ଜଳରେ ଆଙ୍କିଥିଲା ତିଳ ବିନ୍ଦୁ, ନିଜର ଚିବୁକକୁ ଆହୁରି ଲୋଭନୀୟ କରିବା ପାଇଁ ।

ବ୍ରଜେଶ୍ବର କହିଲେ—କିନ୍ତୁ ତମର ତିଳ ବିନ୍ଦୁ ନିଭିଗଲା ଯେ ! ଗୋଲାପକୁ ରଙ୍ଗର ତୁଳୀରେ ପୁଣି ଅଙ୍କିବାର ବା କି ପ୍ରୟୋଜନ ଥିଲା ?'

ସୁନନ୍ଦା, ଲଜ୍ଜାରେ, ଭୟରେ, ଅପମାନରେ ମୁହଁକୁ ଦୁଇ ହାତରେ ଢାଙ୍କି ଖଣ୍ଡେ ସୋଫା ଉପରେ ବସି ପଡ଼ିଲା, ଶିଳ୍ପୀର କ୍ଳାନ୍ତ ମଡେଲ ପରି ।

ବ୍ରଜେଶ୍ବର ଦୁଇ ବାହୁ ଗ୍ରୀବା ଉପରେ ଛନ୍ଦି କକ୍ଷ ଭିତରେ ପାଦଚାରଣା କଲେ ।

ତା' ପରେ ସୁନନ୍ଦାଠାରୁ ଅଦୂରରେ ଠିଆ ହୋଇ ପଚାରିଲେ—'କହି ପାରିବ ସୁନନ୍ଦା, କେଉଁଟା ସୁନ୍ଦର, ପୁରୁଷର କାମଦଗ୍ଧ ଆଖି ନା ନାରୀର ଏ ନଗ୍ନ ଦେହ ?'

ସୁନନ୍ଦା ନିର୍ବୋଧ ପରି ଚାହିଁଥିଲା ବ୍ରଜେଶ୍ବରଙ୍କ ଆଡ଼େ ।

ବ୍ରଜେଶ୍ବର ନିଜ ହାତରେ ସେଇ ଲୁହା ସେଫ୍‌ଟା ଖୋଲି ଦେଇ କହିଲେ—'ଏସବୁ ତମର ସୁନନ୍ଦା, ଯେଉଁଟା ଇଚ୍ଛା, ଯେତେ ଇଚ୍ଛା ସବୁ ନେଇଯାଅ; ତୁମର ମୂଲ୍ୟ । ମୁଁ ଯାଉଛି । ଭିତରୁ ଏବେ କବାଟ ବନ୍ଦ କରି ଦେଇ ପାର !'

ବ୍ରଜେଶ୍ବର କକ୍ଷାନ୍ତରକୁ ଚାଲିଗଲେ । ବିବସନା ସୁନନ୍ଦା ବାକ୍‌ହୀନା ପରି ଚାହିଁ ରହିଥିଲା ସେଇଆଡ଼େ । ଦୂରରେ ବ୍ରଜେଶ୍ବରଙ୍କର ପାଦଶବ୍ଦ ମିଳାଇ ଯାଉଥିଲା ମୂର୍ଚ୍ଛିତ ରାତ୍ରିର ନୀରବତା ଭିତରେ ।

[ ୧୯୬୪ ]



# ଘନଆଁର ଗଣେଶଚତୁର୍ଥୀ

କଳସ୍ୱପତରିଆ ବାଘ ଦେହରେ ପଟା ପଟା କଳାଗାର ପରି, ଆକାଶରେ ଖଣ୍ଡଖଣ୍ଡ ଛିଣ୍ଡା ବଉଦର ପାଉଁଶିଆ ଗାର ଟାଣି ହୋଇଗଲାଣି । ଆଉଟିକକୁ ଜଏ ଯେମିତି ସେଥିରେ ଆଉଟା ସୁନାର ଫିକା ହଳଦୀ ରଙ୍ଗ ବୋଳି ଦେଇଯିବ । ବାଉଁଶସାହି ମୁଣ୍ଡରେ ସବୁଦିନେ ସକାଳ ହୁଏ ପ୍ରାୟ ଏଇ ଢଙ୍ଗରେ । ଯେତେ ଦେଖିଲେ ବି ଘନଆଁକୁ ସବୁଦିନ ଏ ଦୃଶ୍ୟ ଲାଗେ ନୂଆ ପରି । ପନ୍ଦରବର୍ଷର ବାପ ମା ଛେଉଣ୍ଡ ଘନଆଁ । ତିନିକୋଡ଼ି ବର୍ଷର ବୁଢ଼ୀମା ଛଡ଼ା ସଂସାରରେ ଘନଆଁର ଆଉ କେହି ନାହିଁ । ଛଦସ୍ତା ବର୍ଷ ଘନଆଁ ବାପ ବରଜୁ ମଲିକ ଦିନେ ସଞ୍ଜବେଳେ ପାଟପୁର ଗହ୍ୱରରେ ଆସୁଥିଲାବେଳେ କୋଳଥିଆ ନାଗ କାମୁଡ଼ାରେ ମରିଥିଲା । ତା' ଆଗରୁ ଘନଆଁ ବୋଉ ମରିଥିଲା ଝାଡ଼ା-ବାନ୍ତିରେ । ସଂସାରରେ ଅହା ବୋଲି କହିବାକୁ କେବଳ ଆଈବୁଢ଼ୀଟିଏ—ଘନଆଁ ମା ବୁଢ଼ୀ !

ଘନଆଁ ଭିଡ଼ିମୋଡ଼ି ହୋଇ ହାଇ ମାରିମାରି ଚୁଲୀ ପିଣ୍ଡାରେ ଆସି ବସିଲା । ଗୁହାଳରେ ଛେଳିମାନେ ବାହାରକୁ ବାହାରିବା ପାଇଁ ବୋବାଳି ଛାଡ଼ିଲେଣି । ଘରଭିତରୁ ଘନଆଁ ମା ବୁଢ଼ୀର ଖୁଁ ଖୁଁ କାଶ ଶୁଭୁଛି । ରାତି ପାହାନ୍ତାରୁ ବୁଢ଼ୀର କାଶ ଆରମ୍ଭ ହୁଏ, ଖରା ନ ପଡ଼ିବା ପର୍ଯ୍ୟନ୍ତ ବୁଢ଼ୀ କତର ଛାଡ଼ି ଉଠିପାରେ ନାହିଁ । ହେଇ ରେ ! ପାଉଁଶିଆ ବଉଦର ପଟା ପଟା ଗାର ଗଲା କୁଆଡ଼େ ? ଆକାଶଯାକ ଜଏ ଯେମିତି ସୁନାର ମାଛକାତି ବିଞ୍ଚି ଦେଇଗଲାଣି । ବୁଲର ଏ ପର୍ଯ୍ୟନ୍ତ ଉଦ୍ଭମ ପହଡ଼ ଭାଙ୍ଗିନାହିଁ । ହାଡ଼ପଞ୍ଜରାମାଳ ଲୁମଛଡ଼ା ଦେହକୁ ବଙ୍କାଇ ଆଉ କଡ଼େ ଶୋଇବା ପାଇଁ ତା'ର ଉଦ୍ୟମ ଚାଲିଛି । ଅଧାକଟା ଲାଙ୍ଗୁଡ଼ଟା ବେଳେବେଳେ ନାଚି ଉଠୁଚି, ମାଛିପଲ ତଡ଼ିବା ପାଇଁ ।

ଘନଆଁ ଡାକିଲା—'ବୁଲ ବେ ବୁଲ !'

ବୁଲ ମିଞ୍ଜି ମିଞ୍ଜି ଆଖିରେ ଥରେ ଚାହିଁଲା ଘନଆଁ ଆଡ଼େ, ତା'ପରେ ପୁଣି ଆଖି ବୁଜି ଦେଲା । ସେ'ତ ଆଉ କାଉ, ବଣିଙ୍କ ପରି ପେଟ କାଙ୍ଗାଳିଆ ହୋଇନାହିଁ ଯେ, ଭଲ କରି ସକାଳ ନ ହଉଣୁ କେଁ କାଁ ହୋଇ ଅଧାର ପାଇଁ ଛୁଟି ବୁଲିବ ! ଦିନ ଘଡ଼ିଏ ହେଲେ ଘନଆଁ ମା, ପହିଁରି ବୁଲାଇ ଦାଣ୍ଡ ଝରକଲା ବେଳେ, ଦି ପାହାର ପହିଁରି ମାଡ଼ ନ ଦେଲେ ତା'ର ନିଦ ନ ଭାଙ୍ଗେ ! ତା'ପରେ ଭିଡ଼ି ମୋଡ଼ି ହୋଇ ଧୀରେ ପୁଚ୍ଛେ ବୁଲ ଉଠିବ । ଲାଙ୍ଗୁଡ଼ଟା ହଲାଇ ହଲାଇ ତା'ପରେ ବାହାରିଯିବ.

ଟାଁ ପରିକ୍ରମାରେ । ସାଇ ସାଇ, ଘର ଘର, ଓଳି ଓଳି, ନଳା ନଳା ସେ ବୁଲିବ ପେଜ ମୁନ୍ଦାଏ କି ଅଇଁଠା ପତର ଖଣ୍ଡେ ପାଇଁ । କିଏ ପାହାରେ ପକାଇବ, ତ କିଏ ଢେଲାଟାଏ ଫିଙ୍ଗିବ । ସେସବୁ ବୁଲିର ଦେହସହା ହୋଇଗଲାଣି । ମାଡ଼ଟା ଖୁବ୍ ଜୋରରେ ବାଜିଲେ ସେ କାଉଁ କାଉଁ ହୋଇ ପଳାଏ । ନୋହିଲେ ମିଟି ମିଟି ଆଖିରେ ଅନାଇ ଧୀରେ ଧୀରେ ଚାଲିଯାଏ । ମଣିଷର ଭାଷାରେ ସେ ଚାହାଣୀର ଅର୍ଥ ହେଉଛି···ଇଚ୍ଛା ହେଉଛି ତ ଆହୁରି ମାର ଦ'ଟା; କିନ୍ତୁ ମାରିଲା ଲୋକ ବଡ଼ ନୁହେଁ, ସହିଲା ଲୋକ ବଡ଼ ! ମାହାନ୍ତି ସାଇରେ କାହା ନଳାମୁହଁରେ ଥରେ ବୁଲି ପେଜ ତୋରାଣି ହାଣ୍ଡିରେ ମୁହଁ ପୂରାଇ ଥିଲା । କିଏ ଗରମ ପେଜ ତା ଉପରକୁ ଛାଟିଥିଲା ଯେ ଦେହର ଫାଳେ ପୋଡ଼ି ଚାଲି ଉଠି ଯାଇଥିଲା । ତଥାପି ବୁଲି ମରି-ନାହିଁ । ବୁଲି ବଞ୍ଚିଛି । କିନ୍ତୁ ଫାଳେ ଦେହରେ ଲୋମ ନାହିଁ । ଗାଁ ଦାଣ୍ଡର ଲଙ୍ଗଳା ପିଲାଙ୍କ ସାଙ୍ଗରେ ବୁଲିର ବେଶ୍ ପଟେ । ତା ବେକରେ ଦଉଡ଼ି ବାନ୍ଧି ସେମାନେ ଟାଣନ୍ତି, ଉପରେ ଚଢ଼ନ୍ତି, ବେଳେ ବେଳେ ମୁଢ଼ି ଗଣ୍ଡାଏ କି ଚକୁଳି ଖଣ୍ଡେ ଫିଙ୍ଗି ଦିଅନ୍ତି । ବୁଲିର ସେ ସବୁ ସ୍ୱୋପାର୍ଜିତ ବ୍ୟାପାର । ପ୍ରାୟ ଦଶବର୍ଷ ତଳେ, ଘନିଆ କଳା ମୁଚ୍ ମୁଚ୍ ବୁଲି-କୁକୁର ଛୁଆଟିଏ କୁଆଡ଼ୁ ଆଣିଥିଲା, ବେକରେ ଖଣ୍ଡେ କନାଧଡ଼ି ବାନ୍ଧି । ସେଇଥିପାଇଁ ଘନିଆ ବୋଉ ତା ନାଁ ରଖିଥିଲା ବୁଲି । ସେଇଦିନୁ ଘନିଆ ଘରେ ସେ ରହି ଆସିଛି ଘରର ଜଣେ ହୋଇ । ଘନିଆ ମା ବୁଢ଼ୀର ପହଁରି ମାଡ଼ ଛଡ଼ା, ତା ଭାଗ୍ୟରେ ଏଠି ଅବଶ୍ୟ ଆଉ କିଛି ମିଳନାହିଁ । ତଥାପି ସତ ହେଲେ, ଘନିଆ ମା ଦାଣ୍ଡରେ ବିଲେଇଟା ଦଉଡ଼ି ଗଲେ ସୁଦ୍ଧା ବୁଲି ବୀରବିକ୍ରମରେ କୁଦି, ଭୁକି ସାଇ କମ୍ପାଇ ଦିଏ । ଘନିଆ ଘରେ ଆଉ କିଛି ନ ଥାଉ ଖୁଦ ମୁଠାଏ ତ ଅଛି ! କାଳେ ଯଦି ସେତକ କିଏ ଗଣ୍ଠି କାଟିନେଲା ! ମଣିଷକୁ କୋଉ ବିଶ୍ୱାସ ଅଛି ? କିନ୍ତୁ ବିଲେଇ ଯଦି ଗର୍ଜି ଫୁଲି ବୁଲି ଆଡ଼େ ଦୃଷ୍ଟି କି ଆସେ, ତାହେଲେ ବାଡ଼ କନ୍ଧରେ ଆଶ୍ରୟ ଖୋଜିବା ଛଡ଼ା ବୁଲିର ଅନ୍ୟ ଉପାୟ ନ ଥାଏ !

ଘନିଆ ଦେହରେ ପିନ୍ଧାକାନିଟା ବୁଲାଇ ନେଲା । ସକାଳ ପବନରେ ଦେହ ଶୀତେଇ ଉଠୁଛି । କାଉଟାଏ କୁଆଡ଼ୁ ଆସି ସଜନାଗଛ ଡାଳରେ ଦୁଇଥର ରାବି ଦେଇ ଉଡ଼ିଗଲା । ବାଉଁଶ ସାହି ମୁଣ୍ଡରେ ଶିଶୁକଣ୍ଠର କଳରୋଳ ଶୁଭୁଛି । ଘନିଆ ସେଇ ଆଡ଼େ ଚାହିଁଲା । ଏତେ ସକାଳୁ ପିଲା କଣ୍ଠର ପାଟି ଶୁଭୁଛି କାହିଁକି ? କିଛି ସମୟ ପରେ ଦଳେ ପିଲା ହାତରେ ଲଗୀ ଆଉ ଚାଙ୍ଗୁଡ଼ା ଧରି ହସ ଖୁସିରେ ବାଉଁଶ-ସାଇ ଦାଣ୍ଡ କୁରୁଳେଇ ଚାଲିଗଲେ । ଗାଁ ପିଲା ସମସ୍ତେ । ଘନିଆ ପଚାରିଲା···

'ଏତେ ସକାଳୁ କୁଆଡ଼େ ବାହାରିଛରେ ପିଲେ ?'

ଜଣେ କହିଲା—'ଆଜି ପରା ଗଣେଶ ଚଉଠି । ଆମେ ଯାଉଚୁ ଫୁଲ ପାଇଁ । ତମ ସାଇରେ ଫୁଲ ଅଛି ?'

ଘନଆଁର ଉତ୍ତର ପାଇଁ ଅପେକ୍ଷା ନ କରି ପିଲାମାନେ ଚାଲିଗଲେ !

ଦାଣ୍ଡ ସାମନା ପିଟ୍ଟୁବାଡ଼ ଦେହରେ ଦୁଇଟା ଶିଙ୍ଗଡ଼ାହାର ଗଛ । ରାତିରୁ ଟୋକେଇ ଟୋକେଇ ଶିଙ୍ଗଡ଼ାହାର ଫୁଲ ବାଡ଼ କଡ଼ରେ ଝରି ପଡ଼ିଛି । ଶିଶିରଧୁଆ ଶିଙ୍ଗଡ଼ାହାରର ଝାଞ୍ଜୁ ଗନ୍ଧରେ ସକାଳର ପବନ ସ୍ନିଗ୍ଧ ମଧୁର ହୋଇ ଉଠିଛି । ଏ ଫୁଲଗୁଡ଼ା ପୂଜାରେ ଲାଗେ ନାହିଁ···କେହି ଶ୍ରଦ୍ଧାରେ ଏ ଫୁଲ ତୋଳେ ନାହିଁ··· ଅଯୁମାରି ଅଲୋଡ଼ା ଜୀବନ ରାତି ଫୁଟେ, ପୁଣି ଝରିଯାଏ । ଘନଆଁ ତଳୁ ଅଞ୍ଜୁଳାଏ ଫୁଲ ସାଉଣ୍ଟି ନାକ ପାଖରେ ଉଠାଇ ଧରିଲା ।

ତେରଚ୍ଛା ଖରାରେ ଦାଣ୍ଡ ଅଗଣା ଭରି ଗଲାଣି । ଘୁହାଳ ଭିତରେ ଛେଳିଗୁଡ଼ା ବାହାରକୁ ବାହାରିବା ପାଇଁ କାନଫଟା ବୋବାଳି ଆରମ୍ଭ କରି ଦେଲେଣି । ଘନଆଁ ଘୁହାଳ କବାଟ ଫିଟାଇ ଛେଳିଗୁଡ଼ାଙ୍କୁ ପଦାକୁ ତଡ଼ି ଦେଲା । ଘନଆଁ ମା ବୁଢ଼ୀ ଭିତର ଦୁଆର ଓଳାଉଛି । ଆଉ ଟିକକ ପରେ ଆସିବ ଦାଣ୍ଡ ଦୁଆର ଓଳାଇବା ପାଇଁ । ବେଳେ ବେଳେ ଅଚ୍ଛିଣ୍ଡା ଜହ୍ନିରଆ କାଶରେ ବୁଢ଼ୀ ମାଟିରେ ବସି ପଡ଼ୁଛି ।

ଘନଆଁ ଘର ଦାଣ୍ଡରେ ଦଳେ ବାଉରି ଟୋକା କାଳୀପୋଖରୀ ଆଡ଼େ ଯାଉଥିଲେ, ଘନଆଁକୁ ଦେଖି କହିଲେ···

'ଘନଆଁ' ମହନାପୁର ମୂଲ ଲାଗି ଯିବୁ ପରା ? ପଧାନଘର ମୂଲଦୁଆ ପଡ଼ୁଛି । ଆଉ ଯିବୁ କେତେବେଳେ ?—ଆ ଗାଧୋଇ ପଡ଼ି ବାହାରିଯିବା । ଅବକା ଦ'କୋଶ ବାଟ ଯିବାପାଇଁ ପଡ଼ିବ !' ମେଘ ବୁନ୍ଦାଏ ହେଲେ ଦେଖାନାହିଁ । ବିଲବାଡ଼ି ସବୁ ଫାଟି ଆଁ କରିଛି । ଗାଈ ଗୋରୁ ଶୁଖିଲା ମାଟି ଶୁଙ୍ଘି ବୁଲୁଛନ୍ତି । ବିଲରେ ଫସଲ ସବୁ ଶୁଖି ଜଳି ଗଲାଣି । ଗାଁ ମୂଲିଆଙ୍କ ହାତରେ କିଛି କାମ ନାହିଁ । ମୂଲ ମିଳିଲେ ଦୁଇକୋଶ, ତିନକୋଶ ଦୂରର ଗାଁମାନଙ୍କୁ ବାଡ଼ିଆ ପିଟା ହୋଇ ଧାଉଁଛନ୍ତି ।

ବାଉରିସାଇର କେତେଜଣ ଦିନମୂଲିଆ, କାଳି ପୋଖରୀର ଦଳୁଆ ପାଣିରେ ବୁଡ଼ଟାଏ ପକାଇ ଅବକା ବାହାରିଯିବେ ମହନାପୁର ; ଏଠୁ ଦୁଇକୋଶ ବାଟ— ପଧାନଘର ମୂଲଦୁଆ ପଡ଼ୁଛି ।

ଘନଆଁ ଈଷତ୍ ବିରକ୍ତ ହୋଇ କହିଲା—'ଯାବେ, ଆଜି ଗଣେଶ ଚଉଠୀରେ ମୁଁ ମୂଲ ଲାଗି ଯାଉଚି ?'

କାହ୍ନୁ—ଘନଆଁ ଠାରୁ ବୟସରେ ଛୋଟ, ପାଞ୍ଚବର୍ଷ ବଡ଼ ହେବ—କହିଲା, 'ଆବେ ତୋର କି ଗଣେଶ ଚଉଠୀ ବେ ?' ବରଜା ଟିପ୍ପଣୀ କାଟିଲା—'ହ୍ୟାପଃ ଭୂଷ୍ପଣ୍ଡିତ !' ଘନଆଁର ଲେଖାପୋଖାରେ ଦାଦ ମହନା କହିଲା—'ତାର ହ୍ୟାପଃ, ମା'ଦେବ ଢେଣ୍ଡ ପରି ଲାଗା ଅଛି ନା ପଘା ଅଛି ?'

ବୁଲର ତଥାପି ଏ ପର୍ଯ୍ୟନ୍ତ ପହୁଡ଼ ଭାଙ୍ଗି ନାହିଁ । ଘନଆଁ ସବୁ ରାଗ ଛିଣ୍ଡାଇବା ପାଇଁ ବୁଲା ଉପରକୁ ଗୋଟିଏ ଡିମା ଟେଳା ପକାଇ କହିଲା—'ଦିନ ଅସ୍ତି.

ପହରରେ ହେଲଣି । ଏ ଶଳା କୋଢ଼ୀର ନିଦ ଭାଙ୍ଗୁନାହିଁ !. ଚିମାଟା ବସିଲା ବୁଲର ଝଟପଟ ଗୋଟାଏ ଗୋଡ଼ରେ । ଲୁଲ କେଁ କାଁ ହୋଇ, ଜଖମ ଗୋଡ଼ଟା ଟେକି ଟେକି ଧାଇଁ ପଳାଇଲା ।

ଘନଆଁ ଦୁମ୍ ଦୁମ୍ ହୋଇ ଭିତରକୁ ପଶି ଆସି ଭିତର ପିଣ୍ଡାରେ ଦୁଲ କରି ବସି ପଡ଼ିଲା । ଘନଆଁ ମା ବୁଢ଼ୀ ପଚାରିଲା—'ତୋର କଣ ହୋଇଚିରେ ଘନଆଁ, ତୁ ପରା ମହାନପୁର ଯିବୁ ? ଯା ଗାଧୋଇପଡ଼ି ଆ ! ଏ ଯୋଉଁ ପୋଡ଼ପଡ଼ା ଖରା ହେଉଚି !'

ଜଳନ୍ତା ନିଆଁରେ କୁଟା ପଡ଼ିଲା ପରି ଘନଆଁ ଚହଙ୍କି ପଡ଼ି କହିଲା—'ଆଜି ଗଣେଶ ଚଉଠିରେ ମୁଁ କାମକୁ ଯିବି ନାହିଁ !'

ଘନଆଁ ମା କହିଲା—'ମଲା, ତୋର ଗୋଟାଏ କି ଗଣେଶ ଚଉଠି ବା ! ଇସ୍କୁଲିଆ ପିଲାଙ୍କର ସିନା ଗଣେଶଚଉଠି !'

ଘନଆଁ ବୁଢ଼ୀକୁ ମାରେ-କି-ନମାରେ-କଣ୍ଠରେ ପାଟିକରି କହିଲା—'କାହିଁକି ସକାଳୁଟାରୁ ବକର ବକର ହେଉଚୁ ବେ ? ମୁଁ ଆଜି କୁଆଡ଼େ ଯିବି ନାହିଁ, ଯା !'

ବୁଢ଼ୀ ପିଁଢ଼ାରେ ଛେଳିନଣ୍ଡିଗୁଡ଼ା ଖରଡ଼ି ଗୋଟାଏ ଜାଗାରେ ଜମା କରୁକରୁ କହିଲା—'ହଉ ନ ଯିବୁ ତ ନାହିଁ, ଏମିତି ଦନ୍ତାମାଙ୍କଡ଼ ପରି ଖିଙ୍କାରି ହଉଚୁ କାହିଁକି ? ହାଃରେ ଯମ ! ବରଜୁଆ ପରି ପୁଅକୁ ନେଇ ମୋତେ ଯାହା ବଞ୍ଚେଇ ରଖିଚୁ ହନ୍ତସନ୍ତ ହେବାପାଇଁ !' କାଶି କାଶି ବୁଢ଼ୀ ପୁଣି ତଳେ ବସି ପଡ଼ିଲା । ଘନଆଁ ପୁଣି ଦୁମ୍ ଦୁମ୍ ହୋଇ ଦାଣ୍ଡଆଡ଼କୁ ବାହାରିଗଲା ।

ଘନଆଁର ମନେ ପଡ଼ିଲା, ପିଲାଦିନେ ଚାଟଶାଳୀ ପାଠ କଥା । ଘନଆଁ ବାପର ବଡ଼ ଇଚ୍ଛା ଥିଲା, ଘନଆଁ ପାଠ ପଢ଼ି ମଣିଷ ହେବ । ବାଉରି ସାଇରେ ପିଲାଏ ତ, ସାତ ବର୍ଷଦିନୁ ଛେଳି ଚରାନ୍ତି, ଶାଗ ତୋଳନ୍ତି, କଙ୍କଡ଼ା ଗାତରେ ହାତ ପୂରାନ୍ତି, ପତର ସାଉଣ୍ଟନ୍ତି, ହଳକୁ ଯାନ୍ତି ! କିନ୍ତୁ ଘନଆଁକୁ ଛ' ପୂରି ସାତ ଲାଗିବା ସଙ୍ଗେ ସଙ୍ଗେ, ଘନଆଁ ବାପ ବରଜୁ ମଲିକ ଘନଆଁକୁ ନେଇ ବସାଇଥିଲା ଗାଁ ଚାହାଳୀରେ । କୁସୁମପୁର ହାଟରୁ ବରଜୁ ଘନଆଁ ପାଇଁ କିଣି ଆଣିଥିଲା ନାଲି କନା, ସିଲଟ, ଝଡ଼ି ଆଉ ଗଣ୍ଡେ ବର୍ଣ୍ଣବୋଧ ।

ହେଇ, ସେ'ଦିନ ପରି ମନେ ପଡ଼ୁଚି······ଦୁଇ ହାତରେ ମୋଟା ମୋଟା ଚିଲଟୀ ଖଡ଼ୁ ନାଇ, ପିଲେହି ପେଟ ତଳେ ନାଲିକନା ବେଢ଼େଇ, ଅଣ୍ଟାସୂତା ପିନ୍ଧି, ଅଣ୍ଟିରେ ମୁଢ଼ିଚୂଡ଼ା ପୂରାଇ, ହାତରେ ଖଣ୍ଡେ ମାଟି ଝଡ଼ି ଧରି, ବାପ ପଛେ ପଛେ, ଘନଆଁ ଆସି ଠିଆ ହୋଇଥିଲା ଗାଁ ଚାହାଳୀ ଘର ଦୁଆର ମୁହଁରେ । ମାହାନ୍ତିସାଇର ବଇ ଅବଧାନେ ସେତେବେଳେ ଖଣ୍ଡେ ଛିଣ୍ଡା କମ୍ବଳ ଉପରେ କାନ୍ଥକୁ ଆଉଜି ବସି ଢୁଲାଉଥିଲେ । ବଇ ଅବଧାନଙ୍କର ଆପୁକଣା । ଢୁଲାଉ ଢୁଲାଉ ପାଟିଟା ଅଧା

ଥାଁ ହୋଇ ଯାଇଥିଲା । ପାଖରେ ପଡ଼ିଥିଲା ଦୁଇଖଣ୍ଡ ବେତ, ଖଣ୍ଡେ ନହୁନହୁକିଆ, ଆଉ ଖଣ୍ଡେ ଆଂଗୁଠି ମୋଟ । ପିଲାମାନଙ୍କର ଫଳା ବୋଲାରେ ବଇ ଅବଧାନଙ୍କର ଢୁଲଟା ଆସ୍ତେ ଆସ୍ତେ ଜମି ଆସୁଥିଲା । ହଠାତ୍ ଦୁଇଟା ମାଛି ଅବଧାନଙ୍କ ପାଟି ଭିତରକୁ ଉଡ଼ି ପଶିଗଲେ । ଖଁ ଖଁ କାଶି, ଛିଙ୍କି, ବଇ ଅବଧାନ ଧଡ଼ପଡ଼ ହୋଇ ଉଠି ବସିଲେ । ପିଲାମାନଙ୍କର ଚପା ହସରେ ଫଳା ବୋଲା ବନ୍ଦ ହୋଇଗଲା । ସେ ଦୃଶ୍ୟରେ ବରଜୁଆ ସୁଢ଼ା ଖିଁ ଖିଁ ହୋଇ ହସି ପକାଇଲା ।

ଢୁଲ ଭାଂଗିଲା ତ ଭାଙ୍ଗିଲା ତା' ଉପରେ ପୁଣି ପିଲାମାନଙ୍କର ହସ···ବେତଟା ହାତରେ ମୁଠାଇ ବଇ ଅବଧାନ ସିଧା ହୋଇ ବସିଲେ । ପିଲାମାନଙ୍କ ମୁହଁ ଏହା-ପରେ ଆସନ୍ନ ବିପଦର ଆଶଙ୍କାରେ କଳା ପଡ଼ିଗଲା ।

'ପଚଶ ସତାଁ କେତେ କାହାଣେ କେତେ ପଣ ?'—

ପ୍ରଶ୍ନ ସଙ୍ଗେ ସଙ୍ଗେ ସପାତ୍ ସପାତ୍ ବେତ ମାଡ଼ !—

'ତେର କାହାଣ ଚଉଦ ପଣ, କେତେକ ପଣିକିଆରେ ଅଛି ?' ଉତ୍ତର ଭାବିବାକୁ ବେଳ ନାହିଁ । ଉତ୍ତର ଭାବୁ ଭାବୁ ବେତ ପାହାରରେ ମୂଳପ୍ରଶ୍ନ ବି ଆଉ ମନେ ନାହିଁ !

ଆଖିରେ ସିଏ ପଡ଼ିଲା, ହାତ ପା'ନ୍ତାରେ ସିଏ ଆସିଲା···ସମସ୍ତଙ୍କ ଉପରେ କାଳଶୀ ନାଚିଲା ପରି ବେତଟା ଥରେ ନାଚିଗଲା । ପିଲାମାନେ ସତ୍କେଇ ସତ୍କେଇ ଏକା ସଙ୍ଗରେ ଫଳା, ପଣକିଆ ସବୁ ପାଟିକରି ବୋଲି ଉଠିଲେ ।

ବରଜୁ, କାନ୍ଧରୁ ଗାମୁଛାରେ ବନ୍ଧା ହୋଇଥିବା ଶ୍ରେଷ୍ଠ ବୁଜୁଳାଟି ତଳେ ରଖି ଦଣ୍ଡବତ ହୋଇ କହିଲା—'ଓଳଗି ଆପଣେ !'

ବଇ ଅବଧାନ ବୁଜୁଳାଟି ଆଡ଼େ ଚାହିଁ କହିଲେ—'କିଏ, ବରଜୁ କିରେ ? ପୁଅକୁ ଆଣିଛୁ ! ହଉ ବସା ସେଇଠି ପିଣ୍ଡାରେ । ଆଜି ବୁଧବାର, ବିଦ୍ୟାରମ୍ଭ ପାଇଁ ଶୁଭଦିନ । କଣ କଣ ଆଣିଚୁ ସେଥିରେ ?

ବରଜୁ ବୁଜୁଳାଟା ଫିଟାଇ କହିଲା—'ଆମେ ମୂଳିଆ ମୁଣ୍ଡ । ଆପଣଙ୍କୁ କଣ ଦେଇ ପାରିବୁ ?'

ବୁଜୁଳା ଭିତରେ ସେରେ ଉଆପଖିଆ ସରୁ ଚାଉଳ, ଦୁଇ ଖଣ୍ଡ ଧୂଆଁ ପତ୍ର, ବିଡ଼ାଏ ପାନ, କେଇଖଣ୍ଡ ଗୁଆ, ଚାରିଟା ବାଇଗଣ, ଗୋଟାଏ ନଡ଼ିଆ, ହଳଦୀଗୁଣ୍ଡ ଆଉ ଦୁବପତ୍ର ବିଡ଼ାଏ । ବଇ ଅବଧାନ ଥରେ ଲୁବ୍ଧ ଆଖିରେ ସିଧା ବୁଜୁଳାଟିକୁ ଚାହିଁ ଜଣେ ପିଲାକୁ ଡାକି କହିଲେ···'ଯା'ରେ ନାଥିଆ, ଦଉଡ଼ି ଯା ଏତକ ଘରେ ଦେଇ ଆସିବୁ ! ଏଇଠି ଛେପ ପକେଇ ଯା ।'

ନାଥିଆ ତା ଜାଗାରୁ ଉଠି ଆସି, ଚଳପର ବୁଜୁଳାଟା ଝାମ୍ପି ନେଇ ପଳାଇ ଯିବାକୁ ବସିଥିଲା; ବଇ ଅବଧାନ ତା ପିଠିରେ ପାହାରେ ବେତ କଷି ଦେଇ ଖିଙ୍କାର

ଉଠିଲେ—ଏଇଟା କୁଆଡ଼େ ମାହାନ୍ତ ପିଲ ! କୁଳାଙ୍ଗାର, ଭୂତ ! ବାଉଁଶ ଲୁଗା ଛୁଇଁ, ଘରଯାକ ଛୁଆଁ ତା କରବ ! ଲଙ୍ଗଳା ହୋଇ ପଡ଼ !'

ନାଥ ଅଣ୍ଟାରୁ ଖୋସଣି ଫିଟାଇ ଲୁଗାଟା ତଳେ ରଖିଦେଲ । ବଇ ଅବଧାନ କହିଲେ—'ଯା, ଏଠି ଛେପ ପକେଇ ଯା···ସଞ୍ଜାତକ ଗାମୁଛାରୁ ଫିଟାଇ ଘରେ ଦେଇ ଆସିବୁ । ଛେପ ଶୁଖିଥିଲେ ସାତ ବେତ୍ ।'

ବଇ ଅବଧାନଙ୍କ କଥା ସରୁଣୁ ନ ସରୁଣୁ ନାଥ ଚୂଳାଟା ଧରି ଲଙ୍ଗଳା ହୋଇ ଚଲ ଦଉ ପଳାଇଲ । ବଇ ଅବଧାନ ବରଜୁଆଡ଼େ ଚାହିଁ କହିଲେ— 'ଦକ୍ଷିଣା କାହିଁ ?'

ବରଜୁ ଅଣ୍ଟାରୁ ଯାବୁ କୁଣ୍ଡାଇ କୁଣ୍ଡାଇ ଅତି ସନ୍ତର୍ପଣରେ ଚାରଣା ପଇସା କାଢ଼ି ତଳେ ରଖିଦେଲ । ବଇଅବଧାନ ପଇସାତକ ଗଣି ଗଣି ଅଣ୍ଟାରେ ଖୋସିଲେ ।

ବରଜୁ କହିଲ—'ମୋର କାମ ବେଳ ହୋଇ ଗଲଣି । ମୁଁ ଯାଉଚି, ଘନଆଁ ରହିଲ । ମୋ ଗାମୁଛାଟା ଘନଆଁ ନେଇଯିବ ।'

ବରଜୁ ଚାଲିଗଲ ।

ବଇ ଅବଧାନ ଜଣେ ଚାଟକୁ ଡାକଲେ—'ଘନଆଁ !'

ଘନଆଁ ଫଲା ବୋଲୁଥିଲ । ଅବଧାନଙ୍କ ଡାକରେ ଫଲା ପାଠ ଛାଡ଼ି, ବଇ ଅବଧାନଙ୍କ ପାଖରେ ଆସି ଠିଆ ହେଲ ଆଦେଶର ପ୍ରତୀକ୍ଷାରେ । ବଇ ଅବଧାନ କହିଲେ···'ପିଣ୍ଡାରେ ତାକୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ମଡ଼େଇ ଦେ ! ତୋ ନାଁ କଣ ରେ ?'

ଘନଆଁ ତଳକୁ ମୁହଁ ପୋତି, ଛେପ ଢୋକ କହିଲ—'ଘନଆଁ !'

ବଇ ଅବଧାନେ କହିଲେ—'ସେଇଠି ପିଣ୍ଡାରେ ସବୁ ଦିନେ ବସି ଝଡ଼ି ପାଠ ମଡ଼େଇବୁ । ଭିତରକୁ ଆସିବୁ ନାହିଁ ।'

ଘନଆଁ ତା' ଝଡ଼ିରେ, ପିଣ୍ଡାରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଡାକ ଉପରଟା ମୁଣ୍ଡିଆ ବୁଲେଇ ଦେଲ ।

ବର୍ଷେ ଗଲ, ଦୁଇ ବର୍ଷ ଗଲ । ମାସକୁ ମାସ ବରଜୁ ଆସି ମୁଣ୍ଡିଆଟିଏ ମାରି ଚାରଣା ପଇସା ବଇ ଅବଧାନଙ୍କ ଆଗରେ ରଖି ଦେଇଯାଏ । ହାଟ ପାଳିକୁ ପାଳି ଘନଆଁ ଅବଧାନଙ୍କ ପାଇଁ ଧୂଆଁ ପତ୍ର ଖଣ୍ଡେ, କଞ୍ଚା ଲଙ୍କାମରିଚ ମୁଠାଏ ଆଣି ଦେଇଯାଏ । କିନ୍ତୁ ବିଦ୍ୟା ସୋରେଅ, ସୋରେଆ, ଆଉ ଦୁଇକ ପଣିକିଆରୁ ବେଶି ଦୂର ଯାଇ ପାରିଲ ନାହିଁ । ପୂର୍ବମୁହାଁ ଚାହାଳୀ, ବାହାର ପିଣ୍ଡାରେ ସକାଳୁଆ ଟାଣ ଖରା ପଡ଼େ । ବଇ ଅବଧାନ ଘନଆଁକୁ କହନ୍ତି ପଛ ପିଣ୍ଡାରେ ଛାଇରେ ବସି ପାଠ ମଡ଼େଇବା ପାଇଁ । ଘନଆଁ ଚାହାଳୀ ପଛ ପିଣ୍ଡାରେ ବସି କଙ୍କି ଧରେ, ଛେଳିଛୁଆ ପଛରେ ଗୋଡ଼ାଏ, ପାଖ ଦେବଦାରୁ ଗଛରେ ବଣି ଛୁଆର ସନ୍ଧାନ

କରେ । ଚଟଶାଳୀ ବେଳଟା ମନ୍ଦ କଟେ ନାହିଁ ! ଦିନେ ଦିନେ ବଡ଼ ଅବଧାନ କଣିଆ ଖଣ୍ଡେ ପିନ୍ଧି, ପିଙ୍କା ଖଣ୍ଡେ ଟାଣି ଟାଣି, ଗୋଟାଏ ହାତରେ ପେଟ ବାଡ଼େଇ ବାଡ଼େଇ, ଚଟଶାଳୀ ପଞ୍ଚପୁଟ ବାଉଁଶବଣକୁ ବାହାରିଲା ବେଳେ ଘନିଆଁ ଉପରେ ନଜର ପଡ଼ିଯାଏ । 'ଦୁଇ ସତାଁ କେତେ ପଣ ?' ଘନିଆ ନିର୍ବୋଧ ପଶୁଙ୍କ ପରି ଅନାଏ ବଡ଼ ଅବଧାନଙ୍କ ଆଡ଼େ । ବଡ଼ ଅବଧାନ ଘନିଆଁକୁ ଛୁଇଁ ପିଟିବେ କିପରି ? ତେଣୁ ଡାକ ପଡ଼େ, ସନିଆଁ ନୋହିଲେ ନାଥିଆ ନୋହିଲେ ଆଉ କାହାରିକୁ । ବଡ଼ ଅବଧାନେ ଆଦେଶ ଦିଅନ୍ତି—'ତା ପିଠିରେ ଗୃର ବିଧା ପକା । ଦୁଇଟା ଖୁନ୍ଦା ଦେ ।' ଚଟ ଶିରୋମଣୀ ଜୁଗାପିନ୍ଧା ମାରିଲେ ଛୁଆଁ ତା ହେବେ । ତେଣୁ ଲଙ୍ଗଳା ହୋଇ ଅବଧାନଙ୍କ ନିର୍ଦ୍ଦେଶମତେ ଦୁମ୍ ଦାମ୍ ଲଗାଇ ଦିଅନ୍ତି । ଏହାପରେ କେଜାଣେ ହୁଏତ ଝିଙ୍କିଆ ପଡ଼ିବାକୁ ବଡ଼ ଅବଧାନ ପାଟିରୁ ବାହାରି ପାରେ । ଘନିଆଁ ପ୍ରାଣ ବିକଳରେ କହେ—'ମୁଁ ଦିଖଣ୍ଡ ଧୂଆଁପତ୍ର ଆଣିଦେବ ଅବଧାନେ !' ବଡ଼ ଅବଧାନ କାହାକୁ ପାଣି ଢାଳେ ଆଣି ରଖି ଦେବାପାଇଁ ଆଦେଶ ଦେଇ ବାଡ଼ିଆଡ଼େ ଚାଲିଯାଆନ୍ତି ।

ଏମିତି କଟିଲା ଦୁଇ ବର୍ଷ । ତା'ପରେ ଦିନେ ଘନିଆଁ ଆଉ ଚଟଶାଳୀକୁ ଆସିଲା ନାହିଁ । ବରଜୁ କହିଲା—'କୁଳ ବେଉସା ଗୁଡ଼ି, ଆମେ ବାଉରି ମୂର୍ଖ, ପାଠ ପଢ଼ିଲେ କ'ଣ ହେବ ?' ଘନିଆ ଜଗିଲା ଛେଳି । ଏ ଦୁଇବର୍ଷ ଭିତରେ ଗଣେଶ ଚଉଠୀ ଯାଇଛି; ସରସ୍ୱତୀ ପୂଜା ଯାଇଛି । ଘନିଆଁ ବଡ଼ଅବଧାନ ପାଇଁ ଭେଦା ଆଣିଦେଇଚି, ବାଡ଼ିରୁ କାକୁଡ଼ି ହାଟରୁ ନଡ଼ିଆ ଆଣି ଦେଇଛି । କିନ୍ତୁ ଅଛୁଆ ପିଲା, ପୂଜା କରିବ କିପରି ? ପୁଷ୍ପାଞ୍ଜଳି ଦେବ କେମିତି ?

'ଘନିଆ-ଇ, ହେ ଘନିଆ-ଇ !'

ଘନିଆଁ ଚମକି ପଡ଼ି ଚାହିଁଲା । ବାଉଁଶ ସାହିର ଦଳେ ପିଲା, ହାତରେ ଚାଙ୍ଗୁଡ଼ି ଆଉ ଲଗୀ ଧରି ତା ଆଡ଼କୁ ଆସୁଛନ୍ତି ।

ଘନିଆଁ ପଚାରିଲା—'କଣ କରେ ?'

ପିଲାମାନଙ୍କ ଭିତରୁ ଜଣେ କହିଲା—'ଆମ ଇସ୍କୁଲରେ ଗଣେଶପୂଜା । ମାହାନ୍ତିସାଇଆ, ବ୍ରାହ୍ମଣସାଇଆ ପିଲାମାନେ ସବୁ ଫୁଲ ତୋଳି ନେଇଗଲେଣି । ଆମକୁ ଫୁଲ ତୋଳି ଦେ !'

ଘନିଆ ବିସ୍ମିତ କଣ୍ଠରେ ପଚାରିଲା—'ସେମାନଙ୍କର ପରା ଗଣେଶ ପୂଜା, ତମର କଣରେ ?'

ପିଲାମାନେ କହିଲେ—'ବାଃରେ—ଆମର ବି ଗଣେଶ ପୂଜା । ମାଷ୍ଟ୍ରେ କହିଛନ୍ତି ଦେଶ ସ୍ୱାଧୀନ ହେଲାଣି, ଆମେ ବି ଫୁଲ ଅଞ୍ଜୁଳି ଦେବୁ ଏଣିକି ।'

ଘନିଆଁ ଖରବକମରେ ମାଡ଼ ଉଠି କହିଲା,—'ଚାଲ କେତେ ଫୁଲ ନେବ !

ଦଧିପୋଖରୀରୁ ମୁଁ ତୋଳି ଦେବ ଟୋକେଇ ଟୋକେଇ କଇଁ ଫୁଲ, ପଦ୍ମଫୁଲ । ଅନ୍ଧାରୁଆ ତୋଟାରୁ ତୋଳିଦେବ ଚମ୍ପାଫୁଲ...ଫୁଲ ମିଳୁନାହିଁ ?'

ଘନଆଁ ପଛେ ପଛେ ପିଲାମାନେ ଆନନ୍ଦରେ କଳରବ କରି ଛୁଟିଲେ ।

ଗାଁ ମୁଣ୍ଡ ଗୃଣାଳୀ ସେ ଦିନ କଇଁ ଆଉ ପଦ୍ମଫୁଲରେ ଭରିଗଲା । ଘନଆଁର ମନ ତଥାପି ମାନିଲା ନାହିଁ । ଦେବଦାରୁ ଗଛରେ ଚଢ଼ି ସେ ଶଗଡ଼େ ଦେବଦାରୁ ପତ୍ର ଝାଙ୍ଗିଲା । ସେଇ ପତ୍ର ଆଉ ଫୁଲରେ ସଜାଗଲା ତୋରଣ । ଗୃଣାଳୀ ପିଣ୍ଡାରେ ଖଣ୍ଡ ଖଣ୍ଡ କରି ଭଙ୍ଗା କଇଁନାଡ଼ରୁ ଝୁଲି ହେଲା କଇଁ ଫୁଲ । ବାଉରିସାଇଆ ପିଲାଙ୍କ ପ୍ରଶଂସାରେ ଇସ୍କୁଲର ଟୋକା ସେକେଣ୍ଡ ମାଷ୍ଟର ଶତମୁଖ । ମାହାନ୍ତି ଆଉ ବ୍ରାହ୍ମଣ ସାଇ ପିଲାମାନଙ୍କର ମୁହଁ ଶୁଖିଗଲା । ଘନଆଁ ଗୃଣାଳୀ ପିଣ୍ଡାତଳେ ବସି, ନିଜର କୀର୍ତ୍ତିରେ ନିଜେ ଅଭିଭୂତ ହୋଇ ପଡ଼ିଥିଲା । ବାଉରିସାଇଆ ପିଲାଙ୍କ ହୃଦରେ ତାର ସାର୍ଥକତା, ତାର ବିଜୟର ବାର୍ତ୍ତା ଯେପରି ମୁଖରିତ ହୋଇ ଉଠିଥିଲା; ତାର ପୁଷ୍ପାଞ୍ଜଳି ପୁଷ୍ପିତ ହୋଇ ଉଠିଥିଲା !

ପୂଜା ସରିଲା । ଶିଳୁପତାରେ ନଡ଼ିଆ ପିଟା ସରିଲା । ବାଉରି ସାଇଆ ପିଲାଙ୍କର ଏକା ଏକା ପାହାରରେ ନଡ଼ିଆଟାମାନ ଫାଟି ଦଫାଲ । କିନ୍ତୁ ବ୍ରାହ୍ମଣସାଇଆ, ମାହାନ୍ତିସାଇଆ ପିଲାଙ୍କ ଭିତରୁ ଅନେକେ ଦୁଇ ପାହାରରେ ସୁଦ୍ଧା ନଡ଼ିଆ ଫଟାଇ ନପାରି ସେମିତି ଗଡ଼େଇ ଦେଲେ । ଓପା କରି ସେମାନେ ଲୁଚିଇ ଲୁଚିଇ ଖାଇଛନ୍ତି ପରା ! ସେଇଥିପାଇଁ ନଡ଼ିଆ ଫାଟିଲା ନାହିଁ ! ତା'ପରେ ହେଲା ପୁଷ୍ପାଞ୍ଜଳି । ଘନଆଁର ହାତ ତୋଳା କଇଁ ଆଉ ପଦ୍ମଫୁଲର ପାଖୁଡ଼ା ଗଣେଶ ମୂର୍ତ୍ତି ଉପରକୁ ଫିଙ୍ଗା ହେଉଥିବାବେଳେ ଘନଆଁର ମନ ସାର୍ଥକତାର ଏକ ବିପୁଳ ଆନନ୍ଦରେ ଭରିଗଲା ।

ପୂଜା ସରିଲା । ପିଲାମାନଙ୍କୁ ପ୍ରସାଦ ବିତରଣ ସରିଲା । ଇସ୍କୁଲର ଟୋକା ସେକେଣ୍ଡ ମାଷ୍ଟର ବାହାରକୁ ଆସି ଦେଖିଲେ, ଘନଆଁ ପିଣ୍ଡାତଳେ ବସିଛି । ପ୍ରସାଦ ଟୋକେଇଟା ହାତରେ ଧରି ସେକେଣ୍ଡ ମାଷ୍ଟର କହିଲେ—'ଅଣ୍ଟି ଦେଖା ଘନ, ପ୍ରସାଦ ନେ ।'

ଘନଆଁ ସଙ୍କୋଚଜଡ଼ିତ କଣ୍ଠରେ କହିଲା—'ନାଇଁ, ମୁଁ କଣ ପିଲା ହେଇଚି !'

ମାଷ୍ଟର କହିଲେ—'ନାଇଁ, ନାଇଁ, ତୁ ବହୁତ ପରିଶ୍ରମ କରିଛୁ । ନେ, ପ୍ରସାଦ ନେ ।'

ଘନଆଁର ଅଣ୍ଟି ଖଇ, ଉଖୁଡ଼ା, ଖଣ୍ଡାନଡ଼ୁ, ନଡ଼ିଆ ଖଣ୍ଡ ଖଣ୍ଡ କାକୁଡ଼ି ଆଉ କଦଳୀରେ ଭରିଗଲା ।

ବେଳ ଗଡ଼ିଗଲାଣି ।

ଘନଆଁ ଘରଆଡ଼େ ଫେରିଲା ।

ବାଟରେ କେଉଁଠି ଘନିଆଁକୁ ଦେଖି, ଭୁଲ ଘନିଆଁ ପାଖକୁ ଦଉଡ଼ ଆସି, ତା ପାଦରେ ଛନ୍ଦ ହୋଇଗଲା । ଅନ୍ୟ ଦିନ ହୋଇଥିଲେ, ହୁଏତ ଗୋଇଠାଟାଏ ପକାଇଥାନ୍ତା । ଆଜି କିନ୍ତୁ ମୁଠାଏ ଖଇ ଉଖୁଡ଼ା ଗୁଞ୍ଜି ଦେଇ କହିଲା—'ନେ—ନେ ଭୁଲ, ଗଣେଶ ଭୋଗ । ନେ ଏ ଖସାନଡ଼ୁ ଖଣ୍ଡେ ଖା ।'

ଭୁଲ ନାଚି ନାଚି ସେତକ ଚାଟି ଦେଲା । ଆଃ, ଆଜି ଏ କି ସୌଭାଗ୍ୟ ! ଏ କି ଆନନ୍ଦ !

ବାଉଁଶ ଘାଇ ମୁଣ୍ଡକୁ ଘନିଆଁ ମା'ର ପାଟି ଶୁଭୁଥିଲା—'ଘନିଆ ରେ ଘନି···ଆ ! ହା'ରେ ଯମ ! ସାତ ସାଗରେ ସାର ଜୀବନକୁ ନେଇ, ମତେ ଯାହା ପକେଇ ରଖିଚୁ ! ଘନିଆ ରେ···'

ଘନିଆଁ ଅଣ୍ଟାରୁ ଖଇ ଉଖୁଡ଼ା ଚୋବେଇ ଚୋବେଇ କୁଡ଼ିଆ ଦୁଆର ମୁହଁରେ ପହଞ୍ଚିଲା । ଭୁଲ ତା ପଛେ ପଛେ ଲୁଟି ତଳେ ବୁଣି ପଡ଼ୁଥିବା ଖଇଟାଏ, ଉଖୁଡ଼ାଟାଏ ପରମ ଆନନ୍ଦରେ ଚାଟି ଚାଟି ଖାଉଥିଲା ।

ବୁଢ଼ୀ ପଚାରିଲା—'କି'ରେ ଘନିଆଁ, ଦିନ ଆସି ଦି'ପହର ଗଡ଼ି ଗଲାଣି । ଅଖିଆ ଅପିଆ ତୁ କୁଆଡ଼େ ବୁଲୁଚୁ କିରେ ?'

ଘନିଆ କହିଲା—'କି ଲୋ, ଆଜି ପରା ଗଣେଶ ଚଉଠି !'

ବୁଢ଼ୀ କହିଲା 'ଇସ୍କୁଲିଆ ପିଲାଙ୍କର ସିନା ଗଣେଶ ଚଉଠି । ତୋ'ର ଗୋଟାଏ କି ଗଣେଶ ଚଉଠି ବା ?'

ଘନିଆଁ ବୁଢ଼ୀଆଡ଼େ ଅଞ୍ଜୁଳାଏ ଭୋଗ ଦେଇ କହିଲା—'ନେ, ନେ, ଏ ଭୋଗ ପରସାଦ । ତୋ ପାଇଁ ଆଣିଚି ଆଉ ବକର୍ ବକର୍ ହ'ନା ।'

ବୁଢ଼ୀ ପାଟିରେ ଗୋଟାଏ ଖସାନଡ଼ୁ ପକାଇ ଦେଇ, ମାଡ଼ିରେ ସେଇଆକୁ ଚକୁଲେଇ ଚକୁଲେଇ କହିଲା—'ମଲା, ଏ ନଡ଼ୁଟା ପଥର ପରି ହେଇଚିମ ! ମୋର କଣ ଆଉ ଦାନ୍ତ ଅଛି ?'

ଭୁଲ ଲାଙ୍ଗୁଡ଼ଟା ହଲାଇ ଘନିଆଁ ଆଗରେ ନାଚି ଯାଉଥିଲା । ଘନିଆଁ ଆଉ ମୁଠାଏ ଖଇ ଉଖୁଡ଼ା ତଳେ ଫିଙ୍ଗି ଦେଇ କହିଲା—'ଶଳାଟା ପେଟରେ ଯୋଗିଣୀ ଅଛି ।'

ଘନିଆଁ ମା' ବୁଢ଼ୀ ପାଟିରୁ ଲାଳ ସଙ୍ଗରେ ଖଣ୍ଡେ ଖଣ୍ଡେ ଖସାନଡ଼ୁ ତଳକୁ ବୋହି ପଡ଼ୁଥିଲା ।

ଘନିଆଁ ସେଇଆଡ଼େ ଚାହିଁ ଖିଲ ଖିଲ୍ ହୋଇ ହସି ଉଠିଲା ।

[ ୧୯୫୩ ]



# ସାଇକେଲ ଓଡ୍ଡର

"୧୯୪୯ ମସିହାକୁ 'ବେସ୍ ଇୟର' (Base Year) ବୋଲି ଧରାଗଲେ ଚଳିତବର୍ଷ ଭାରତରେ 'ଲିଭିଂ ଇଣ୍ଡେକ୍ସ' [Living Index] ୪୦୩.୪ରୁ ୩୮୦.୫କୁ ଖସି ଆସିଅଛି । ଯୋଜନା କମିସନ ନିଜ ରିପୋର୍ଟରେ ବହୁ ତଥ୍ୟ ଓ ପ୍ରମାଣ ସହ ଦର୍ଶାଇଛନ୍ତି ଯେ, ଚଳିତବର୍ଷ ଭାରତରେ ସର୍ବସ ଜନସାଧାରଣର ମାନ ଉନ୍ନତ ହୋଇଅଛି ।"

ସୁରେନ୍ଦ୍ର—ରାଜୁ—ଖବରକାଗଜର ପୃଷ୍ଠା ଲେଉଟାଉଥିଲା ।

"ଭାରତକୁ ଏକ ଶକ୍ତିଶାଳୀ ଦେଶରେ ପରିଣତ କରିବାକୁ ହେବ ।"

"ଜୟହିନ୍ଦ୍ ଫୁଟବଲ୍ ଟିମ୍ ଉଦ୍‌ଘାଟନ ଉପଲକ୍ଷେ ପ୍ରଧାନମନ୍ତ୍ରୀଙ୍କ ଭାଷଣ ।"

ଓଃ, ପୁଣି ଆଉଗୋଟିଏ ଏକ ଭାଷଣ !

"ଭାରତ ପୃଥିବୀରେ ଶାନ୍ତି ପ୍ରତିଷ୍ଠା କରିବ ।"

"କଟକ ସହରରେ ଗୋଟିଏ ଚା' ଦୋକାନ ଉଦ୍‌ଘାଟନ କରି ଅର୍ଥମନ୍ତ୍ରୀଙ୍କ ଦୀର୍ଘ ତିନିଘଣ୍ଟାବ୍ୟାପୀ ଭାଷଣ—ନିଜ ସମ୍ବାଦ ଦାତାଙ୍କଠାରୁ । ଭାରତର ନୈତିକତା, ସମୁଦାୟ ପୃଥିବୀର ଆଦର୍ଶ ।"

ତିନିଦିନ ତଳର ଖଣ୍ଡେ ପୁରୁଣା ଖବରକାଗଜ ଷ୍ଟେସନ ଓ୍ୱେଟିଙ୍ଗ୍ ରୁମ୍ କୋଣରେ ପଡ଼ିଥିଲା । ରାଜୁ ସେଇଖଣ୍ଡ ସଂଗ୍ରହକରି ଆଣି ନିବିଷ୍ଟଭାବରେ ପଢ଼ା ଲଗାଇଛି । ସାମନାରେ ସେକେଣ୍ଡହ୍ୱାଣ୍ଟ କୋଠା ରାସ୍ତା ଏ ପାଖରେ ବରଗଛ ଛାଇ ତଳେ ବସି, ରାଜୁ ଘାସ ଚୋବାଉଛି, ବଡ଼ ଟାଣୁଛି, ଖବରକାଗଜ ପଢୁଛି ।

ଘାସର ଲମ୍ବିଲମ୍ବି ସାବନା ଡେମ୍ପ ଦାନ୍ତରେ ଚୋବାଇଲେ ବେଶ ମିଠା ଲାଗେ । ମଧୁବାବୁଙ୍କ କର୍ତ୍ତବ୍ୟବୋଧ ପଢ଼ିଛ ? କାଳୀ ଗାଈ ଘାସ ଚରୁଅଛି, କାଳୀ ଗାଈର ଦୁଧ ମିଠା । କାରଣ ତ ଏଇଠି !

ନୂଆଛବି ଆସିଛି ସିନେମାରେ "Gentlemen Prefer Blondes" ହଲିଉଡ୍ ଦେଶର ଛବି । ରୂପକଥାର ଦେଶ ହଲିଉଡ୍ । ଜେଣ୍ଟଲମେନ୍ ଅର୍ଥାତ୍ ଭଦ୍ରଲୋକମାନେ, ପ୍ରିଫର ଅର୍ଥାତ୍ ପସନ୍ଦ କରନ୍ତି । ବ୍ଲୋଣ୍ଡସ୍ ମାନେ ? ଟୋକୀ ! ଦୁଇଟି ଅଭିନେତ୍ରୀ 'ବ୍ଲୋଣ୍ଡସ୍' ସିନେମା ବିଜ୍ଞାପନରେ ଠିଆ ହୋଇଛନ୍ତି । ଦକ୍ଷିଣ ଜଙ୍ଘ ବାମ ଜଙ୍ଘ ସହିତ ନବେ ଡିଗ୍ରୀର ସମକୋଣ କାଟିଛି । ପରିଧାନରେ ଖଣ୍ଡେ ଖଣ୍ଡେ ଜଙ୍ଘିଆ ।

ଗୀର୍ଜା ଘଣ୍ଟାରେ ବାଜିଲା ଦିନ ଗୋଟାଏ ।

ସେକ୍ରେଟେରିଏଟରେ ଦେଶୀ ସାହେବମାନଙ୍କର ଲଞ୍ଚ-ବେଳ ହେଲା । ମଟର ପରେ ମଟର ଛୁଟିଛି ।

ଚାକିରିଆମାନେ ସକାଳ ନ'ଟା ବାଜୁଣୁ ନ ବାଜୁଣୁ ଗୋଗ୍ରାସ ପାଉ ହାକୁଟି ମାରନ୍ତି । କିନ୍ତୁ ମନ୍ତ୍ରୀମାନେ, ହାକିମମାନେ, ଲଞ୍ଚ ଗ୍ରାସ କରନ୍ତି ଗୋଟାଏ ପରେ । ଦିନ ଗୋଟାଏ ବେଳେ ଲଞ୍ଚ ଖାଇବା ଅମଲାମାନଙ୍କର ହାଲ ଫେସନ୍ । ଗାଁରେ ବିଲରୁ ମୂଲିଆମାନେ ମଧ୍ୟ ସେତିକିବେଳେ ଫେରି ଲଞ୍ଚ ଖାନ୍ତି, ପଖାଳ ଭାତ, ଶାଗ ଖରଡ଼ା, ପିଆଜ ଦୁଇ କୋଲ, କଙ୍କଡ଼ା ଛେଚା । ଅର୍ଥମନ୍ତ୍ରୀ କୌଣସି ପ୍ରତିବାଦର ଆଶଙ୍କା ନ ରଖି ଆମେରିକାରେ ଡେଣ୍ଟୁ କହିପାରନ୍ତି—'ଓଡ଼ିଶାରେ ଦରିଦ୍ର ଦିନ ମୂଲିଆ ସୁଦ୍ଧା ଚାରି କୋର୍ସବିଶିଷ୍ଟ ଲଞ୍ଚ ଖାଇଥାଏ !'

ପ୍ରଥମ କୋର୍ସରେ ରାଇସ୍ ସୁପ୍ ଅର୍ଥାତ୍ ତୋରାଣି । ଦ୍ୱିତୀୟରେ କୋଲ୍ଡ୍ ରାଇସ୍ ଉଇଥ୍ ଗ୍ରୀନ୍ ଭେଜିଟେବଲ୍ସ୍ । ଅର୍ଥାତ୍ ପଖାଳ ଆଉ ଶାଗ, ତୃତୀୟରେ ଓନିୟନ୍ ଓ ଚିଲି ସାଲାଡ୍ , ଚତୁର୍ଥରେ କ୍ରାବସ୍ ମାନେ ଅସ୍ଥିଷ୍ଟର ପରି ।

ଗୋଟିଏ ଡାଇରେକ୍ଟରଙ୍କ ପାଇଁ ଆଜି ଇଣ୍ଟରଭ୍ୟୁ ଥିଲା । ରାଜୁ ଆସିଥିଲା, ଗୋଟାଏ ବି. ଏ. ଡିଗ୍ରୀ, ବହୁତ ଉଚ୍ଚପ୍ରଶଂସାପୂର୍ଣ୍ଣ ଗୋଛାଏ ସାର୍ଟିଫିକେଟ, ପୁଣି ଛାତିଏ ଆଶା ଧରି ।

ରାଜୁ ଆସିଥିଲା ଚେନ୍‌ସିଂ, ହୋ-ଚୀ ମିନ, ମାଓ-ସେ-ତୁଙ୍ଗ ପ୍ରଭୃତି ନାମ ମୁଖସ୍ଥ କରି । ରାଜୁ ଆସିଥିଲା ପଞ୍ଚବାର୍ଷିକ ଯୋଜନାରେ ଜନସାଧାରଣଙ୍କ ଅବସ୍ଥା ଉନ୍ନତିର ବହୁତ ତଥ୍ୟ କଣ୍ଠସ୍ଥ କରି । ରାଜୁ ଆସିଥିଲା ଗ୍ରାମଗୋଷ୍ଠୀ ଯୋଜନାର ନାନା ବିବରଣୀ ରୁଣ୍ଡେଇ କରି । ରାଜୁ ଆସିଥିଲା ଖଣ୍ଡେ ପେଡ଼ିସାଇତା ଧୋବ କାମିଜ ପିନ୍ଧି । ରାଜୁ ଆସିଥିଲା ଗାଁ' ମଙ୍ଗଳାଙ୍କୁ ମାନସିକ ଯାଚି । ରାଜୁ ଆସିଥିଲା ଦୁଆରବନ୍ଧରେ ମୁଣ୍ଡିଆ ମାରି, କଣ୍ଠରେ ସିନ୍ଦୂରଟିପା ଦେଇ, ପକେଟରେ ପ୍ରସାଦୀଧଣ୍ଡା ରଖି । କିନ୍ତୁ ହାତୀ ସୁନା କଳସ ଢାଳିଲା ଡେପୁଟି ସେକ୍ରେଟେରୀଙ୍କ ଭଣଜାଇର ସ୍ୱାମୀଙ୍କର ଦଅର—ମାମୁଁପୁଅ-ଭାଇ ମୁଣ୍ଡରେ । 'ଇଣ୍ଟରଭ୍ୟୁ' ପରେ ରାଜୁ ସେକ୍ରେଟେରିଏଟରୁ ବାହାରି ଆସି ବସିଛି ରାସ୍ତାକଡ଼ ବରଗଛ ମୂଳେ, ଛାଇରେ, ଗଛଦେହରେ ଆଉଜି, ବଡ଼ ଟାଣୁଛି, ଘାସ ଚେଁବାଉଛି ଆଉ ସାଧାରଣଜ୍ଞାନ ପରୀକ୍ଷାରେ ସାହାଯ୍ୟ ହେବା ଆଶାରେ ଷ୍ଟେସନ ହ୍ୱିଏଟିଂ ରୁମ୍‌ରୁ ସଂଗ୍ରହ କରି ଆଣିଥିବା ପୁରୁଣା ଖବରକାଗଜ ଖଣ୍ଡେ ଥାଉରି ଥରେ ପଢ଼ୁଛି । ଉଦ୍ଦେଶ୍ୟ କେବଳ ସମୟ କଟାଇବା । ଅତ୍ୟନ୍ତ ବିଚ୍ଛୀଭିଙ୍କ ସମୟ ।

ସମୟ କଟେ ନାହିଁ । ଦିନ ତଥାପି ଦୁଇଟା ବାଜି ନାହିଁ । ସହରର ସବୁ ରାସ୍ତା ସମାନ, ଅକ୍ଟୋପସ୍‌ର ଟେଣ୍ଟାକଲ ପରି ଲମ୍ବି ଯାଇଛି ଚାରିଆଡ଼େ ।

ରାସ୍ତାରେ ମଣିଷ ଚାଲିଛନ୍ତି, ମଟର ଚାଲିଛି, ସାଇକେଲ ଚାଲିଛି, ଉପରେ ଅନେକ ଉଚ୍ଚରେ ଆକାଶରେ ଖଣ୍ଡ ଖଣ୍ଡ ଧଳା ବଉଦ ଭାସି ଚାଲିଛି……ସମସ୍ତେ ଚାଲିଛନ୍ତି ନିଜନିଜ ବାଟରେ। ତଳେ ରାଜୁ କେବଳ ଦରମଲା କେରାଣ୍ଡି ମାଛ ପରି ଅସହାୟ ଭାବରେ ଛଟପଟ ହେଉଛି ବରଗଛ ତଳେ। ସମସ୍ତ କିଛି ନାହିଁ। ଖଣ୍ଡିଆ ବିଡ଼ିରୁ କଳା କଳା ନିକୋଟିନ୍ ବାହାରିଲାଣି। ରାଜୁ ପୁଣି ଖବରକାଗଜର ସ୍ତମ୍ଭ ଗୁଡ଼ାକ ଉପରେ ଆଖି ବୁଲାଇଲା।

"ସହରରେ ସାଇକେଲ୍ ଚୋରି—ସହର ସମ୍ବାଦଦାତାଙ୍କ ଠାରୁ। ଆଜିକାଲି ସହରରେ ଭୀଷଣ ସାଇକଲ ଚୋରି ହେଉଛି। ଗତକାଲି ଗୋଟିଏ ଦିନ ଭିତରେ ସହରର ବିଭିନ୍ନ ସ୍ଥାନରୁ ଚାରିଗୋଟି ସାଇକଲ ଚୋରି ହୋଇଅଛି। ପୁଲିସ୍ କର୍ତ୍ତୃପକ୍ଷ କହନ୍ତି ସାଇକଲ ଚୋରି ଠାରୁ ବଳି ସହଜ ଚୋରି ନାହିଁ। ମାତ୍ର ସାଇକଲ ଚୋର ଧରିବା ଠାରୁ ବଳି ଅନ୍ୟ କୌଣସି ଦୁଃସାଧ୍ୟ ଚୋରଧରା ନାହିଁ। ପୁଲିସ୍ କର୍ତ୍ତୃପକ୍ଷ ସାଇକଲ ଆରୋହୀମାନଙ୍କୁ ସାବଧାନ କରି ଦେଇଛନ୍ତି ଯେ, ନିଜ ନିଜ ସାଇକଲ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବା ସାଇକଲ ଚୋରିର ଏକମାତ୍ର ପ୍ରତିଷେଧକ।"

ରାଜୁ ଥରେ ନୁହେଁ, ଦୁଇଥର, ତିନିଥର, ଚାରିଥର ସେଇ ସମ୍ବାଦଟାକୁ ପଢ଼ିଗଲା। "ପୋଲିସ କର୍ତ୍ତୃପକ୍ଷ କହନ୍ତି—ସାଇକଲ ଚୋରି ଠାରୁ ବଳି ସହଜ ଅନ୍ୟ ଚୋରି ନାହିଁ।"

ପୁଣି ଆଉ କିଏ ଜଣେ ମହାତ୍ମା କହିଛନ୍ତି—"ନେଇ ଆଣି ଥୋଇ ଜାଣିଲେ ଚୋରି ବିଦ୍ୟା ଭଲ।" ରାଜୁ ସାମନା ସେକ୍ରେଟେରିଏଟ ଆଡ଼େ ଚାହିଁଲା। ଶହ ଶହ ସାଇକଲ ଏଠି ସେଠି କାନ୍ଥରେ, ବାଡ଼ରେ, ଡେରି ହୋଇଅଛି। ସାଇକଲ ଷ୍ଟାଣ୍ଡ୍ ରେ ଶହ ଶହ ସାଇକଲ ଅର୍ଗଲୀ ଦେହରେ ଛେଳି ବେକ ପୁରାଇଲା ପରି ବେକ ପୁରାଇ ଠିଆ ହୋଇଅଛି।

ରାଜୁ ସେକ୍ରେଟେରିଏଟ୍ ଆଡ଼େ ଚାଲିଲା। ଫାଟକର ଦକ୍ଷିଣ ପାଖରେ ଏକ ଛାଉଣୀ 'ଶେଡ୍'ରେ ସେକ୍ରେଟେରିଏଟର ସାଇକଲ 'ଷ୍ଟାଣ୍ଡ'। ଜଣେ ଚପରାସୀ—ଜମୁଆଲ ହେବ ପରା—ଶେଡ୍ ଭିତରେ ଖଣ୍ଡେ ଟୁଲ ଉପରେ ବସି କରି ଖଣ୍ଡେ ବହି ପଢ଼ୁଛି। ଶେଡ୍ ପଛପଟେ ବୁଲି ଆସିଲେ ଚପରାସୀ ଦେଖାଯାଏ ନାହିଁ। ରାଜୁ ଶେଡ୍ ଆଡ଼େ ଆସିଲା। କିନ୍ତୁ ଚପରାସୀର ଖଁ ଖଁ କାଶରେ ରାଜୁ ଚମକି ପଡ଼ି ଦଣ୍ଡିକ ପାଇଁ ରହିଗଲା। ସାଇକେଲ ଜଗିବା ପାଇଁ ଖାସ୍ କରି ଜଣେ ଯେତେବେଳେ ଚପରାସୀ ରହିଛି, ତା' ନଜରରୁ କଣ ସହଜରେ ସାଇକେଲ ଖସାଇ ନେଇହେବ ?

ଲୋକଟା କିନ୍ତୁ ନ ଜାଣିଲା ପରି ବହି ପଢ଼ୁଛି। ହୁଏତ ରାଜୁକୁ ଜଣାଇଦେବା ପାଇଁ ଯେ, ବହି ପଢ଼ାରେ ସେ ଏତେ ବ୍ୟସ୍ତ ଯେ, ସାଇକେଲ ପ୍ରତି ତାର ଦୃଷ୍ଟି ନାହିଁ। କିନ୍ତୁ ସାଇକେଲ ଚୋରି ଛଡ଼ା ରାଜୁର ଯେ ଉପାୟାନ୍ତର ନାହିଁ !

'ଖୁଁ-ଖୁଁ ···ଚପରାସୀ ପୁଣି କାଶୁଛି ।

ସେ କଣ କାଶିଲା କାହିଁକି ?

ହୁଏତ ରାଜୁକୁ ସାବଧାନ କରିଦେବା ପାଇଁ ! ରାଜୁ ହତାଶ ହୋଇ ଫେରି ଆସୁଥିଲା । କିନ୍ତୁ ଫାଟକ ପାଖରେ ଜଣେ ପୁଲିସ କନେଷ୍ଟବଲ୍ ଠିଆହୋଇ ରାସ୍ତାରେ ଯାଉଥିବା ଜଣେ ଲୋକ ସଙ୍ଗରେ କଣ କଥାବାର୍ତ୍ତା ହେଉଥିଲା । ସେ ବାଟେ ଯିବା ପାଇଁ ତେଣୁ ରାଜୁର ସାହସ ହେଲାନାହିଁ । କନେଷ୍ଟବଲ୍ ଥରେ ପଛକୁ ବୁଲି ରାଜୁ-ଆଡ଼େ ଚାହିଁଲା । ରାଜୁର ଗୁଡ଼ ଭିତରେ ଯେମିତି ଅଡୁଆ ଖେଳିଲା । ଏଇ ସର୍ବନାଶ ! କନେଷ୍ଟବଲ୍‌ଟା ଜାଣିଲା କିପରି, ସେ ଆସିଛି ସାଇକେଲ ଚୋରି ଉଦ୍ଦେଶ୍ୟରେ । ପଛକୁ ଫେରିବାର ଉପାୟ ନାହିଁ । ରାଜୁ ଦଣ୍ଡେ ଠିଆ ହୋଇ ମନରେ ସାହସ ସଞ୍ଚୟ କରି ପୁଣି ଆଗକୁ ଚାଲିଲା । ସାଇକେଲ ଜଗୁଆଳି ଚପରାସୀଟା ଦରବୁଢ଼ା ଲୋକ । ଚେହେରା ଦେଖିଲେ ଗୋଟିଏ ବୋକା ପରି ମନେ ହେବ । ପାକୁଆ ଗାଲ, ଧଳା ପଡ଼ି ଆସୁଥିବା ଦୁଇପଟ ନିଶ, ନାକ ଆଗରେ ଚାଳଶୀ ଚଷମା, ବାଁ କାନରେ ଖଣ୍ଡେ ଦଉଡ଼ିରେ ବନ୍ଧା ହୋଇଅଛି । ଚନ୍ଦାମୁଣ୍ଡ ଚାରିପଟେ ଯେଉଁ ବାଳ ଅଛି, ସେଥିରୁ ଗୋଟିଏ ଗୋଟିଏ କେଉଁଠି ଧଳା ପଡ଼ି ଆସିଲାଣି । ରାଜୁ ସେଇବାଟେ ଗଲାବେଳେ କଣେଇ କଣେଇ ଚପରାସୀ ଆଡ଼େ ଚାହିଁ ଥରେ ତାକୁ ଆଖି ବୁଲାଇ ଦେଖିଗଲା । ଚପରାସୀ 'ଦାର୍ଢ୍ୟତାଭକ୍ତି' ଖଣ୍ଡେ ପଢ଼ୁଛି ନିବିଷ୍ଟ ଭାବରେ । କ୍ଲାନ୍ତ, ଶୀର୍ଣ୍ଣ, କ୍ଷୁଧାର୍ତ୍ତ, ମଳିନ ମୁହଁରେ ତାର ସନ୍ତୋଷ ଓ ସହନଶୀଳତାର ପ୍ରଶାନ୍ତି । ଚପରାସୀ ରାଜୁ ଆଡ଼େ ଅନାଇ ଦେଖୁଛି କି ? ରାଜୁ ପଛକୁ ଫେରି ଚାହିଁଲା । ନା— ନା— ଚପରାସୀ ଦାର୍ଢ୍ୟତାଭକ୍ତି ପଢ଼ୁଛି, ଆଉ ଢୁଲାଉଛି । ରାଜୁ ଶେଡ୍‌ର ଅନ୍ୟ ଏକ ଫାଟକ ବାଟେ ବାହାରକୁ ଆସି ସ୍ୱସ୍ତିର ଦୀର୍ଘଶ୍ୱାସ ମାରିଲା ।

ପାଞ୍ଚଟା ବାଜିଲା ।

ରାଜୁ ଫେରିଲା । ଅନ୍ୟ ଦିନ ହୋଇଥିଲେ, ଗତ ରାତିଠୁଁ ଏପର୍ଯ୍ୟନ୍ତ ଦୀର୍ଘ ଗୋଟିଏ ଦିନର ଅନଶନ ପରେ କ୍ଷୁଧା, ବ୍ୟର୍ଥତା ଓ କ୍ଲାନ୍ତିରେ ତା ଦେହ ଭାଙ୍ଗି ପଡ଼ନ୍ତାଣି । ଆଜି କିନ୍ତୁ ସମସ୍ୟାର ଗୋଟାଏ ସମାଧାନ ମିଳିଛି, ଅକୂଳ ଦରିଆରେ କୂଳ ମିଳିଛି । ଆଜି ତେଣୁ କ୍ଷୁଧାର ତାଡ଼ନା ନାହିଁ, କ୍ଲାନ୍ତିର ଜଡ଼ତା ନାହିଁ । ହତାଶାର ଅବସାଦ ନାହିଁ ।

ରାଜୁ ସହରର ସମ୍ପର୍କୀୟ ଜଣେ ମଉସାଙ୍କ ଘରେ ରୁହେ । ମଉସା ଘର, କେଜାଣେ ତଥାପି ଆଉରି ଦୁଇ ମାଇଲ ବାଟ ।

ପୋଲିସ କର୍ତ୍ତୃପକ୍ଷ କହନ୍ତି, "ସାଇକେଲ ଚୋରିଠାରୁ ବଳି ସହଜ ଅନ୍ୟ ଚୋରି ନାହିଁ । କିନ୍ତୁ ସାଇକେଲ ଚୋର ଧରିବା ଠାରୁ ବଳି ଅନ୍ୟ ଦୁଃସାଧ୍ୟ ଚୋରଧରା ନାହିଁ !"

ବୁଢ଼ା ଚପରାସୀ ଖରାବେଳେ 'ଧାର୍ମିକଭାଉଜ' ପଢ଼ୁ ପଢ଼ୁ ଢୁଳାଏ, ସେତିକବେଳେ ଅକ୍ଲେଶରେ ସାଇକେଲ ଖଣ୍ଡେ ଖସାଇ ନେଇହେବ । କିନ୍ତୁ ସାହସ ଦରକାର । ଦୂର୍ ! ଭୀରୁ, ଅପଦାର୍ଥ, କାପୁରୁଷ ! ରାଜୁ ପାଦର କାନ୍‌ଭସ୍ ଯୋତାରେ, ରାସ୍ତାରେ ପଡ଼ିଥିବା ଗୋଟାଏ ଗେଙ୍ଗୁଟିକୁ କିକ୍ ମାରିଲା ।

ଏଇ, ଆଗରେ ଦେଖାଯାଏ ମଉସାଘର ବସା···ମାଟିକାନ୍ଥ ଓ ଖପରଛପର ଘର । ଘରର ଏକ ବଡ଼ ସମ୍ପଦ ଦୁଆରମୁହଁ ସଜନା ଗଛ । ତେଣୁ ଦୁଇଖଣ୍ଡି "ସାତଫୁଟ ବାଇ ପାଞ୍ଚଫୁଟ" ମାଟି ଘରକୁ ମାସିକ ଭଡ଼ା ବାରଟଙ୍କା । ସଜନା ଗଛ ମାସର ଅଧେଅଧି ପରିବା ଖର୍ଚ୍ଚ ବଞ୍ଚାଏ । ମଉସାଙ୍କର ଛ' ପିଲା—ଚାରି ପୁଅ, ଦୁଇ ଝିଅଙ୍କ ବୟସ ଯଥାକ୍ରମେ ପନ୍ଦର ଓ ଆଠ । ଚାରି ପୁଅ ଇସ୍କୁଲ ଯାଆନ୍ତି । ସକାଳୁ ଝିଅମାନେ ଉଠି ବାସିକାମ କଲାବେଳେ, ପୁଅମାନେ ସ୍କୁଲ ପାଠ ପଢ଼ିଲାବେଳେ, ମଉସା ସଜନାଗଛ ମୂଳେ ଖଣ୍ଡେ ଠେଙ୍ଗା ଆଉ ଗୋଟିଏ କିରାସିନ ଟିଣ ଧରି ବସନ୍ତି ମାଙ୍କଡ଼ ଘଉଡ଼ାଇବା ପାଇଁ । ମଉସା ଅଫିସ ଗଲେ ଝିଅମାନେ ଖରାବେଳ ସାରା ପାଳିକରି ଗଛ ଜଗନ୍ତି । ତା'ପରେ ପୁଅମାନେ ସ୍କୁଲରୁ ଫେରିଲେ ଗଛ ଜଗିବା ଭାର ସେମାନଙ୍କ ଉପରେ ପଡ଼େ । ରାଜୁ ସଜନା ଗଛ ଜଗେ ନାହିଁ ବୋଲି ମାଉସୀଙ୍କ ବକ ଦୃଷ୍ଟିରେ ବହୁଥର ପଡ଼ିଛି । ମଉସା ଗୋଟିଏ ସରକାରୀ ଅଫିସରେ ଲୋଅର ଡିଭିଜନ କିରାଣି । ଅପର ଡିଭିଜନ କିରାଣି ପଦକୁ ବର୍ଷେ ତଳେ ବହୁ ମାନସିକ ଯାଚି, ବହୁ ସ୍ତବ ସ୍ତୁତି କରି ଉଠିଥିଲେ । କିନ୍ତୁ 'ଇନ୍‌ଏଫିସିଏନ୍‌ସି' ଅର୍ଥାତ୍ କାର୍ଯ୍ୟରେ ଅପାରଗତା ହେତୁ ପୁଣି 'ପୁନର୍ମୂଷିକୋଭବ' ଦଶା ଘଟିଛି । ଦରମା ୭° ଟଙ୍କା । ଆଠ ପ୍ରାଣୀ କୁଟୁମ୍ବ । ସେଥିରେ ଝିଅମାନେ ବଢ଼ୁଛନ୍ତି । ତା' ଉପରେ ରାଜୁ ।

···ମଉସା ଅଫିସରୁ ଫେରୁଛନ୍ତି । ବାଁ ହାତରେ ଦୁଇବୁନ୍ଦା ଖଡ଼ା ଆଉ ଚେନାଏ କଖାରୁ । ଡାହାଣ କାଖତଳେ ଛତା । ମଉସା ଘରଭିତରକୁ ମୁଣ୍ଡ ନୁଆଁଇ ପଶିଗଲେ । ରାଜୁ ଦାଣ୍ଡ ଦୁଆରେ କେଇ ମିନିଟ୍ ଠିଆ ହୋଇ ଭିତରେ ପଶିବା ପାଇଁ ମନେମନେ ନିଜକୁ ପ୍ରସ୍ତୁତ କରିବାରେ ଲାଗି ପଡ଼ିଲା ।

ଭିତରୁ ମାଉସୀଙ୍କ ପାଟି ସପ୍ତମକୁ ଉଠିଥିଲା ।

"ଦେଖ, ମୁଁ ଝିଅଙ୍କୁ ବରାବର ତାଗଦା କରୁଚି, ମା'ଲେ, ଦନ୍ତା ମାଙ୍କଡ଼ଗୁଡ଼ା ପଲ ପଲ ଆସୁଛନ୍ତି । ସଜନା ଚଢ଼େରେ କଷି କଷି ଛୁଇଁ ଲଦି ହୋଇଛି । ନିଘା ନକଲେ ସବୁ ସଫା କରିଦେବେ । ତେଉଁକି ମୋ ଆଖିରେ ଟିକିଏ ନିଦ ଘାରିବାରୁ ଝିଅମଣି ମୁଣ୍ଡ କୁଣ୍ଡାରେ ବସିଗଲେ । ଏଣେ ମାଙ୍କଡ଼ ଆସି ପଣେ ଛୁଇଁ ସଫା କରିଦେଲା । ଆସି ତ ବୁଢ଼ୀ ହେଲାଣି ! ବାପ ତ ବର ବୁଝିଲ ନାହିଁ । କୋଉ ନାଗର ପାଇଁ ମୁଣ୍ଡଖୋସା ପାରୁଥିଲୁ ଶୁଣେ ? ମରଣ ହେଲା ନାହିଁ ! ସେ

ଯୋଗନକିଆ ରାଜୁଆ ଆସୁ ଆଜ ! ଝଣ୍ଡ ଆ, କୋଢ଼, ଏଠି ବାପ ସାଇଥ ରଖିଥିଲା ପର ବସିଛୁ ।"

ମଉସା ପଦାକୁ ବାହାର ଆଖି ଦେଖିଲେ, ରାଜୁ ବାହାରେ ଘର ଭିତରକୁ ଅନାଇଁ ଠିଆ ହୋଇଛୁ । ଲଜରେ ମଉସା ରାଜୁ ସାମନାକୁ ଆସି ପାରିଲେ ନାହିଁ । ଭିତରେ ଚପା କଣ୍ଠରେ ମାଉସୀଙ୍କୁ କହିବା ଶୁଭିଲା···"ଚୁପ୍, ଚୁପ୍, ରାଜୁ ବାହାରେ ଠିଆ ହୋଇଛୁ । କର୍ମ ଅବଳକୁ ତମ ଦୁଆରେ ପଡ଼ିଛୁ ବୋଲି ତାକୁ ଆମେ ଏମିତ କହିବା ?"

ସାଇକଲ ଷ୍ଟାଣ୍ଡର ଜନୁଆଳ ଚପରାସୀର ମୁହଁ ପର ମଉସାଙ୍କ ମୁହଁ । ପଚିଶ-ବର୍ଷ ବୟସରେ ଅଠପ୍ରାଣୀ କୁଟୁମ୍ବକୁ; ମାସରେ ସତୁରି ଟଙ୍କା ଦରମା, ତାଙ୍କୁ ଶିଖେଇଛୁ ଧୈର୍ଯ୍ୟ ଓ ସହନଶୀଳତା, ପୁଣି ଅନ୍ୟ ଦୁର୍ଗତ ପ୍ରତି ସହାନୁଭୂତି ।

ରାଜୁ ଘର ଭିତରକୁ ପଶିଗଲା ।

ମଉସା ପଚାରିଲେ—"ଗ୍ରିକଣ ହେଲା ରାଜୁ ? ଆଜ ଇଣ୍ଟରଭ୍ୟୁ ଥିଲା ପରା ?"

ରାଜୁ କହିଲା—"ହଁ, ଏ ଦୁଇ ତିନଦିନ ଭିତରେ ସବୁ ବୋଧହୁଏ ଠିକ୍ ହୋଇଯିବ ।"

ଭୋକରେ ପେଟ ଜଳିଲାଣି । ସଜନାଗଛ ଡାଳରେ ଗୋଟାଏ କାଉ କା କା ହେଉଛୁ । ମାଉସୀଙ୍କୁ ସନ୍ତୁଷ୍ଟ କରିବାପାଇଁ ରାଜୁ ଠେଙ୍ଗାଟା ଧରି ସଜନାଗଛ ମୂଳେ ବୁଦ ବୁଦ କହିଲା···"ଯାଃ ଯାଃ ସଜନା ଫୁଲଗୁଡ଼ା ଝଡ଼ି ଦେଉଛୁ । କେତେ କଷି ଧରିଥାନ୍ତା !"

ଘର ଭିତରୁ କାନ୍ଦ କାନ୍ଦ ମାଉସୀଙ୍କ ସେବତାର କୋହ ଉଠୁଛୁ । ମଉସା ମାଉସୀଙ୍କୁ ସନ୍ତୁଷ୍ଟ କରିବାପାଇଁ ରାଜୁକୁ ଅନ୍ୟ ବ୍ୟବସ୍ଥା ଦେଖିବାପାଇଁ ପରୋକ୍ଷ ସୂଚନା ଦେଇ କହିଲେ—"ସତୁରି ଟଙ୍କା ଦରମା, ଖାଇବାକୁ ଅଠପ୍ରାଣୀ କୁଟୁମ୍ବ । ସେଥିରେ ଖଡ଼ା ବୁଦାକ ଦୁଇପଇସା । କଖାରୁ ଚେନାକ ଅଣାଏ !"

କନ୍ତୁ ମଉସାଙ୍କୁ କଣ କହି ସାନ୍ତ୍ୱନା ଦେଇ ହେବ ରାଜୁ ଭାବି ପାରିଲା ନାହିଁ । ଖଡ଼ାର ଦୁର୍ମୂଲ୍ୟତା ସମ୍ବନ୍ଧରେ ମଉସାଙ୍କୁ ସାନ୍ତ୍ୱନା ଦେବାପାଇଁ ରାଜୁ କହିଲା— "ଜାଣିଲେ ମଉସା, ଏ ଖଡ଼ା ପରିବାଟା ଆମେ ଯିନା ସବୁଠୁଁ ଶସ୍ତା ବୋଲି କହୁ, ନୋହିଲେ ବଳତ ହୋଟେଲମାନଙ୍କରେ ଏଇ ଖଡ଼ା 'ଆସ୍ପାରାଗସ୍' ନାମରେ ଅତି ଦୁର୍ମୂଲ୍ୟରେ ବିକ୍ରୀହୁଏ । ମୁଁ ଗୋଟାଏ ଇଂରାଜୀ ବହିରେ ପଢ଼ିଥିଲି ।"

ମାଉସୀ କହିଲେ—"ହଃ ଯିଏ ପୋଲ ଖାନ୍ତୁ, ତାଙ୍କୁ ଖଡ଼ା ବୁଦାକ ଦୁଇ ପଇସା ହେଲେ ବାଧିବ କାହିଁକ ?"

ବାସ୍ତବିକ ଭୁଲ ହୋଇ ଗଲା ତ ! ଏହାପରେ ମାଉସୀଙ୍କୁ ପୁଣି କପରି ସନ୍ତୁଷ୍ଟ

କଣ ହେବ, ରାଜୁ ଭାବି ପାରିଲା ନାହିଁ । ଗୋଟାଏ ଦଳା ମାଙ୍କଡ଼ କୁଆଡ଼ୁ ଆସିଲା କି !!

ତା ପରଦିନ……

ସାଇକଲ ଜଗୁଆଳି ଚପରାସୀ ନିର୍ଦ୍ଦିଷ୍ଟ ସ୍ଥାନରେ ବସି 'ଦାର୍ଢ୍ୟତାଭକ୍ତି' ପଢ଼ୁଛି । ବହିର ପୃଷ୍ଠାସବୁ ତେଲଚିକିଟା ଓ ଧୂଳିରେ ହଳଦିଆ ଦିଶିଲାଣି । ଅନେକ ସ୍ଥାନରେ ଛପା ସବୁ ଅଦୃଶ୍ୟ । ରାଜୁ ସେହିବାଟେ ଖଣ୍ଡିକାଶ ମାରି ଚାଲିଗଲା । କାଲି ଚପରାସୀ କାଶୁଥିଲା, ଆଜି ତେଣୁ ରାଜୁ ଆଗରୁ କାଶୁଛି ।

ସାଇକଲ ଜଗୁଆଳି ଚପରାସୀ ରାଜୁର ଖଣ୍ଡିକାଶ ଶୁଣି 'ଦାର୍ଢ୍ୟତାଭକ୍ତି'ର ତେଲଚିକିଟା ପୃଷ୍ଠା ଉପରୁ ଆଖି ଉଠାଇ ଅର୍ଥହୀନ ନିର୍ବୋଧ ଦୃଷ୍ଟିରେ ରାଜୁ ଆଡ଼େ ଚାହିଁଲା । ରାଜୁ ତା ଆଗରେ ଛାତି ଫୁଲାଇ, କାମିଜର ଦୁଇ କଲର ବେକ ଉପରକୁ ଉଠାଇ ଦର୍ପିତ ପାଦରେ ଚାଲିଗଲା । ସେ ଆଜି ଭୟହୀନ । କେଇ ପାହୁଣ୍ଡ ଯାଇଁ ରାଜୁ ପଛକୁ ଫେରି ଚାହିଁ ଦେଖିଲା, ସାଇକଲ ଜଗୁଆଳି ଚପରାସୀ ପୁଣି ଢୁଲାଇବା ପାଇଁ ଆରମ୍ଭ କରିଛି ।

ରାଜୁ ଦଣ୍ଡେ ପାଇଁ ଠିଆ ହୋଇଗଲା । ସେକ୍ରେଟାରିଏଟର ସଦର ଫାଟକରେ ଅବଶ୍ୟ ଜଣେ ବନ୍ଧୁକଧାରୀ ପୁଲିସ କନେଷ୍ଟବଲ ସିମେଣ୍ଟ ତିଆରି ମୂର୍ତ୍ତି ପରି ଠିଆ ହୋଇଛି । କିନ୍ତୁ ସାଇକଲ ଷ୍ଟାଣ୍ଡରୁ ସାଇକଲ ଗୋଟାଏ ଫିଟାଇନେବା କଣ ବା ଏମିତି ଦୁଃସାଧ୍ୟ ? ପୁଲିସ କର୍ତ୍ତୃପକ୍ଷ କହନ୍ତି—'ସାଇକଲ ଚୋରିଠାରୁ ବଳି ଅନ୍ୟ ସହଜ ଚୋରି ଆଉ ନାହିଁ ।' କିନ୍ତୁ ସାଇକଲ ଜଗୁଆଳି ଚପରାସୀର ଅବସ୍ଥା ତାପରେ କଣ ହେବ ? କୈଫିୟତ ମାଗିଲେ ସାଇକଲ ଜଗୁଆଳି-ଚପରାସୀ ଚାଳିଶା ଚଷମା ତଳୁ ନିର୍ବୋଧ ଆଖିରେ ଅନାଇ କେବଳ ଠିଆହୋଇ ରହିବ ସିନା ! "ଜବାବ ଦିଅ, ତୁମେ କଣ କରୁଥିଲ ?" 'ଆଜ୍ଞା, ମୁଁ ଦାର୍ଢ୍ୟତାଭକ୍ତି ପଢ଼ୁଥିଲି ।' 'ଆଚ୍ଛା ଯାଅ, ତୁମକୁ ଆଜି ଠାରୁ ଚାକିରିରୁ ବରଖାସ୍ତ କରାଗଲା, ଘରେ ଆଚ୍ଛା କରି ବସି ଏଣିକି ଦାର୍ଢ୍ୟତାଭକ୍ତି ପଢ଼ିବ ।' ସାଇକଲ ଜଗୁଆଳି ଚପରାସୀ କେତୋଟି ସନ୍ତାନର ଜନକ ? ଅର୍ଦ୍ଧ ଡଜନ ! ରାଜୁ ପୁଣିଥରେ ଫେରି ଚାହିଁଲା । ସାଇକଲ ଜଗୁଆଳି ଚପରାସୀ ଟୁଲ ଉପରେ ଗୋଟିଏ ଖୁଣ୍ଟ ଦେହରେ ଆଉଜି ବସି ଢୁଲାଇ ପଡ଼ିଲାଣି । କୋଳରେ ତା'ର 'ଦାର୍ଢ୍ୟତାଭକ୍ତି' ଖଣ୍ଡ ମେଲା ହୋଇ ପଡ଼ିଛି । ଚଷମାଟି ଧୀରେ ଧୀରେ ନାକ ତଳକୁ ଖସି ଆସୁଛି ।

ମଣିଷକୁ ଶୋଷ କରେ ସତ । କିନ୍ତୁ ମଣିଷ ତ ତା' ବୋଲି ନର୍ଦ୍ଦମାର ପାଣି ପିଇବ ନାହିଁ ! ଚୋରି ! ଛି ଛି ! ରାଜୁ ରାସ୍ତା କଡ଼ର ସେଇ ବରଗଛ ମୂଳକୁ ଫେରି ଆସିଲା । ପୁଣି ଘାସ ଡେମ୍ଫ ଛିଣ୍ଡାଇ ଚୋବାଇଲା । ପୁଣି ବିଡ଼ି ଟାଣିଲା ।

ଆଗକାଳେ ସବୁଦିନେ ଉପରଓଳି ବାରିଣ୍ଡାଡ଼ ଉପରେ ଅସ୍ତସୂର୍ଯ୍ୟର ଶେଷ ଆଲୋକ ମଣ୍ଡଳ ପଡ଼ି ଅସିଲାବେଳକୁ ବ୍ୟୁଣାଲୀରେ ପିଲାମାନେ ଚାଣକ୍ୟ ଶ୍ଳୋକ ବଡ଼ ପାଟିରେ ବୋଲୁଥିଲେ ।

"ସ୍ୱଦେଶେ ପୂଜ୍ୟତେ ରାଜା,
ବିଦ୍ୱାନ୍ ସର୍ବତ୍ର ପୂଜ୍ୟତେ ।
ମାତୃବତ୍ ପରଦାରେଷୁ,
ପରଦ୍ରବ୍ୟେଷୁ ଲୋଷ୍ଟ୍ରବତ୍ ।"

ରାଜୁ ବସିବା ସ୍ଥାନରୁ ଉଠି ଠିଆ ହୋଇ ପଡ଼ିଲା । କାଲୁ ସାଇକେଲ ଜଗୁଆଳି ଚପରାସୀ କୈଫିୟତ ମଧ୍ୟ ଦେଇପାରେ, ସେ କେବଳ ପାଞ୍ଚ ମିନିଟ ପାଇଁ ପରିସ୍ରା କରି ଯାଇଥିଲା । ସେଆଡ଼ୁ ଫେରି ସେ ଗୋଟି ଗୋଟି କରି ସବୁ ସାଇକଲ ଥରେ ଦେଖି ଆସିଲା । ସେତେବେଳେ କେବଳ ଗୋଟିଏ ସାଇକଲ ଷ୍ଟାଣ୍ଡରେ ନ ଥିଲା । ସେ ଭାବିଲା···ବାବୁ ବୋଧହୁଏ ତାଙ୍କ ସାଇକଲ ଧରି ବୁଲିଗଲେଣି । ସେ କମିତ ଜାଣନ୍ତା, ପାଞ୍ଚ ମିନିଟ ଭିତରେ, ଆଖି ପିଛୁଡ଼ାକେ କିଏ ସାଇକେଲଟା ଧରି ଛୁ— ! ପୋଲିସ କର୍ତ୍ତୃପକ୍ଷ କହନ୍ତି—ସାଇକଲ ଷ୍ଟେରଠାରୁ ଅନ୍ୟ ସହଜ ଷ୍ଟେଲ ନାହିଁ, ପୁଣି ସାଇକଲ ଷ୍ଟେର ଧରିବାଠୁ ବଳି ଦୁଃସାଧ୍ୟ ଅନ୍ୟ କିଛୁ ନାହିଁ । ଚାଣକ୍ୟ ମେଘାସ୍ଥିନିସଙ୍କ ଅମଳର ବ୍ରାହ୍ମଣ ପଣ୍ଡିତ । ମେଘାସ୍ଥିନିସ୍ ଯେତେବେଳେ ଭାରତକୁ ଆସିଥିଲେ ସେତେବେଳେ ଲୋକେ କୁଆଡ଼େ ରାତିରେ ଘର ମେଲା କରି ଶୋଉଥିଲେ । ହୋଇପାରେ ଲୋକେ ଏତେ ଦରିଦ୍ର ଥିଲେ ଯେ, ଷ୍ଟେର ଘରେ ପଶି ଷ୍ଟେଲ କରିବାକୁ ସମୟର ଅପବ୍ୟୟ ବୋଲି ଭାବୁଥିଲେ । ଆଜି ଚାଣକ୍ୟ ଥିଲେ ଲେଖିଥାନ୍ତେ—

"ସ୍ୱଦେଶେ ପୂଜ୍ୟତେ ମନ୍ତ୍ରୀ, ଶଠ ସର୍ବତ୍ର ପୂଜ୍ୟତେ
ଦାରବତ୍ ସର୍ବନାରୀଷୁ, ପରଦ୍ରବ୍ୟେଷୁ ଅମୃତବତ୍ ।"

ରାଜୁ ପୁଣି ଥରେ ସେକ୍ରେଟେରିଏଟର ସାଇକଲ ଷ୍ଟାଣ୍ଡ ଆଡ଼େ ଫେରିଲା ।

ସାଇକେଲ ଜଗୁଆଳି ଚପରାସୀ, 'ଶେଡ୍' ଭିତରେ ଏପାଖ ସେପାଖ ହେଉଛୁ । ରାଜୁ ଚପରାସୀର ଦୃଷ୍ଟି ଏଡ଼ିବାପାଇଁ ପାଚେରି ମୂଳରେ ପରିସ୍ରା କରି ବସିଗଲା । କାଲୁ ବସୁ ବସୁ ହଠାତ୍ ତାର ମନେ ପଡ଼ିଗଲା ସରକାରୀ ସେକ୍ରେଟେରିଏଟ୍ ହତାରେ ଏଠି ସେଠି ପରିସ୍ରା କଲେ କେଜାଣି ପାଞ୍ଚଅଣାରେ ପୁଲିସ ଧରିପାରେ । ଲୁଗାରେ କେଉଁବାଟୁ ପରିସ୍ରା ପଡ଼ିଗଲା ! ହୁଡ଼୍···ସକାଳୁ ମାଉସୀ ମୁଣ୍ଡ ବୁଲି ଉଠିଲେ ଖାଇଲା-ପାନରୁ ଭାତ ଛଡ଼ିବ ପରା !

ରାଜୁ ବରଗଛ ମୂଳକୁ ଫେରି ଆସି ପୁଣି କିଛି ସମୟ ପରେ ସେହି ସାଇକଲ,

ଷ୍ଟାଣ୍ଡ ପାଖକୁ ଫେରି ଆସିଲା । ସାଇକଲ ଜଗୁଆଳ ଚପରାସୀ ଗୋଟିଏ ଟିଣ ଗ୍ଲାସରେ କୋଉଠୁ ଚା' ଆଣି ପିଉଛି । ବଲେଇ ମୂଷା ଉପରେ ଝାମ୍ପ ଦେବା ପୂର୍ବରୁ ଥରେ ଅତି ସନ୍ତର୍ପଣରେ ଚାରିକଡ଼ ପ୍ରଦକ୍ଷିଣ କରି ଆସିବା ପରି, ରାଜୁ ସାଇକଲ ଷ୍ଟାଣ୍ଡରେ ଶେଡ୍ ପଛଆଡ଼େ ଥରେ ବୁଲିଗଲା । ଅଧିକାଂଶ ସାଇକେଲରେ ତାଲା ନ ପକାଇ ସେମାନେ କଣ ଶୁଉଥିବେ ? ଏଇ ଗୋଟାଏ ଗ୍ରୀନ୍ ମଡ଼େଲ ରାଲେ । ନା…ଏଟା କେଉଁ କାଳର ପାଲୁଆ ଫିଲିପ୍‌ସ । ସିଟ୍‌ଟା ଫାଲେ ଚିରି ଯାଇଛି, ବେଲକାପ୍ ନାହିଁ । ପାଡ଼ଲ କନାଧଡ଼ିରେ ବନ୍ଧା ହୋଇ ଯୋଡ଼ା ଯାଇଛି । କେଉଁ ଅନ୍ତଃପୁରର ପଥଶ୍ରାନ୍ତ ସାଥୀ ! ଏହାକୁ ନେଲେ ମୁହଁ ପୋଡ଼ିବ ସିନା, ପେଟ ପୂରିବ ନାହିଁ । ଏ ସାଇକଲଟା ମନ୍ଦ ନୁହେଁ । ଟାଯାରଗୁଡ଼ା ଅବଶ୍ୟ ଘୋର ସିଲପଟ୍ ହୋଇଗଲଣି ।

ରାଜୁ କାହାର ଅସ୍ପଷ୍ଟ କଣ୍ଠସ୍ୱର ଶୁଣି ଚମକି ପଡ଼ିଲା । ଅଳ୍ପ ଦୂରରେ ସେକ୍ରେଟେରିଏଟର ଗଛପାଖ କାନ୍ଥରେ ସିଡ଼ି ବାନ୍ଧି ଜଣେ ମିସ୍ତ୍ରୀ କାନ୍ଥରେ ଚୂନ ଲିପୁଛି । ଶିଡ଼ିର କେଇଟା ପାହ୍ୱାଅ ଉପରେ ଉଠି ଗୋଟିଏ ମୂଲିଆଣୀ ବାଲ୍‌ଟିରେ ଚୂନ ଧରି ଠିଆ ହୋଇଛି । ମୂଲିଆଣୀ ଟୋକି, ଖୂନ୍ଦାଖୂନ୍ଦି ହୋଇ କାଳିଆ ମଚ୍ ମଚ୍ ଦେହର ଗଢ଼ଣ ! ବାଲ୍‌ଟି ଟେକୁ ଟେକୁ ତା' ଗୁଡରୁ ପିନ୍ଧା ନାଲିକନ୍ତା କାନଟା ଖସି ପଡ଼ୁଛି । ସେଇଆଡ଼େ ଚାହିଁ ଟୋକା ରାଜମିସ୍ତ୍ରୀ ମଜାଗପ ଯୋଡ଼ି ଦେଇଚ, ଦୂର୍…ଯେତେ ସବୁ ଅପଦାର୍ଥ ଏଇଠି ! ମୂର୍ଖ ଏଠି ଶିଡ଼ି ଉପରେ ଚଢ଼ି ବସ୍ତ୍ରହରଣ ପାଲା କରୁଛି । ଆଉ କେଉଁଠି ଜାଗା ମିଳିଲା ନାହିଁ ପରି ! ଯାଃ,…ଆଜି ଦିନଟା ମାଟି ହେଲା । ଜଣେ ଜଣେ ଆସି ସାଇକଲ ଷ୍ଟାଣ୍ଡରୁ ନବା ଆରମ୍ଭ କଲେଣି । ରାଜୁ ସେହି ରାଜମିସ୍ତ୍ରୀ ଆଉ ମୂଲିଆଣୀ ଆଡ଼େ ଚାହିଁ ଗୋଟିଏ ଦୀର୍ଘଶ୍ୱାସ ପକାଇ ଫେରି ଆସିଲା ।

ମାତ୍ର ତା' ପରଦିନ……

ରାଜୁ ଥରେ ସାଇକେଲ ଷ୍ଟାଣ୍ଡ ଆଡ଼ୁ ବୁଲି ଆସି, ସେଇ ବରଗଛ ମୂଳେ ବସି, ଚୋରର ନୈତିକ ଦରଣିତ ମନେମନେ ଆଲୋଚନା କରୁଅଛି । ସାଇକେଲ ଜଗୁଆଳ—ଚପରାସୀ ତା'ର ଅଭ୍ୟସ୍ତ ସ୍ଥାନରେ ବସି 'ଦାଣ୍ଡ୍ୟତାଭକ୍ତ' ପଢୁଛି । ପରସ୍ୱ ଅପହରଣ କରିବାକୁ ଚୋରି କୁହାଯାଏ । ବେଶ୍ ! ଏଟା କନ୍ଦନୀୟ କଥା । କିଏ ମନା କରୁଛି ? ନିଜସ୍ୱ ନ ଥିଲେ ପରସ୍ୱ ଅପହରଣ କରାଯାଏ । ହଉ, ହେଲା । ସମାଜରେ ସମସ୍ତଙ୍କର ନିଜସ୍ୱ ନ ରହିବାରୁ ସେମାନେ ପରସ୍ୱ ଅପହରଣ କରିବା ପାଇଁ ବାଧ୍ୟ ହେଉଛନ୍ତି, କିନ୍ତୁ ସମସ୍ତେ ନିଜସ୍ୱରୁ ବଞ୍ଚିତ ହେଉଛନ୍ତି କାହିଁକି ? ହଃ… କଥା ସେଇଆ ନୁହେଁ ତ ଆଉ କଣ । ତା' ହେଲେ ଯେଉଁମାନେ ସମାଜରେ ବହୁଲୋକଙ୍କୁ ସେମାନଙ୍କ ନିଜସ୍ୱରୁ ବଞ୍ଚିତ କରୁଛନ୍ତି, ସେମାନେ ଚୋର ନୁହନ୍ତି କି ?

କିନ୍ତୁ ସେ ଷ୍ଟେଶ ହେଲା "ଉଦ୍‌ଯୋଗୀନ ପୁରୁଷ ସିଂହ ମୁପୈତ ଲକ୍ଷ୍ମୀ !" ସେ ଷ୍ଟେଶ ଆଇନସମ୍ମତ ଷ୍ଟେଶ ! ଧନ ଦ' ପହରେ, ବଚ୍ ଦାଣ୍ଡରେ, ଲୋକଙ୍କ ଆଖିରେ ଧୂଳି ଫିଙ୍ଗି ଲୁଟ୍ କରିବା ହେଲା ବାହୁବଳ, ବୁଦ୍ଧି ବଳରେ ଉପାର୍ଜନ । କିନ୍ତୁ ଘରେ ସମସ୍ତେ ଶୋଇଥିଲା ବେଳେ କାହା ପିଢ଼ାରୁ କଣାଟାଏ ଛଣ୍ଡାଇ ନେଲେ ସେ ହେଲା ପେଟଚଳିଆ ଷ୍ଟେଶ ! ମାଙ୍କଡ଼ କଲେ ଆପତ୍ତି ନାହିଁ ! କିନ୍ତୁ ମଣିଷ କଲେ ଥାନାକୁ ଦଉଡ଼ । ମଣିଷ ତ ଏକ ଲାଙ୍ଗୁଡ଼ହୀନ ମର୍କଟ ! ହଉ, ନେଲା ବା କଣାଟାଏ ! କିନ୍ତୁ କଣାରୁ ଷ୍ଟେଶ କଲେ ବି ଛ'ମାସ ଜେଲ ! ଷ୍ଟେଶ କରିବା ପରେ ଷ୍ଟେର ଜେଲ ଯାଏ । କିନ୍ତୁ ନେତାମାନେ, ସମାଜପତିମାନେ ଆଗେ ଜେଲ୍ ଯାଇ ପରେ ଷ୍ଟେଶ କରନ୍ତି ! ରାଜୁ ଷ୍ଟେଶ କରିବ ! ଷ୍ଟେଶ କରିବାଟା ଅବଶ୍ୟ ଖରାପ କଥା ! କିନ୍ତୁ ନେଇ ଆଣି ଥୋଇ ଜାଣିଲେ ଷ୍ଟେଶ ବିଦ୍ୟାଟା ଭଲ ବୋଲି, ପୁଣି ତ ଶାସ୍ତ୍ରବାକ୍ୟ ଅଛି !

ରାଜୁ ଦ୍ରୁତପାଦରେ ଉଠି ପୁଣି ସାଇକେଲ ଷ୍ଟାଣ୍ଡ ଆଡ଼େ ଗ୍ଲଲା । ସାଇକେଲ ଜଗୁଆଳ ଚପରାସୀ ଢୁଳାଉଛି । "ଶେଡ୍' 'ପଛ ପାଖରୁ ରାଜୁ ଗୋଟାଏ ସାଇକେଲ ଅତି ସନ୍ତର୍ପଣରେ କାଢ଼ି ଆଣିଲା । ଦୁଇ ଆଖି ଆଗରେ ଧନର ଅଳୁଅ ହଠାତ୍ ଝାପ୍‌ସା ହୋଇ ଯାଇଛି । ଦେହର ସର୍ବାଙ୍ଗ ଏକ ଅସ୍ୱାଭାବିକ ଉତ୍ତେଜନାରେ ଥର-ଥର ହେଉଛି । ରାଜୁ ସାଇକେଲ ଉପରେ କୁଦିପଡ଼ି, ଝଡ଼ ବେଗରେ ସାଇକେଲ ଚଲାଇ ପଳାଇଲା ।

ସାଇକେଲ୍ ଜଗୁଆଳ ଢୁଳାଉଛି ।

ସବୁ ରାସ୍ତା ସମାନ । ରାଜୁ ଅପେକ୍ଷାକୃତ ଗୋଟାଏ ଜନବିରଳ ରାସ୍ତା ଧରି ଗ୍ଲଲା । ପିଚୁ ରାସ୍ତା ଉପରେ ସାଇକେଲ ଟାୟାର ଘଷିହୋଇ କୁଞ୍ଚ ଅଜଗର ପରି ସାଇଁ ସାଇଁ ଗର୍ଜୁଛି । ମଧ୍ୟାହ୍ନର ଖରା ରାସ୍ତା ଉପରେ ଚକ୍ ଚକ୍ କରୁଛି । ଏଇ-ଯାଃ ! ସାଇକେଲ୍‌ଟା ଗୋଟାଏ କାଠ ଦେହରେ ଧକ୍‌କା ଲଗିଲା । ରାଜୁ ପଛକୁ ଫେରି ଗ୍ହିଁଲା, କେହି ନାହିଁ । ଦୂରରେ ଗୋଟାଏ ଶଗଡ଼ ଆସୁଛି । ସ୍ୱସ୍ତିର ଦୀର୍ଘଶ୍ୱାସ ପକାଇ ରାଜୁ ପୁଣି ସାଇକେଲ୍ ଉପରେ ଉଠିଲା । ବାଲାନ୍‌ସ ରହୁ ନାହିଁ । ଏଇ ଗୋଟାଏ ଶକ୍‌ସା ଦେହରେ ଧକ୍‌କା ଲଗିଥାନ୍ତା ପରା ।

..."କଣ ସାଇକେଲ୍‌ରେ ବସିଚ ବୋଲି ଆଖିରେ ମଣିଷ ଦେଖାଯାଉ ନାହାନ୍ତି ପରା ?"

ରାସ୍ତାରେ ଯାଉଥିବା ଜଣେ ଲୋକ ଦେହରେ ସାଇକେଲ୍‌ର ହ୍ୟାଣ୍ଡେଲ୍‌ଟା ବାଜିଗଲା । "ମାଫ୍ କରିବେ ।"

ପୁଲିସ ବୁଲିଗଲି ବାଜିଲା ।

ରାଜୁ ଗୁଡରୁ ଯେମିତି ଅଡଡ଼ା ଖସିଲା । ଟ୍ରାଫିକ୍ ପୁଲିସ ଛକ ଉପରେ ଠିଆ ହୋଇ ଦୁଇ ହାତରେ ଭରତନାଟ୍ୟମ୍‌ର ମୁଦ୍ରା ଦେଖାଉଛି—ସାମନାର ରାସ୍ତା ବନ୍ଦ । ମଟର, ଟ୍ରକ୍, ବସ୍, ଗୋଟିକ ପରେ ଗୋଟିଏ ହୋଇ ଟ୍ରାଫିକ୍ କନେଷ୍ଟବଲକୁ ଦକ୍ଷିଣ ପାଖରେ କଟାଇ ଛୁଟି ଚାଲିଛି । ରାଜୁ ରାସ୍ତାକଡ଼ରେ ସାଇକେଲରୁ ଓହ୍ଲେଇ ପଡ଼ିଲା । ପଛଆଡ଼ୁ ଦୁଇଜଣ ପୁଲିସ କନେଷ୍ଟବଲ ସାଇକେଲରେ ଆସି ରାଜୁ ପାଖରେ ଓହ୍ଲେଇ ପଡ଼ିଲେ । ରାଜୁର ଆଖି ଆଗରେ ଦିନର ଆଲୁଅ ହଠାତ୍ ଅନ୍ଧାର ହୋଇଗଲା । ଜଣେ କନେଷ୍ଟବଲ ସାଇକେଲରୁ ଓହ୍ଲାଇ ପଡ଼ିଲା । ଅନ୍ୟ ଜଣକ ସାଇକେଲରୁ ଓହ୍ଲାଉ ଓହ୍ଲାଉ ରାଜୁ କାନ୍ଧରେ ହାତ ପକାଇ ଦେଲା । ରଙ୍ଗନଆଁ କଏ ଯେପରି ରାଜୁ ଦେହରେ ଓଳାଡ଼ି ଦେଲା । ରାଜୁ ସାଇକେଲ ଗୁଣ୍ଡ ତଳେ ବସି ପଡ଼ୁ ପଡ଼ୁ ଟ୍ରାଫିକ୍‌ର ସଙ୍କେତ ବଦଳିଗଲା । ପୁଲିସ କନେଷ୍ଟବଲ ଦୁଇ-ଜଣ ପୁଣି ସାଇକେଲରେ ଉଠି ଚାଲିଗଲେ । ରାଜୁ ସେଇଠି ସାଇକେଲଟା ଗୋଟିଏ ଇଲେକଟ୍ରିକ ବତୀ ଖୁଣ୍ଟରେ ଡେରି ଦେଇ ଦଣ୍ଡେ ବସି ପଡ଼ିଲା ।

ସନ୍ଧ୍ୟା...

ସହରତଳିରେ ଗୋଟିଏ ଚା' ଦୋକାନ ।

ରାଜୁ ରାସ୍ତା ଉପରେ ଖଣ୍ଡେ ବେଞ୍ଚ ଉପରେ ବସି ଚା' ପିଉଥିଲା । ସାମନା ବେଞ୍ଚ ଉପରେ ଦୁଇଜଣ ବସି ଗପ ଯୋଡ଼ି ଦେଇଥିଲେ—ବସ୍ତି ଚା' ଦୋକାନର ଦୈନନ୍ଦିନ ମାମୁଲି ଚୁଲିଖଟି ଗପ । ବେଳେ ବେଳେ ଚା' ଦୋକାନୀ ମଧ୍ୟ ସେ ଗପରେ ମିଶି ଯାଉଥିଲା । ରାସ୍ତାରେ ଖବରକାଗଜର ହକର ସନ୍ଧ୍ୟାସଂସ୍କରଣ ଖବର-କାଗଜରୁ ଗୋଟାଏ ଶିରୋନାମା ଡାକି ଡାକି ଚାଲିଗଲା..."ଦିନ ଦି' ପହରେ ସରକାରୀ ସେକ୍ରେଟେରିଏଟ୍ ହତାରୁ ସାଇକେଲ୍‌ଚୋର ।" ରାଜୁ କମ୍ପିତ ହାତରେ ହାତରେ ଖଣ୍ଡେ ଖବରକାଗଜ କିଣିଲା । ବେଞ୍ଚ ଉପରେ ଅଧାପିଆ ଚା' ଗ୍ଲାସ ଥଣ୍ଡା ହୋଇଗଲା । ଅନ୍ଧାର ଭିତରେ ଆଉ ଜଣେ କୁଆଡ଼ୁ ଆସି, ରାଜୁ ପାଖରେ, ବେଞ୍ଚ ଉପରେ, କପେ ଚା' ପାଇଁ ବସି ପଡ଼ିଲା । ଲୋକଟା ସ୍ଥାନୀୟ ବାସିନ୍ଦା ନୁହେଁ ନିଶ୍ଚୟ, ନୋହିଲେ ଏକା ସମ୍ଭାଷଣରେ ଖାଲି କପେ ଚା' ମାଗିବା—ଏସବୁ ବସ୍ତି ଚା' ଦୋକାନର ରୀତି ନୁହେଁ । ଲୋକଟା ଗୁଇନ୍ଦା ନୁହେଁ ତ ! ଏଇ ଯେ, କଣେଇ କଣେଇ ବେଳେ ବେଳେ ଚାହୁଁଛି କାହିଁକି ? ରାଜୁ ନିଜର ନିର୍ଭର ଅନାସକ୍ତ ଦେଖେଇ ହେବାପାଇଁ ଖବରକାଗଜ ପଢ଼ିଲା । "ଆଜି ଦିନ ଘଣ୍ଟା ବେଳେ ପୁରୁଣା ସେକ୍ରେଟେରିଏଟ୍ ହତାର ସାଇକେଲ୍ ଷ୍ଟାଣ୍ଡରୁ ଗୋଟାଏ ସାଇକେଲ୍ ଚୋରି ହୋଇ

ଯାଇଅଛୁ । ସାଇକେଲଟି ସହରର ଗୋଟିଏ ସାଇକେଲ୍ ଦୋକାନରେ ପରେ ମିଳିଅଛୁ । ଦୋକାନୀ କହେ—ସାଇକେଲ୍‌ଟି ଖର୍ଚ୍ଚ ହୋଇ ନାହିଁ, ବନ୍ଧକ ପଡ଼ିଅଛୁ । ଯେ ବନ୍ଧକ ରଖିଯାଇଛୁ, ସେ ଚନ୍ଧ୍ରାଲୋକ ହେଲେହେଁ ଦୋକାନୀ ତା'ର ନାମ ଠିକ୍‌ଣା ଦେଇପାରୁନାହିଁ । ଦୋକାନୀ କହେ, ଗତ କେତେବର୍ଷ ସେ ଲୋକଟି କଲେଜ୍ ଦିବା ବାଟରେ ତା' ଦୋକାନରେ ଅନେକଥର ସାଇକେଲ୍‌ରେ ପମ୍ପ୍ ଦେଉଥିଲା; ଲିକ୍ ହେଲେ ପ୍ୟାଚ୍ ପକାଉଥିଲା । ତିରିଶି ଟଙ୍କାରେ ସେ ସାଇକେଲ୍ ବନ୍ଧା ରଖି ଯାଇଅଛୁ । ଲୋକଟା ଡେଙ୍ଗା; ବାଁ ଆଖି ଭ୍ରୂଲତା ଉପରେ ଗୋଟାଏ ଗହ୍ୱାର କଟା ଦାଗ ଅଛୁ । ଏହା ଛଡ଼ା ତା' ସମ୍ବନ୍ଧରେ ସାଇକେଲ୍ ଦୋକାନୀଠାରୁ ଅନ୍ୟ କୌଣସି ବିବରଣୀ ମିଳି ନାହିଁ । ଚୋରି ସାଇକେଲ୍ ପୁଲିସ ଜବତ କରିଅଛୁ ।"

ନା, ଏଠାରେ ଆଉ ମୁହୂର୍ତ୍ତେ ରହିଲେ ସର୍ବନାଶ ! ରାଜୁ ମୁଣ୍ଡର କହରା ଲମ୍ବବାଳ ବାଁ ଆଖି ଭ୍ରୂଲତା ଉପରକୁ ଅବିନ୍ୟସ୍ତ କରି ଟାଣି ଆଣିଲା ।

ପକେଟରେ ଚାରିଖଣ୍ଡ ଦଶଟଙ୍କିଆ ନୋଟ୍ ଖସ୍ ଖସ୍ ହେଉଅଛୁ । ଚା'ପଇସା ଦେବାପାଇଁ ଖୁଚୁରା ନାହିଁ । ବାଧ ହୋଇ ରାଜୁ ଦଶଟଙ୍କିଆ ନୋଟ୍ ଖଣ୍ଡେ କାଢ଼ି ଦୋକାନୀକୁ ଦେଲା । ରାଜୁ ପକେଟରୁ ନୋଟ୍ କାଢ଼ିଲା ବେଳେ ତା' ପାଖର ଲୋକଟା କ୍ଷୁଧାର୍ତ୍ତ ଶ୍ୟେନର ଦୃଷ୍ଟିରେ ସେଇଆଡ଼େ ଚାହିଁ ଦେଖିଲା କାହିଁକି ? କଳା ହାଡ଼ମାଳ ଚେହେରା, ଆଖି ଦୁଇଟା କୋରଡ଼ । ନାକ ତଳେ ଦୁଇପଟ ବାଘୁଆ ଚିରା । ଗାଲ୍ ହାଡ଼ସବୁ ବାହାରି ପଡ଼ିଛୁ ।

ଚା' ଦୋକାନୀ ଦଶଟଙ୍କିଆ ନୋଟ୍ ଖଣ୍ଡେ ଦେଖି ବିରକ୍ତ ହୋଇ ପାଟି କରି ଉଠିଲା···"ଛଅ ପଇସା କପ୍ ଚା'କୁ ଦଶଟଙ୍କିଆ ନୋଟ୍ ! ମୋ ପାଖରେ ରେଜା ହବ ନାହିଁ ହୋ, ପଇସା ଥିବ ତ ଦିଅ !"

ରାଜୁ ଶଙ୍କିତ କଣ୍ଠରେ କହିଲା—"ହେଉ, ଗୋଟାଏ ପ୍ୟାକେଟ୍ ସିଗାରେଟ ଦିଅ । ମୋ ପାଖରେ ତ ରେଜା ନାହିଁ ।"

ଦୋକାନୀର ପାଟି ଶୁଣି ସାମନା ବେଞ୍ଚ ଉପରେ ବସି ଗପ ଲଗାଇଥିବା ଦୁଇ-ଜଣ ଲୋକ ରାଜୁ ଆଡ଼େ ଚାହିଁଲେ ।

ସର୍ବନାଶ ! ଦୋକାନୀର ଏ ଚିତ୍କାର ଯେମିତି ଘୋଷଣା କରି ଦେଲା—ରାଜୁ ସାଇକେଲ୍ ଚୋର ଟଙ୍କା ଏଠି ଭଙ୍ଗାଉଛୁ । ନୋହିଲେ କପେ ଚା' ପାଇଁ ପକେଟରୁ ଦଶଟଙ୍କିଆ ନୋଟ ଖଣ୍ଡେ ଏ ବସ୍ତିରେ କେହି କଣ କାଢ଼ୁଛୁ କେବେ ?

ଚା' ଦୋକାନୀ ଗଣେଶ ହୋଇ ଟଙ୍କା ଭଙ୍ଗାଇବାକୁ ଉଠିଗଲା ।

ରାଜୁ ସାହସ ସଞ୍ଚୟ କରିବା ଉଦ୍ଦେଶ୍ୟରେ ନିଜେ ଖଣ୍ଡେ ସିଗାରେଟ ଓଠରେ ଲଗାଇ ଆଉ ଖଣ୍ଡେ ସିଗାରେଟ୍ ପାଖର ସେଇ ଅଜଣା ଲୋକଟାକୁ ବଢ଼ାଇ ଦେଲା। ଲୋକଟା ରାଜୁ ପାଖକୁ ଲାଗି ଆସି ସିଗାରେଟ୍‌ରେ ନିଆଁ ଲଗାଇଲା। ଲୋକଟା ସେଇଠି ହୁଏତ ରାଜୁକୁ ଗିରଫ କଲା ନିଶ୍ଚୟ, ନୋହିଲେ ଦେହରେ ଦେହ ଲଗାଇ ଏମିତି ବସନ୍ତା କାହିଁକି? ତା'ର ଆଶଙ୍କା, ରାଜୁ ହୁଏତ ଜାଣିପାରିଲେ ଧାଇଁ ପଳାଇବ। ରାଜୁ ତଥାପି ସାହସ ଧରି ନିଜର ନିର୍ଲିପ୍ତ ନିଃଶଙ୍କତା ଦେଖାଇବା ପାଇଁ ବଡ଼ପାଟିରେ ମନକୁ ମନ କହିଗଲା—"ହେ, ସରକାର ଦେଶର ରାଜସ୍ୱରୁ ଅଧେ କ ପା' ଭାଗ ଖର୍ଚ୍ଚ କରୁଛି ପୁଲିସ ବିଭାଗରେ! ଅଥଚ ଦେଖ, ଦିନ ଦି'ପହରେ ସହରରୁ ସାଇକେଲ୍ ଚାଲି ଯାଉଛି!"

ଚା' ଦୋକାନୀ ରାଜୁ ହାତରେ ଗୁଡ଼ାଏ ଖୁଚୁରା ପଇସା ଦେଇ କହିଲା—"ନିଅ ଗଛ, ବଟୀ ଦୁଇଅଣା ଗଲା।"

ରାଜୁ ଦଶଟଙ୍କାର ତମ୍ବା ଦୋପଇସି ଗଣି ବସିଲା ତଳକୁ ମୁଣ୍ଡ ନୁଆଁଇ। ସେ ଲୋକଟା ଚା' ପଇସା ଦୋକାନୀକୁ ଦେଇ ଉଠିଲା। କେଜାଣି ଗଲା ହୁଏତ ପୁଲିସ ଡାକି, ତାକୁ ଏଠାରେ ଗିରଫ କରିବା ପାଇଁ। ଏହି ଅବସରରେ ଏଠୁ ପଳେଇ ଗଲେ ରକ୍ଷା! ରାଜୁ ରେଜା ପଇସାତକ ଦୁଇ ପକେଟରେ ପୂରାଇ, ସେଠୁ ପଳାଇଲା।

ମ୍ୟୁନିସିପାଲିଟିର କିରୋସିନବତୀର ମ୍ଳାନ-ଆଲୋକିତ ସହରତଳିର ଧୂଳିଆ ରାସ୍ତା। ରାଜୁ ରାସ୍ତାର ଅନ୍ଧାରିଆ ଧାର ଧରି ଚାଲିଲା। ଉପରେ ଅନ୍ଧକାର ଆକାଶରେ ଲକ୍ଷ ଲକ୍ଷ ଜକ ଜକ ତାରା। ରାଜୁ ରାସ୍ତାକଡ଼ର ଗୋଟାଏ ପୋଲ ଉପରେ ବସି ପଡ଼ିଲା।

କିନ୍ତୁ ଏହାପରେ କୁଆଡ଼େ?

ଅନ୍ଧାରରେ ରାଜୁ ବାଁ ଆଖି ଭ୍ରୂଲତା ଉପର କଟାଦାଗ ଥରେ ଉଣ୍ଡାଳିଲା।

ସହରର ସବୁ ରାସ୍ତା ସମାନ। ରାଜୁ ଧୀରେ ଧୀରେ ଉଠି ଷ୍ଟେସନ ଆଡ଼େ ବାହାରିଲା। ରାତି ଅଧରେ କୌଣସି ଗୋଟାଏ ମେଲ୍‌ଗାଡ଼ି ଧରି ପାରିଲେ ରକ୍ଷା। ରାଜୁ ଆଉ ଖଣ୍ଡେ ସିଗାରେଟ୍ ପକେଟରୁ କାଢ଼ି, ସେଥିରେ ନିଆଁ ଲଗେଇଲା।

କିନ୍ତୁ ବାକୀ ଦୁଇଖଣ୍ଡ ଦଶଟଙ୍କିଆ ନୋଟ୍ ଗଲା କୁଆଡ଼େ?

ରାଜୁ ତନ୍ନ ତନ୍ନ କରି ଗୁଡ଼ ପକେଟ ଖୋଜିଲା।

ଉପରେ, ଅନ୍ଧକାର ଆକାଶରେ, ଫୁଟି ଉଠିଲା ପାଖରେ ବସିଥିବା ସେହି ନାହୁଙ୍କିଆ ଲୋକଟିର କ୍ଷୁଧିତ ଶ୍ୟେନଦୃଷ୍ଟି । ଦଶଟଙ୍କିଆ ନୋଟ ଦୁଇଟା ଡା'ହେଲେ ପକେଟମାରୁ ହାତରେ ଗଲା !

ରାଜୁ ବାଁ ଆଖି କ୍ରୁଲତା ଉପରର କଟାଦାଗ ହଂସ୍ର ଭାବରେ ଆଉଁଷିବାକୁ ଲାଗିଲା ।

ଅନ୍ଧକାର ଆକାଶରେ ଯେପରି ଲକ୍ଷ ଲକ୍ଷ ତାରା ଗୋଇନ୍ଦା ପୁଲିସର କୋଟି କୋଟି ଆଖି ମେଲି ରାଜୁଆଡ଼େ ଅନାଇ ରହିଛନ୍ତି ।

ରାଜୁ ଆଗକୁ ଚାହିଁଲା । ରାଜୁ ପଛକୁ ଚାହିଁଲା ।

"୧୯୪୯ ମସିହାକୁ ବେସ୍ ଇୟର୍ ବୋଲି ଧରାଗଲେ ଚଳିତ ବର୍ଷ ଲିଭିଂ ଇଣ୍ଡେକ୍ସ ୬୯୦ ଅସିଅଛି ! ଭାରତକୁ ଏକ ଶକ୍ତିଶାଳୀ, ସମୃଦ୍ଧିଶାଳୀ ଦେଶରେ ପରିଣତ କରିବାକୁ ହେବ ।"

ଗୁଲଣା ଚଷମା ତଳେ ସାଇକେଲ୍ କଲୁଆଲ ଚପରାସୀର ସେ ଦୁଇଟି ଶେତା ଅର୍ଥହୀନ, ନିର୍ବୋଧ ଆଖି ! ମାଉସୀର ସଜନା ଗଛ ! ରାଜୁ ଦକ୍ଷିଣ ହାତ ମୁଷ୍ଟିବଦ୍ଧ କରି ଉପରେ ଅନ୍ଧକାର ଆକାଶ ଆଡ଼କୁ ଉଠାଇଲା ! ଆକାଶ ଯେପରି ଅସୁମାରି ତାରାର ଦାନ୍ତମେଲି ରାଜୁକୁ ଗ୍ରାସ କରିବାପାଇଁ ପାଟି ଆଁ କରିଛି ! ଭଗବାନ୍ ଅଛି ? ନାହିଁ ? ହେ ଭଗବାନ !!

[ ୧୯୬୨ ]



# ପିତା ଓ ପୁତ୍ର

ଭିତରେ ଦେଖିଲେ ଏକ କ୍ଷୁଦ୍ର ଛିଦ୍ର ପଥରେ, ପ୍ରଭାତର ଆଲୋକରେ, ଅନ୍ଧକାର କାରାଗାର ସ୍ୱଳ୍ପ ଆଲୋକିତ ହୋଇଛି । ଉପରେ ଶୁଭୁଛି, ରାଜଗୃହର ରାଜପଥରେ ଜନତାର ଦୈନନ୍ଦିନ କର୍ମମୁଖର କୋଳାହଳ ।

ବନ୍ଦୀ ଥରେ କ୍ଷୁଧାର୍ତ୍ତ ଦୃଷ୍ଟିରେ ଚାହିଁଲେ ଛିଦ୍ରପଥର ସେହି ଆଲୋକ ଆଡ଼େ । ପ୍ରଭାତର ଶାନ୍ତ, ସ୍ନିଗ୍ଧ ଆଲୋକ ରେଖା···ପ୍ରଭୁ ବୁଦ୍ଧଙ୍କର ଆଶୀର୍ବାଦ ପରି ।

ବାର୍ଦ୍ଧକ୍ୟ, ଅନଶନ ଓ ଅତ୍ୟାଚାରରେ ବନ୍ଦୀ ଶୀର୍ଣ୍ଣକାୟ ଦିଶୁଛନ୍ତି ପ୍ରେତଗ୍ରସ୍ତ ପରି । ଏକଦା ବିପୁଳ ବକ୍ଷଦେଶ, ରୁକ୍ଷ ଧୂସର ଶ୍ମଶ୍ରୁ ଜାଲରେ ଆଚ୍ଛନ୍ନ । ଦେହର ଚର୍ମ ଲୋଳିତ ।

ବନ୍ଦୀ, ମଗଧରାଜ ବିମ୍ବିସାର ।

ପୁତ୍ର ଅଜାତଶତ୍ରୁର ଆଦେଶରେ କାରାରୁଦ୍ଧ ହୋଇ ପଡ଼ିଛନ୍ତି ଏହି ଜୀବନ୍ତ ସମାଧି ତଳେ ।

ବିମ୍ବିସାରଙ୍କୁ ହତ୍ୟା କରିବା ପାଇଁ ଅଜାତଶତ୍ରୁଙ୍କର ପଣ—ତିଳେ ତିଳେ ଅନାହାରରେ ।

କ୍ଲାନ୍ତ ଓ ଅବସାଦରେ ବିମ୍ବିସାରଙ୍କର କୋଟରଗତ ଚକ୍ଷୁର ଦୁଇ ଆଖିପତା ପୁଣି ମୁଦି ହୋଇଗଲା । ଅନାହାର ଓ କ୍ଷୁଧାରେ ତାଙ୍କର ପ୍ରତି ଅଙ୍ଗ ପ୍ରତ୍ୟଙ୍ଗ ଅବଶ, ଜଡ଼ ହୋଇ ଆସୁଛି । ତୃଷ୍ଣା ସ୍ଫୀତ ଜିହ୍ୱା ଶୁଷ୍କ ଓଷ୍ଠ ଉପରେ ଥରେ ବୁଲାଇ ଆଣି ବିମ୍ବିସାର ରୁଦ୍ଧ କଣ୍ଠରେ ଆର୍ତ୍ତନାଦ କଲେ ।

ଏଇ ରାଜଗୃହ ଦିନେ ନିର୍ମିତ ହୋଇଥିଲା ତାଙ୍କରି ଆଦେଶରେ । ଆଜି ସେହି ରାଜଗୃହ ଅନ୍ଧକୂପ ମଧ୍ୟରେ ଲୋକଲୋଚନର ଅଗୋଚରରେ ତିଳେ ତିଳେ ସେ ଭୋଗ କରୁଛନ୍ତି ମୃତ୍ୟୁର ଯନ୍ତ୍ରଣା । କର୍ମଫଳ ? ପୂର୍ବ ଜନ୍ମର କର୍ମଫଳ ।

ପୂର୍ବତନ ରାଜଧାନୀ କୁଶାଗ୍ରନଗରରେ ବ୍ୟାପିଥିଲା ଥରେ ଭୀଷଣ ଅଗ୍ନିଭୟ । ସମଗ୍ର ରାଜଧାନୀ ଭସ୍ମସ୍ତୁପରେ ପରିଣତ ହେବାକୁ ବସିଲା । ବିମ୍ବିସାର ଆଦେଶ ଦେଲେ ଯାହାର ଗୃହରେ ଅଗ୍ନି ସଞ୍ଚାର ହେବ, ସେ ହେବ ନିର୍ବାସିତ ! କିନ୍ତୁ ଅଦୃଷ୍ଟର ବିଧାନ ବିଚିତ୍ର । ବିମ୍ବିସାରଙ୍କ ପ୍ରାସାଦରେ ହେଲା ଅଗ୍ନି ସଞ୍ଚାର । ବିମ୍ବିସାର ଶୀତଳ ବନରେ ଗ୍ରହଣ କଲେ ସ୍ୱେଚ୍ଛାକୃତ ନିର୍ବାସନ ।

ସର୍ପିଣୀନଦୀ ସେଚିତା ଗ୍ରୀଷ୍ମାଗ୍ନିଦଗ୍ଧ ବପୁଳଗିରି, ବୈଭାରଗିରି ଓ ଗୃଧ୍ରକୂଟ ମେଖଳାବେଷ୍ଟିତ ଶୀତଳବନ ବିମ୍ବିସାରଙ୍କୁ ମୁଗ୍ଧ କରିଥିଲା । ସେଇଠାରେ ତାଙ୍କରି ତାଙ୍କରି ଆଦେଶରେ, ନିର୍ମିତ ହେଲା ମଗଧର ନୂତନ ରାଜଧାନୀ—ରାଜଗୃହ ।

ବିମ୍ବିସାର ସେହି ରାଜଗୃହର ଶେଷ ଦର୍ଶନ ପାଇଁ ଯେପରି କି ଦୁଇ କ୍ଲାନ୍ତ ଚକ୍ଷୁ ପୁନର୍ମିଳନ କଲେ । ପ୍ରାଣହୀନ ଦୃଷ୍ଟିହୀନ ଦୁଇ ଆଖି, ପଥରର ଆଖି ପରି ।

ସେଦିନ···ଅଜାତଶତ୍ରୁ ବିମ୍ବିସାରଙ୍କୁ କାରାରୁଦ୍ଧ କରିସାରିବା ପରେ ଶୋକାତୁରା, ଅଳୁଳାୟିତକୁନ୍ତଳା ଅଶ୍ରୁମୁଖୀ କୋଶଳା ଦେବୀ ଅଜାତଶତ୍ରୁଙ୍କ ନିକଟରେ ପ୍ରାର୍ଥନା କରିଥିଲେ—

'ପୁତ୍ର, ଅଜାତଶତ୍ରୁ !'

ଅଜାତଶତ୍ରୁ ଉପହାସର କଣ୍ଠରେ କହିଲେ—'ଆଦେଶ କରନ୍ତୁ କାଶୀରାଜନନ୍ଦିନୀ !'

'ମାତା ବୋଲି ସମ୍ବୋଧନ କରିବା କଣ ଏପରି ଲଜ୍ଜାକର ପୁତ୍ର ?'

'ପୁତ୍ର ! ହାଃ—ହାଃ—ହାଃ !' ଅଟ୍ଟହାସ କରି ଉଠିଲେ ଅଜାତଶତ୍ରୁ । ତା'ପରେ, ରୁକ୍ଷ ନିର୍ମମ କଣ୍ଠରେ କହିଥିଲେ—'ମାତା ବୋଲି ସମ୍ବୋଧନ କରିବାକୁ ଆପତ୍ତି ନାହିଁ ମୋର । କିନ୍ତୁ କହି ପାରିବ ମାତା, ଯେଉଁ ନାରୀ ଗର୍ଭସ୍ଥ ପୁତ୍ର, ଭବିଷ୍ୟତ କାଳରେ କେବେ ପିତୃହନ୍ତା ହେବ ଆଶଙ୍କା କରି, ଧନେ ଗୋପନରେ ସନ୍ତର୍ପଣରେ ଭ୍ରୁଣହତ୍ୟା ପାଇଁ କୁକ୍ଷୀମର୍ଦ୍ଦନ କରିଥିଲା, ସେହି ନାରୀ କେବେ ସେ ହତଭାଗ୍ୟ ନିକଟରୁ ଆସେ ଯଦି ପୁତ୍ର ସମ୍ବୋଧନ କରି, ତାହେଲେ କଣ ହେବ ତାର ପ୍ରତ୍ୟୁତ୍ତର ?'

କୋଶଳା ଦେବୀ ଅସହାୟ କଣ୍ଠରେ କହିଲେ, 'ଶତବାର କହୁଛି ତ ପୁତ୍ର, ଏ କେବଳ ମିଥ୍ୟା ଜନଶ୍ରୁତି !'

ଅଜାତଶତ୍ରୁ କହିଲେ—'ସତ୍ୟତା ନଥିଲେ ଶ୍ରୁତି ନଥାଏ କାଶୀରାଜନନ୍ଦିନୀ ! କିନ୍ତୁ ସେ ଆଲୋଚନା କାହିଁକି ? କେବଳ ବିମ୍ବିସାରଙ୍କ କାରାମୁକ୍ତି ଛଡ଼ା, ଅନ୍ୟ ସମସ୍ତ ଅନୁରୋଧ ବିଚାର କରିବାକୁ ପ୍ରସ୍ତୁତ ଅଛି ମୁଁ !'

କୋଶଳା ଦେବୀ ମଳିନ ଚେଲାଞ୍ଚଳରେ ଅଶ୍ରୁମୁଞ୍ଚନ କରି କହିଲେ—'ବେଶ୍ ! ପିତୃରକ୍ତରେ ଯଦି ମହାରାଜାଙ୍କର ଅଭିଷେକର ମଙ୍ଗଳଘଟ ପୂର୍ଣ୍ଣ କରିବାର କାମନା, ତା'ର ପ୍ରତିରୋଧ କରିବାର ଆସ୍ପର୍ଦ୍ଧା କାହାର ? କିନ୍ତୁ ମୋର କେବଳ ଗୋଟିଏ ଭିକ୍ଷା ଥିଲା ମହାରାଜ ! ଏଇ ହତଭାଗିନୀର ସ୍ୱହସ୍ତପ୍ରସ୍ତୁତ ଖାଦ୍ୟଛଡ଼ା ବିମ୍ବିସାରଙ୍କର ଅନ୍ୟ କୌଣସିଥିରେ ରୁଚି ନଥିଲା । ଆଜି ତାଙ୍କୁ କାରାଗାରରେ, ସ୍ୱହସ୍ତରେ ତାଙ୍କୁ ଖାଦ୍ୟ ପରିବେଷଣ କରିବାର ସୁଯୋଗରୁ ମୋତେ ବଞ୍ଚିତ କରିବେ ନାହିଁ ମହାରାଜ ।'

ଅଜାତଶତ୍ରୁ କହିଲେ—'ଏ ପ୍ରାର୍ଥନା ମୁଁ ପୂର୍ଣ୍ଣ କଲି କାଶୀରାଜନନ୍ଦିନୀ ।'

କିନ୍ତୁ କୋଶଳା ଦେବୀଙ୍କର ପ୍ରସ୍ଥାନ ପରେ ପରେ, କାରାଗାରର ରକ୍ଷୀ ଚଣ୍ଡଙ୍କୁ ଆଦେଶ ଦେଲେ ଅଜାତଶତ୍ରୁ, କୋଶଳାଦେବୀଙ୍କ ପ୍ରେରିତ କୌଣସି ଖାଦ୍ୟ ଯେପରି ବନ୍ଦୀ ସ୍ପର୍ଶ କରି ନ ପାରେ ।

ଜଳପାତ୍ର ଶୂନ୍ୟ । ବିମ୍ବିସାର ଦୁଇ ଶିଥିଳ କମ୍ପିତ ହସ୍ତରେ ସେହି ଶୂନ୍ୟ-ପାତ୍ର ମୁଖଲଗ୍ନ କରୁ କରୁ ପାତ୍ରଟି ତଳେ ପଡ଼ି ଚୂର୍ଣ୍ଣ ହୋଇଗଲା । ପ୍ରଭାତର ସୂର୍ଯ୍ୟ ଆକାଶ ପଥରେ ଅନେକ ଉପରକୁ ଉଠିଗଲଣି । ଶିଖରର ଛିଦ୍ର ପଥରେ କ୍ଷୀଣ ଆଲୋକରେଖା, କେତେବେଳୁ ନିଭିଗଲଣି । ପୂତିଗନ୍ଧମୟ କାରାଗାରରେ କେବଳ ଅନ୍ଧକାର, ନିରନ୍ତ୍ର ନୀରବତା ଓ ନିଷ୍ଠୁର ।

କ୍ଷୁଧାର ଅତ୍ୟାଚାର ଆଉ ନାହିଁ । ଅଛି କେବଳ ଅତୃପ୍ତ ଦେହର ତନ୍ଦ୍ରା ଓ ତୃଷା । ଏହାପରେ ସେଥିରୁ ମଧ୍ୟ ମୁକ୍ତି ମିଳିବ । ତାପରେ ସବୁ ଶୂନ୍ୟ—ବୌଦ୍ଧର ଧ୍ୟାନାଲୋକ ପରି । ନିଷ୍ପଳକ, ସ୍ଥିର ଆଖିପତା । ଶୂନ୍ୟବୃତ୍ତର ପରିଧି ଧୀରେ ଧୀରେ ଯେପରି ବିମ୍ବିସାରଙ୍କ ଦୃଷ୍ଟିପଥେ ନିକଟରୁ ନିକଟତର ହୋଇ ଆସୁଛି । ମହାଶୂନ୍ୟର ପୃଷ୍ଠଭୂମିରେ ବିମ୍ବିସାରଙ୍କ କୁହେଳିକାବୃତ ଦୃଷ୍ଟିପଥରେ ଭାସି ଉଠିଲା ଧ୍ୟାନ ଗମ୍ଭୀର କାଷ୍ଠୋତ୍ସର୍ଗ ମୁଦ୍ରାବଦ୍ଧ ପ୍ରଭୁ ବୁଦ୍ଧଙ୍କର ପ୍ରଶାନ୍ତ ମୂର୍ତ୍ତି । ଦୁଇ ଅର୍ଦ୍ଧନିମୀଳିତ ନୟନରେ ତାଙ୍କର ଶାନ୍ତିର ପ୍ରତ୍ୟୟନ ।

ତୃଷାରେ ବିମ୍ବିସାରଙ୍କର ଜିଭ ଓ ଓଠ ଫାଟି ସେଥିରୁ ଅଳ୍ପ ଅଳ୍ପ କଳା ରକ୍ତ ଝରୁଛି । ସେହି ରକ୍ତରେ ବିମ୍ବିସାରଙ୍କର ଶୁଷ୍କ କଣ୍ଠ କମ୍ପିତ ସିକ୍ତ ହୋଇଗଲା । ରୁଦ୍ଧ କଣ୍ଠରେ ଆହତ ପଶୁ ପରି ଗର୍ଜନ କରି ଉଠିଲେ···

ମହାଶୂନ୍ୟର ପୃଷ୍ଠ ଭୂମିରେ ବିମ୍ବିସାରଙ୍କ ଦୃଷ୍ଟି ପଥରେ ଭାସି ଉଠିଲା ଧ୍ୟାନଗମ୍ଭୀର ଗୃଧ୍ରକୂଟ ଶିଖରର ସପ୍ତପର୍ଣ୍ଣୀ ଗହ୍ୱର । ଶାକ୍ୟ ବଂଶୋଦ୍ଭବ ରାଜପୁତ୍ର ଗୌତମ ସନ୍ନ୍ୟାସ ଗ୍ରହଣ କରି ସପ୍ତପର୍ଣ୍ଣୀ ଗହ୍ୱରରେ ଗୁରୁତପସ୍ୟା ବ୍ରତ ପାଳନ କରୁ-ଅଛନ୍ତି, ଲୋକମୁଖରେ ଏହି ବାର୍ତ୍ତା ଶୁଣି ବିମ୍ବିସାର ବିସ୍ମିତ ହୋଇଥିଲେ ।

ସେଦିନ ମେଘହୀନ ନୀଳଆକାଶରେ ହିଦାସ ଗୋଧୂଳି । ବିମ୍ବିସାର ଗୃଧ୍ରକୂଟ ଶିଖରକୁ ପାରିଷଦବେଷ୍ଟିତ ହୋଇ ଯାଇଥିଲେ ଗୌତମଙ୍କର ଦର୍ଶନ ପାଇଁ । ସପ୍ତପର୍ଣ୍ଣୀର ଦକ୍ଷିଣ ଅଳିନ୍ଦରେ ଗୌତମ ଅନୁଦାତ୍ତ କଣ୍ଠରେ ସମବେତ କେତେଜଣ ଭିକ୍ଷୁଙ୍କୁ ପ୍ରବଜ୍ୟାମୃତ ବ୍ୟାଖ୍ୟାନ କରୁଥିଲେ । ଗୃଧ୍ରକୂଟର ପାଦ ଦେଶରେ କଳାପ*ରେ ଶିଖୀର କଳାପ ଚିତ୍ରିତ ନୃତ୍ୟ ଶିଖିନୀର ଅଦର୍ଶନରେ ଭଗ୍ନଛନ୍ଦ ହୋଇ ଉଠୁଛି । ଆଉ କେତେବେଳେ ବା ଚଞ୍ଚଳ ହୋଇ ଉଠୁଛି କଳାପିନୀର ଚଞ୍ଚୁ ଚୁମ୍ବନରେ । ଅଦୂରରେ ମୃଗୋଦ୍ୟାନର ଶ୍ୟାମଘନ ଦୂର୍ବାଶଯ୍ୟା ଉପରେ ବସି ବସି ମୃଗ ରୋମନ୍ଥନ କରୁଛନ୍ତି । ସମୀପବର୍ତ୍ତୀ ସୁମାଗଧୀ ପୁଷ୍କରଣୀରେ କାକଚକ୍ଷୁ ଜଳରେ ମୁଗ୍ଧା ଏକ ହରିଣୀ ନିଜର ପ୍ରତିବିମ୍ବ ଚାହିଁ ଦେଖୁଛି ଆତ୍ମବିସ୍ମୃତା ହୋଇ ।

---

* ମୟୂର ଚରିବାର ସ୍ଥାନ

ସାଧନାରେ ଗୌତମଙ୍କର ବରତନୁ ଉଜ୍ଜ୍ୱଳ, ଅର୍ଦ୍ଧନମୀଳିତ ନୟନ ଯୁଗଳରେ ଗୋଧୂଳିର ଉଦାସ ଶୁଦ୍ଧତା, ହଂସୋସ୍ୟ ମୁଦ୍ରାବଦ୍ଧ କରପଲ୍ଲବରେ ଶାନ୍ତିର ଆଶୀର୍ବାଦ । ସାଦର ସମ୍ଭାଷଣାନ୍ତେ ବିମ୍ବିସାର ପ୍ରଶ୍ନ କଲେ···'କେଉଁ ଦୁଃଖରେ କୁମାର ଏ କୃଚ୍ଛ୍ର ସାଧନା ?'

ଗୌତମ ସ୍ମିତ ହସି ଉତ୍ତର ଦେଲେ—'ଦୁଃଖ ପାଇଁ ନୁହେଁ ମହାରାଜ, ଦୁଃଖର କାରଣ ଓ ନିଦାନର ସନ୍ଧାନ ପାଇଁ ଏ ସନ୍ନ୍ୟାସ, ଏ କୃଚ୍ଛ୍ର ସାଧନା !'

ବିମ୍ବିସାର ଅଟ୍ଟହାସ୍ୟ କରି କହିଲେ—'କାରଣ ତ ଅତି ସହଜ । କିନ୍ତୁ ସପ୍ତପର୍ଣ୍ଣୀ ଗହ୍ୱରରେ ତାର ନିଦାନ କାହିଁ ପାଇବେ କୁମାର ? ଆସନ୍ତୁ ତା' ହେଲେ ରାଜଗୃହର ଉତ୍ସବଶାଳାକୁ । ପ୍ରେମକର ଫେନିଳ ମଦ୍ୟ ଓ ମାଗଧୀର ଚଟୁଳ-ଲାସ୍ୟରେ ପାଇବେ କୁମାର ସବୁ ଦୁଃଖର ନିଦାନ ।'

ନିର୍ଦ୍ଦୋଷ ଆନନ୍ଦରେ ବିମ୍ବିସାର ପୁଣି ଅଟ୍ଟହାସ୍ୟ କରି ଉଠିଲେ । ଗୌତମଙ୍କର ଦୁଇ ଅର୍ଦ୍ଧନମୀଳିତ ନୟନରେ ଗୋଧୂଳିର ଉଦାସ ଶୁଦ୍ଧତା, ସନ୍ଧ୍ୟାର ମୌନ ଅନ୍ଧକାର ପରି ଗଭୀର ଓ ଗମ୍ଭୀର ହୋଇ ଆସିଲା ।

ଆଃ···ତୃଷାରେ ବିମ୍ବିସାରଙ୍କର କଣ୍ଠନଳୀ କିଏ ଯେପରି ଟାଣି ଛିଣ୍ଡାଇ ପକାଉଛି ।

କିଛିକ୍ଷଣ ନୀରବତା ପରେ ଗୌତମ ଉତ୍ତର ଦେଲେ, 'କାମନାର ବାରିରେ ଏ ତୃଷାର ଶାନ୍ତି ନାହିଁ ମହାରାଜ ।'

ନିଭୃତ କାରାର ପ୍ରାଣହୀନ ନୀରବତା ସେହି ବାଣୀରେ ଯେପରି ପ୍ରତିଧ୍ୱନିତ ହୋଇ ଉଠିଲା ।

ଲାସ୍ୟରତା ସୁମାଗଧୀର ଅଳକ୍ତକ ରଞ୍ଜିତ ଶିଞ୍ଜନ-ନିକ୍ୱଣିତ ଚରଣ ଆଜି ନୀରବ, କଜ୍ଜଳସୀମାସ୍ୱିତ ନୟନରେ ମରଣର ଭ୍ରୂକୁଟୀ । ପ୍ରେମକର ଫେନିଳ ପାନପାତ୍ରରେ ହଳାହଳର ବୁଦ୍‌ବୁଦ୍ । କାହାର ? କାହାର ଏ ନୂପୁର-ଶିଞ୍ଜନ ? କୋଶଳା ଦେବୀ ? ମହାରାଣୀ !

କାରାଗାରର ରକ୍ଷୀ ପରିବର୍ତ୍ତନ ହେଉଛି । ଲୌହ ପାଦୁକାର ଶବ୍ଦ । ଅସହ୍ୟ ତୃଷାରେ ବିମ୍ବିସାର ଶରାହତ ବନ୍ୟ ପଶୁ ପରି ନିଜର ଗୋଟିଏ ବାହୁ କାମୁଡ଼ି ପକାଇଲେ ।

× × × ×

( ଦୁଇ )

ଅଜାତଶତ୍ରୁ ନିଷ୍ପଲକ ଦୃଷ୍ଟିରେ ପ୍ରାସାଦକକ୍ଷର ବାତାୟନ ପଥରେ ଗୃହିଁଥିଲେ ରାଜଗୃହରେ ଦିଗନ୍ତମେଖଳା ଗିରିମାଳା ଆଡ଼େ । ପଲଙ୍କରେ ସନ୍ତାନସମ୍ଭବା ରାଣୀ ବଜ୍ରା ଦେହ ଢାଳି ପଡ଼ିଛନ୍ତି ମରୁନଦୀ ପରି । ପାରାବତପାଳିକାରୁ ଦଳଦଳ ପାରାବତ ଉଡ଼ି ଯାଉଛନ୍ତି, ପୁଣି ଫେରି ଆସୁଛନ୍ତି । ଉଦ୍ୟାନର ତମାଳ ତଳେ ଭବନଶିଖୀ ଉଦ୍ଦାମ ନୃତ୍ୟର ଉଦ୍ୟମରେ ଶିଖା ବିସ୍ତାର କରୁଛୁ ।

ବଜ୍ରା କ୍ଲାନ୍ତ କଣ୍ଠରେ ଡାକଲେ···ମହାରାଜ !

ଅଜାତଶତ୍ରୁ ଶଯ୍ୟା ପାର୍ଶ୍ୱରେ ବସି ଧୀରେ ଧୀରେ ବଜ୍ରାଙ୍କର ମଳିନ କପାଳ ଉପରେ କର ସଞ୍ଚାଳନ କରି କହିଲେ 'କୁହ ବଜ୍ରା ।'

ବଜ୍ରା ଅଜାତଶତ୍ରୁଙ୍କର ଗୋଟିଏ ହାତ ଧରି କହିଲେ···'କୁହନ୍ତୁ ମହାରାଜ, ଏ ସନ୍ତାନ, ପୁତ୍ର ହେବ ନା କନ୍ୟା ?'

ଅଜାତଶତ୍ରୁ ବିଚଳିତ ହୋଇ ଉଠିଲେ ।

ବଜ୍ରାଙ୍କର ପୁଣି ସେହି ନିଷ୍ଠୁର ପ୍ରଶ୍ନ···'କୁହନ୍ତୁ ମହାରାଜ; ଏ ସନ୍ତାନ ପୁତ୍ର ହେବ ନା କନ୍ୟା ?'

ଅଜାତଶତ୍ରୁ ବଜ୍ରାଙ୍କର ଶଯ୍ୟାପାର୍ଶ୍ୱରୁ ଉଠି ପଳାଇଲେ ନିଜର ନିଭୃତ କକ୍ଷକୁ । କି ଏକ ତୀବ୍ର ଯନ୍ତ୍ରଣାରେ ବଜ୍ରା ଚିତ୍କାର କରି ଉଠିଲେ ।

ପୁତ୍ର ! ପୁତ୍ର ! ଅଜାତଶତ୍ରୁଙ୍କର ବାଷ୍ପାପ୍ଲୁତ ଦୃଷ୍ଟିପଥରେ ଭାସି ଉଠିଲା ରାଜଗୃହର ଅନ୍ଧକାର କାରାଗାର । ହସ୍ତପଦ ବଦ୍ଧ, ଶୃଙ୍ଖଳିତ ଅଜାତଶତ୍ରୁ ଅନାହାରରେ ଆର୍ତ୍ତନାଦ କରୁଛନ୍ତି ।

ଅତି ନିଷ୍ଠୁର ସେ ଭବିଷ୍ୟତବାଣୀ···ବଜ୍ରାଙ୍କର ପ୍ରଥମ ପୁତ୍ର ହେବ ପିତୃହନ୍ତା* । ଅଜାତଶତ୍ରୁଙ୍କର ମୁଖର ଭଙ୍ଗୀ କଠୋର ହୋଇ ଉଠିଲା । ସନ୍ତାନସମ୍ଭବା ବଜ୍ରାଙ୍କୁ ଅନ୍ଧକାର କାରାଗାରରେ ବନ୍ଦୀ କରିବେ ? ନବଜାତ ଶିଶୁକୁ ଅନ୍ଧକୂପ ମଧ୍ୟରେ ହତ୍ୟା କରିବେ ? ଅତୀତ ଓ ଭବିଷ୍ୟତ ସବୁ ଦୁଇ ହାତରେ ନିର୍ଣ୍ଣିଷ୍ଟ କରିଦେବା ଅଜାତଶତ୍ରୁଙ୍କ ପକ୍ଷରେ ଏପରି କଣ ବା ଦୁଃସାଧ୍ୟ ? ଅତୀତ ତ ଆଜି କାରାଗାରରେ ଗତାୟୁ । ଆଉ ଭବିଷ୍ୟତ ! କିନ୍ତୁ ଅତୀତ ଓ ଭବିଷ୍ୟତସ୍ଥାନ ବର୍ତ୍ତମାନ ଯେ ସ୍ଥିତିସ୍ଥାନ ।

---

* ଅଜାତଶତ୍ରୁଙ୍କର ପୁତ୍ର ଉଦାୟୀ ଓ ତାଙ୍କର ପରବର୍ତ୍ତୀ ତିନିଜଣ ବଂଶଧର ପିତୃହନ୍ତା ଥିଲେ । ପ୍ରଜାମାନେ ଏଥିରେ ଉତ୍ତେଜିତ ହୋଇ କାଶୀରାଜା ଶିଶୁନାଗଙ୍କୁ ମଗଧର ସିଂହାସନରେ ଅଭିଷିକ୍ତ କରିଥିଲେ ।

ବନ୍ଦୀଙ୍କର ଆର୍ତ୍ତଚିତ୍କାର ଶୁଭୁଛି । ପ୍ରସୂତ ବେଦନାର କରୁଣ ମର୍ମଭେଦୀ ଆର୍ତ୍ତନାଦ ! ସ୍ରଷ୍ଟାକୁ ଦଳିତ କରି, ମଥିତ କରି, ଜରାୟୁ ଛିନ୍ନ ବିଦୀର୍ଣ୍ଣ କରି ସୃଷ୍ଟି ନେଉଛି ଆତ୍ମପ୍ରକାଶ ।

ସେଦିନ କୁଆଡ଼େ ବିମ୍ବିସାରଙ୍କ ଆଦେଶରେ ରାଜଗୃହର ପଥେ ପଥେ ବିପୁଳ ଉତ୍ସବର ଅଫୁରନ୍ତ ପ୍ରବାହ···ଅଜାତଶତ୍ରୁଙ୍କର ମନେ ପଡ଼ିଗଲା ଶୈଶବରେ ଧାତ୍ରୀଠାରୁ ଶୁଣା ନିଜର ଜନ୍ମ କାହାଣୀ ।···ବନ୍ଦୀଙ୍କର ଆର୍ତ୍ତନାଦରେ ପ୍ରାସାଦର କୋଣ ଅନୁକୋଣ ନନ୍ଦିତ ହେଉଉଠୁଛି । ସୃଷ୍ଟି ନିଷ୍ଠୁର । ନିଜର ସୃଷ୍ଟିରେ ସ୍ରଷ୍ଟା କ୍ରୀତଦାସ । ସୃଷ୍ଟିର କରୁଣା ଭିକ୍ଷା ଛଡ଼ା ସ୍ରଷ୍ଟାର ଗତ୍ୟନ୍ତର ନାହିଁ । ତଥାପି ସୃଷ୍ଟିରେ କି ବିପୁଳ ଆନନ୍ଦ, କି ଗର୍ବ । ପିତୃତ୍ୱର ଆନନ୍ଦରେ ଅଜାତଶତ୍ରୁଙ୍କର ପ୍ରାଣ, ନିଜର ଅଲକ୍ଷିତରେ ଉଦ୍‌ବେଳିତ ହୋଇଉଠିଲା ।···

ନିଭୃତ କକ୍ଷରେ କାହାର ପାଦଶବ୍ଦ ଶୁଣି ଅଜାତଶତ୍ରୁ ଫେରି ଚାହିଁଲେ । କାରାଗାରର ରକ୍ଷୀ ଚଣ୍ଡ, ଅଜାତଶତ୍ରୁଙ୍କ ଆଦେଶ ପ୍ରତୀକ୍ଷାରେ ଯେପରି ଠିଆ ହୋଇ ରହିଛି ।

ଅଜାତଶତ୍ରୁ ପଚାରିଲେ—'କି ସମ୍ବାଦ ଚଣ୍ଡ ?'

ଚଣ୍ଡ କହିଲା—'ଗତ ତିନିଦିନ ଧରି ମହାରାଜାଙ୍କ ଆଦେଶରେ ଜଳବିନ୍ଦୁ ସୁଦ୍ଧା ଦିଆ ଯାଇନାହିଁ । ଆଜି ଚତୁର୍ଥ ଦିବସ ।'

ଅଜାତଶତ୍ରୁଙ୍କର ମୁଖର ଭଙ୍ଗୀ ପୁଣି କଠୋର ହୋଇ ଉଠିଲା । ଚଣ୍ଡକୁ ରୁକ୍ଷ କଣ୍ଠରେ ପୁଣି ପଚାରିଲେ—'ତା'ପରେ ?'

ଚଣ୍ଡ କହିଲା—"ପ୍ରଥମେ ଶୁଭୁଥିଲା 'ହାୟ ପୁତ୍ର, ହାୟ ରାଜଗୃହ' ବୋଲି ଆର୍ତ୍ତ ଚିତ୍କାର !"

ରାଣୀହଂସପୁର ମଧ୍ୟରୁ ଶୁଭିଲା ଶଙ୍ଖ ଓ ହୁଳହୁଳି ଧ୍ୱନି । ବନ୍ଦୀଙ୍କର ଚିତ୍କାର କେତେବେଳୁ ନୀରବ ହେଲାଣି । ଧାତ୍ରୀ ବସୁମତୀ ଅସ୍ତ ବ୍ୟସ୍ତ ପଦରେ ଧାଇଁ ଆସି ଜଣାଇଲେ—'ସୁସମ୍ବାଦ, ମହାରାଜ ! ମହାଦେବୀଙ୍କର ପୁତ୍ରଲାଭ ହୋଇଛି । ମହାମନ୍ତ୍ରୀଙ୍କୁ ଡାକି ରାଜଗୃହରେ ଉତ୍ସବ ପାଇଁ ଆଦେଶ ଦିଅନ୍ତୁ ।'

ଚଣ୍ଡ କହିଲା—'ଆଦେଶ ଦିଅନ୍ତୁ ମହାରାଜ !'

ଅଜାତଶତ୍ରୁ ଥରେ ଚାହିଁଲେ ଧାତ୍ରୀ ବସୁମତୀ ଆଡ଼େ, ଆଉ ଥରେ ଚାହିଁଲେ ଚଣ୍ଡ ଆଡ଼େ । ତା'ପରେ ବିହ୍ୱଳ ପରି ଧାଇଁ ଚାଲିଗଲେ ବାହାରକୁ । ଅଙ୍ଗନ ପରେ ଅଙ୍ଗନ, ଅଳିନ୍ଦ ପରେ ଅଳିନ୍ଦ, ସୋପାନ ଶ୍ରେଣୀ ପରେ ସୋପାନ ଶ୍ରେଣୀ, ଅଜାତଶତ୍ରୁ

ଧାଇଁ ଚାଲିଛନ୍ତି ଉନ୍ମାଦ ପରି । କାରାଗାରର ପ୍ରବେଶ ଦ୍ୱାର ନିକଟରେ ଅଜାତଶତ୍ରୁ ରହିଗଲେ । ରକ୍ଷୀ ଅଭିବାଦନ ଜଣାଇଲା ।

ଅଜାତଶତ୍ରୁ ଆଦେଶ ଦେଲେ—ଦ୍ୱାର ଖୋଲ ରକ୍ଷୀ !

ଦୁଇ ପ୍ରକାଣ୍ଡ ଲୌହ କବାଟ ବିକଟ ଶବ୍ଦ କରି ଖୋଲିଗଲା । ଭିତର ନିରନ୍ଧ୍ର ଅନ୍ଧକାର । ଅଜାତଶତ୍ରୁ ଅନ୍ଧକାରାବୃତ୍ତ ସୋପାନ ଶ୍ରେଣୀ ଅତିକ୍ରମ କରି ଧାଇଁଗଲେ କାରାଗାର ଭିତରକୁ ?

ପିତା, ଆଜି ପାଇଛି ପିତୃତ୍ୱ ସନ୍ଧାନ ।

ପିତା ଚିରଦିନ ଉଦାର, କ୍ଷମାସ୍ନିଗ୍ଧ, କରୁଣାମୟ । ଅଜାତଶତ୍ରୁ ଅବୋଧ ଶିଶୁପରି ବିମ୍ବିସାରଙ୍କ କୋଳରେ ମୁହଁ ଲୁଚାଇ କ୍ଷମାଭିକ୍ଷା କରିବେ ।

କିନ୍ତୁ ବହୁ ବିଳମ୍ବରେ ଆସିଲେ ଅଜାତଶତ୍ରୁ । ବିମ୍ବିସାରଙ୍କ ପ୍ରାଣହୀନ ଶୀର୍ଣ୍ଣ ଦେହ ପଡ଼ିଛି କାରାଗାରର ପାଷାଣ ଚତ୍ୱର ଉପରେ । ଗୋଟିଏ ବାଘୁ ହିଂସ୍ର କ୍ଷୁଧାରେ କାମୁଡ଼ି ପକାଇଛନ୍ତି, ଜୀବନର ଅନ୍ତିମ ମୁହୂର୍ତ୍ତରେ ବ୍ୟାଧର ଶରାହତ ବନ୍ୟ ପଶୁ ପରି । କ୍ଷତ ସ୍ଥାନରୁ କେଇଧାର ରକ୍ତ ଝରି ପୁଣି ଶୁଖିଯାଇଛି !

ରାଜ ପ୍ରାସାଦରୁ ଶୁଭୁଛି ନବଜାତ ସନ୍ତାନର ଜନ୍ମ ଘୋଷଣା କରି ଘନ ଘନ ଶଙ୍ଖଧ୍ୱନି ।



# ଅମ୍ବାପଲ୍ଲୀ

( ଏକ )

ସେଦିନ ବୈଶାଳୀର ଲିଚ୍ଛବୀ-ସଂଘର ପରିଷଦ କକ୍ଷରେ ତିଳ ଧାରଣ ପାଇଁ ମୁଦ୍ଧା ସ୍ଥାନ ନ ଥିଲା । ବୈଶାଳୀର ସାଧାରଣ ଜନତାଠାରୁ ଆରମ୍ଭ କରି ରାଜପୁରୁଷ, ରାଜକର୍ମଚାରୀ; ଶ୍ରେଷ୍ଠୀ ଓ ବଣିକ ପର୍ଯ୍ୟନ୍ତ ସମସ୍ତେ ଭିଡ଼ ବାନ୍ଧିଥିଲେ, ଅମ୍ବାପଲ୍ଲୀର ବିଚାର ଶୁଣିବା ପାଇଁ ।

ଅନ୍ୟ ଅଧିବେଶନମାନଙ୍କରେ ଗଣ ପରିଷଦର ସବୁ ସଭ୍ୟ ଏକ ସମୟରେ ପ୍ରାୟ ଉପସ୍ଥିତ ନ ଥାନ୍ତି ! ମାତ୍ର ଆଜି ସମସ୍ତେ ଅଧିବେଶନ ଆରମ୍ଭର ବହୁପୂର୍ବରୁ ଆସନ-ପ୍ରଜ୍ଞାପକଙ୍କ ନିର୍ଦ୍ଦେଶ ଅନୁସାରେ ସ୍ୱ ସ୍ୱ ସ୍ଥାନ ଗ୍ରହଣ କରିଥିଲେ ।

ଗଣଧର (୧) କୋଲାହଳ ପ୍ରଶମିତ କରିବା ଉଦ୍ଦେଶ୍ୟରେ ଆସନ ତ୍ୟାଗ କରି ଉଠି କହିଲେ, 'ପରମ ମାନ୍ୟାସ୍ପଦ ସଂଘ ଶୁଣିବା ହେଉନ୍ତୁ । ଆଜି ବିଧି ସଂଖ୍ୟା (୨) ନିରୂପଣ କରିବାର କୌଣସି ପ୍ରୟୋଜନ ନାହିଁ । କାରଣ ମୁଁ ଯେତେଦୂର ନିଜେ ଦେଖିପାରୁଛି, ପରିଷଦ କକ୍ଷରେ ଲିଚ୍ଛବୀ ସଂଘର ପ୍ରାୟ ସମସ୍ତ ସଭ୍ୟ ଉପସ୍ଥିତ ଅଛନ୍ତି । ଅତଏବ ଗଣପୂରକଙ୍କୁ (୩) ମୁଁ କର୍ମବାଚ୍ୟ (୪) ପାଇଁ ଅନୁରୋଧ କରୁଅଛି । ଗଣଧରଙ୍କ ଆଦେଶକ୍ରମେ ଗଣପୂରକଙ୍କ ସାପଙ୍କର ଆସନ ଛାଡ଼ି ଉଠି କହିଲେ, 'ପରମ ମାନ୍ୟାସ୍ପଦ ଗଣଧର ଓ ସଂଘର ସଦସ୍ୟ ମହୋଦୟଗଣ ଶୁଣିବାକୁ ଅବଧାନ ହେଉ, ଆଜି ଏହି ପରିଷଦ କକ୍ଷରେ ବୈଶାଳୀର ଉଦ୍ୟାନପାଳ କନ୍ୟା ଅମ୍ବାପଲ୍ଲୀ ସମ୍ବନ୍ଧରେ ଜ୍ଞପ୍ତି ଆଗତ କରିବା ପୂର୍ବରୁ, ଆପଣମାନେ ପ୍ରଥମେ ଉଦ୍ୟାନପାଳ ଅସିତବର୍ଣ୍ଣଠାରୁ ଅମ୍ବା-ପଲ୍ଲୀର ବୃତ୍ତାନ୍ତ ଶୁଣିବା ହୁଅନ୍ତୁ ।'

ପରିଷଦ କକ୍ଷରେ, ଗଣଧରଙ୍କ ଆସନ ଓ ଅର୍ଦ୍ଧବୃତ୍ତାକାରରେ ସନ୍ନିବିଷ୍ଟ ସଦସ୍ୟ-ମାନଙ୍କ ଆସନ ମଧ୍ୟସ୍ଥିତ ଭୂମିରେ, ଅସିତବର୍ଣ୍ଣ ଠିଆହୋଇ ସଂଘର ସମବେତ ସଦସ୍ୟ-

---

୧) ବାଚସ୍ପତି

୨) କୋରମ୍

୩) ଚିଫ୍ ହ୍ୱିପ୍ ବା ଦଳପତି

୪) ପ୍ରସ୍ତାବ ଆଗତ କରିବା ବା ସଂଘ ଅଧିବେଶନରେ କାର୍ଯ୍ୟ ଆରମ୍ଭ କରିବା ।

ପ୍ରାଚୀନ ଭାରତର ଗଣତନ୍ତ୍ର ବା ରାଷ୍ଟ୍ରମାନଙ୍କରେ ଏ ଶବ୍ଦଗୁଡ଼ିକ ପ୍ରଚଳିତ ଥିଲା ।

—ଲେଖକ

ମାନଙ୍କ ଆଡ଼େ ଦୃଷ୍ଟି କହିଲେ, 'ବୈଶାଳୀ ଉପକଣ୍ଠ ଆମ୍ର-ଉପବନର ମୁଁ ରକ୍ଷକ । ଆଜକୁ ଷୋଳ ବର୍ଷ ତଳେ, ହେଇ ସେଦିନ ପରି ସବୁ ମନେ ପଡ଼ି ଯାଉଛି । ସକାଳ ହୋଇନାହିଁ । ପକ୍ଷୀର କାକଳୀରେ ନିଦ ଭାଙ୍ଗି ଗଲା । ପୂର୍ବ ଆକାଶରେ ସିନ୍ଦୂର ଫାଟିଛି । ବଉଳର ମହକରେ ପବନ ଭାରି ହୋଇ ଉଠିଛି । ହଠାତ୍ ଶୁଣିଲି ଗୋଟିଏ ସଦ୍ୟଜାତ ଶିଶୁର ଚିତ୍କାର, ନିଃସନ୍ତାନ ମୁଁ, ଜୀବନସାରା ଗୋଟିଏ ସନ୍ତାନର କାମନା କରି ଆସିଛି କେବଳ । ଏ କିଣ ବିଧିଦତ୍ତ ? ଆଜି ବି ମନେପଡ଼େ । ଗୋଟିଏ ଆମ୍ରଗଛ ତଳେ, କେଉଁ ହତଭାଗିନୀ ଅନିନ୍ଦ୍ୟ ସୁନ୍ଦର ଶିଶୁଟିଏ ଫିଙ୍ଗି ଦେଇ ଯାଇଛି । ନାଡ଼ି ସୁଦ୍ଧା କଟା ହୋଇନାହିଁ । କିଛି ନ ବୁଝି ନ ସୁଝି ଶିଶୁଟିକୁ କୋଳରେ ତୋଳିନେଲି । ହେଉ ପଛେ ସେ କେଉଁ କୁଳଟାର କଳଙ୍କ, ହେଉପଛେ ଅଭିଶାପ, ଆଜିକି ଷୋଳବର୍ଷ ତଳେ, ସେଇ ଆଜି ଅମ୍ବାପାଲ୍ଲୀ ।'

ଦୀପଙ୍କର ଆସନ ଛାଡ଼ି ଉଠି କହିଲେ, 'ସେଇ ଅମ୍ବାପାଲ୍ଲୀ ଆଜି ବୈଶାଳୀର ଆତଙ୍କ, ଆଜକୁ ଷୋଳବର୍ଷ ତଳେ, କେଉଁ ସେ ବସନ୍ତ-ରାତ୍ରିର ବ୍ୟତ୍ସ୍ତ-ଲଗ୍ନ ମୁହୂର୍ତ୍ତରେ ଏଇପରି ଜନ୍ମି ଥିଲା ବୈଶାଳୀର ମୂର୍ତ୍ତିମତୀ ଅଭିଶାପ ।'

ଗଣଧର ପ୍ରଶ୍ନ କଲେ, 'କିନ୍ତୁ ଅମ୍ବାପାଲ୍ଲୀ କାହିଁ ?'

ଏଇ ପରିଷଦ କକ୍ଷ ବାହାରେ ଶୁଭେ ଅମ୍ବାପାଲ୍ଲୀର ନୂପୁରଶିଞ୍ଜନ । ସମବେତ ଜନତା ମଧ୍ୟରୁ ଅସ୍ପଷ୍ଟ କଳରବ ଉଠିଲା, 'ଅମ୍ବାପାଲ୍ଲୀ, ଏଇ ଅମ୍ବାପାଲ୍ଲୀ ।'

ନୀଳାମ୍ବରୀ ଅମ୍ବାପାଲ୍ଲୀ, ଲକ୍ଷାରଞ୍ଜିତ ପାଦରେ ସ୍ୱର୍ଣ୍ଣ ତାଳମ୍ବ ମଞ୍ଜୁଳର ମଞ୍ଜୀର, କ୍ଷୀଣକଟୀ ବେଷ୍ଟନ କରି ଗୁରୁ ନିତମ୍ବ ଚୁମ୍ବନ କରିଛି ମେଖଳା, ଦୁଇ ମୃଣାଳ ବାହୁରେ ସ୍ୱର୍ଣ୍ଣ କେୟୁରର ପଦ୍ମକଳିକା ସ୍ପର୍ଶ କରିଛି ଉନ୍ନତ ବକ୍ଷ-କୋରକ, ବଙ୍କିମ ଦୁଇ ଭ୍ରୂଲତା ତଳେ ମଦଭରା ଦୁଇ ମୃଗ ଆଖି, ଯେପରି ବଙ୍କିମ ପୁଷ୍ପଧନୁରେ ମଦନର ଟଙ୍କାର ।

ଦୀପଙ୍କର କହିଲେ, 'ଏହି ଅମ୍ବାପାଲ୍ଲୀ ଲାଗି ବୈଶାଳୀର ସାଧାରଣତନ୍ତ୍ର ସଙ୍କଟାପନ୍ନ । ବିଦେହ, ମଲ୍ଲ ଓ କାଲମ ପ୍ରଭୃତି ରାଜ୍ୟ ଗୁଡ଼ିକ ସମସ୍ତେ ଅମ୍ବାପାଲ୍ଲୀ ପାଇଁ ଲାଳାୟିତ । ସେଥିପାଇଁ ଦରିଦ୍ର ଉଦ୍ୟାନପାଳ କନ୍ୟା ଅମ୍ବାପାଲ୍ଲୀର ଐଶ୍ୱର୍ଯ୍ୟ ବୈଶାଳୀର ରାଜକୋଷକୁ ସୁଦ୍ଧା ଉପହାସ କରିପାରେ । ତଦୁପରି ଆମ୍ଭମାନଙ୍କ ଗୁପ୍ତଚର ସମ୍ବାଦ ଯଦି ସତ୍ୟ ହୋଇଥାଏ, ମଗଧରାଜ ବିମ୍ବିସାର ଅମ୍ବାପାଲ୍ଲୀକୁ ବଳାତ୍କାରରେ ମଗଧର ରାଜଅନ୍ତଃପୁରକୁ ନେବାପାଇଁ ଉଦ୍ୟମ ଲଗାଇଛନ୍ତି । ବିମ୍ବିସାର ଯେପରି ଲମ୍ପଟ, ତାଙ୍କ ପକ୍ଷରେ ଏହା ଅସମ୍ଭବ ହୋଇ ନପାରେ । କିନ୍ତୁ ତାହାହିଁ ଯଦି ହୁଏ, ବୈଶାଳୀ ସହିତ ରାଜଗୃହର ଯୁଦ୍ଧ ଅନିବାର୍ଯ୍ୟ, କାରଣ ବୈଶାଳୀ ଏ ହୀନ ଦସ୍ୟୁ ବୃତ୍ତିର ନିଶ୍ଚୟ ପ୍ରତିରୋଧ କରିବ । ମାତ୍ର ଏହାର ପରିଣତି ସୁସ୍ପଷ୍ଟ । ମଗଧର ବିପୁଳ ସାମରିକ ଶକ୍ତି ଆଗରେ ବୈଶାଳୀ ବା କେଇ ଦଣ୍ଡ ତିଷ୍ଠିବ ? ତେଣୁ ମୋର ଆପଣମାନଙ୍କ ସମ୍ମୁଖରେ ଜ୍ଞପ୍ତି ହେଉଛି, ଚିରାଚରିତ ବିଧି ଅନୁସାରେ ଅମ୍ବାପାଲ୍ଲୀକୁ

ଏଠାରେ ଗଣିକା ଘୋଷଣା କରାଯାଉ । ଅମ୍ବାପଲ୍ଲୀ ହେଉ ଗଣଭୋଗ୍ୟା, ଏ ଜ୍ଞପ୍ତି ପ୍ରଥଞ୍ଜ (୧) ରେ ପରଣତ ହେବା ପୂର୍ବରୁ ମୁଁ ଏ ସମ୍ବନ୍ଧରେ ଶଲାକା (୨) ଗ୍ରହଣ ପାଇଁ ଅନୁରୋଧ କରୁଛି ।'

ବ୍ୟାଧସ୍ୱାତା ବ୍ରଣୀ ପର ଅମ୍ବାପଲ୍ଲୀ ଅରେ ଗୃହୀତ ସଂଘର ସମବେତ ସଦସ୍ୟମାନଙ୍କ ଆଡ଼େ । ଏହି ସମୟରେ ଅନ୍ୟତମ ସଦସ୍ୟ ଶୀଳଭଦ୍ର ଉଠି କହିଲେ, 'ଏ ଜ୍ଞପ୍ତି ଉପରେ ଶଲାକାଗ୍ରହଣ, ନିଷ୍ପ୍ରୟୋଜନ, ଏହା ସର୍ବବାଦୀସମ୍ମତ, ବୈଶାଳୀର ସ୍ୱାର୍ଥ ପାଇଁ ଅମ୍ବାପଲ୍ଲୀ ସୁଦ୍ଧା ଏ ଜ୍ଞପ୍ତି ର ବିରୋଧ କରିବେ ନାହିଁ ।'

ଅତଏବ ଶଲାକା ଗ୍ରହଣରେ ଆଉ କୌଣସି ପ୍ରୟୋଜନ ପଡ଼ିଲା ନାହିଁ । କରତାଳି ଦ୍ୱାରା ସମସ୍ତେ ଏହା ଅନୁମୋଦନ କଲେ ।

ଗଣଧର ଏହାପରେ ଉଠି କହିଲେ, 'ପରମ ମାନ୍ୟାସ୍ପଦ ସଂଘର ସଦସ୍ୟ ଗଣ, ଆପଣମାନଙ୍କ ନିର୍ଦ୍ଦେଶରେ ମୁଁ ଘୋଷଣା କରୁଛି ଅମ୍ବାପଲ୍ଲୀ ଆଜିଠାରୁ ହେବ ଗଣଭୋଗ୍ୟା ଗଣିକା । ସୌନ୍ଦର୍ଯ୍ୟ ତାର ଅପରାଧ ।'

## ( ଦୁଇ )

ଏଠାରେ ଯେଉଁ ସମୟର ଘଟଣା ବର୍ଣ୍ଣିତ ହେଉଅଛି, ସେହି ସମୟରେ ଶାକ୍ୟ, କୋଲିୟ, ବିଦେହ, ମଲ୍ଲ, ପିପିଳୀବନର ମୋରିୟ, ବୁଲି, କାଲାମ ଓ ଭଗ୍ଗ ପ୍ରଭୃତି ସଂଘ ଶାସିତ ରାଜ୍ୟମାନଙ୍କରେ ଏହାହିଁ ଥିଲା ଚିରାଚରିତ ବିଧି । ଯେଉଁ ନାରୀର ସୌନ୍ଦର୍ଯ୍ୟ ରାଜ୍ୟରେ ଅନ୍ତର୍ଦ୍ୱନ୍ଦ୍ୱ ବା ଅନ୍ୟ ରାଜ୍ୟ ଆକ୍ରମଣର ହେତୁ ହେବ ସେ ନାରୀ ଗଣଭୋଗ୍ୟା ରୂପେ ହେବ ଗଣିକା । ବୈଶାଳୀ ସଂଘ ତେଣୁ ଏହି ନିୟମରେ ଅମ୍ବାପଲ୍ଲୀକୁ ଗଣିକା ବୋଲି ଘୋଷଣା କରିଥିଲେ । ଅମ୍ବାପଲ୍ଲୀ ଗଣିକା ହେଲେହେଁ ବୌଦ୍ଧ ଯୁଗର ଜଣେ ସ୍ମରଣୀୟା ବିଦୁଷୀ ନାରୀ । 'ଥେରୀ ଗାଥା'ରେ ଅମ୍ବାପଲ୍ଲୀର ସ୍ୱରଚିତ ଗୋଟିଏ ଆତ୍ମକାହାଣୀମୂଳକ କବିତାରେ ଏହିପରି ଗୋଟିଏ ଗଣିକାର ବ୍ୟର୍ଥ ନାରୀତ୍ୱର ଅଶ୍ରୁଳ ଛନ୍ଦ ବର୍ଣ୍ଣିତ ହୋଇଅଛି । ସଂଘର ସ୍ୱାର୍ଥ ପାଇଁ ଅମ୍ବାପଲ୍ଲୀ ନିଜ ନାରୀତ୍ୱ ଓ ମାତୃତ୍ୱର ଯେଉଁ ଲୋଭନୀୟ ସମ୍ଭାବନା, ଆଶା ଓ ଆକାଙ୍କ୍ଷା ସେଦିନ ବୈଶାଳୀର ପଣ୍ୟପଦ କକ୍ଷରେ ବିସର୍ଜନ ଦେଇଥିଲା, ତାହା 'ଥେରୀ ଗାଥା'ର ଉକ୍ତ କବିତାରେ ଅତି ମର୍ମସ୍ପର୍ଶୀ ଭାବରେ ପ୍ରକାଶ ପାଇଛି ।

ଏ କାଳର ଗଣିକାମାନେ ଯୌବନର ପଣ୍ୟ ଧରି କେବଳ କାଳାତିପାତ କରୁ ନଥିଲେ । କାବ୍ୟ, ସାହିତ୍ୟ, ସଙ୍ଗୀତ ଓ ନୃତ୍ୟ ପ୍ରଭୃତି କଳାରେ ସେମାନଙ୍କର

---

୧) ପ୍ରଥଞ୍ଜ ଶଜଲ୍ୟସନ

୨) ଶଲାକା—ଭୋଟ୍

ଅତୁଳନୀୟ କୁଶଳତା ଥିଲା । ପୁଣି ଏମାନଙ୍କର ସମ୍ପଦ ଯେ କୌଣସି ରାଜାର ସମ୍ପଦକୁ ସୁଦ୍ଧା ଉପହାସ କରି ପାରୁଥିଲା । ବୌଦ୍ଧ 'ବିନୟପିଟକ'ରେ ବର୍ଣ୍ଣିତ ଅଛି, କାଶୀ ନଗରୀରର ଗଣିକା 'ଅର୍ଦ୍ଧକାଶୀ'ରେ ଗୋଟିଏ ରାତ୍ରିର ଆୟ, କାଶୀରାଜାଙ୍କର ଗୋଟିଏ ଦିନର ରାଜସ୍ୱ ସହିତ ସମାନ । ମାତ୍ର ଏ ଦୁର୍ମୂଲ୍ୟର ବିନିମୟରେ ଉପଯୁକ୍ତ ସଂଖ୍ୟାରେ ନାଗର ନ ମିଳିବାରୁ, 'ଅର୍ଦ୍ଧକାଶୀ' ମୂଲ୍ୟର ପରିମାଣ ଅଧା କରି ଦେଇଥିଲା । ସେଥି-ପାଇଁ ଓ ସେହିଦିନଠାରୁ ସେ ଅର୍ଦ୍ଧକାଶୀ ନାମରେ ପରିଚିତ ।

( ତିନି )

ବୈଶାଳୀ ନଗରୀରେ ଅମ୍ବାପାଲ୍ଲୀର ପ୍ରାସାଦୋପମ ଅଟ୍ଟାଳିକାର ଶୟନ କକ୍ଷ । ଅମ୍ବାପାଲ୍ଲୀ ପ୍ରସୂତ-ବେଦନାରେ ସେହି କକ୍ଷର ଗୋଟିଏ ପଲଙ୍କ ଉପରେ ଅର୍ଦ୍ଧଚେତନ ଅବସ୍ଥାରେ ପଡ଼ିଛି । ଅମ୍ବାପାଲ୍ଲୀର ଗୋଟିଏ ପରିଚାରିକା ଶିଶ୍ରମା ନବଜାତ ଶିଶୁଟିକୁ କୋଳରେ ଧରି ଠିଆହୋଇ ରହିଛି ଅମ୍ବାପାଲ୍ଲୀର ପଲଙ୍କ ପାଖରେ, ଯେପରି କଣ କହିବ ବୋଲି ।

ଶିଶ୍ରମା 'ଡାକିଲ, ମହାଦେଇ ।'

ଅମ୍ବାପାଲ୍ଲୀ କ୍ଲାନ୍ତ ଆଖି ଦୁଇଟି ଅଳ୍ପ ମେଲି ରୁକ୍ଷ କଣ୍ଠରେ କହିଲା, 'ଆଉ ଠିଆହୋଇ ରହିଲୁ କାହିଁକି ଶିଶ୍ରମା ? ଯା ଫିଙ୍ଗି ଦେଇ ଆ ରାସ୍ତା କଡ଼ରେ । ଆଉ ଟିକେ ପରେ ରାତ ପାହିଯିବ ।'

ଶିଶ୍ରମା କହିଲା, 'କି ଅନିନ୍ଦ୍ୟସୁନ୍ଦର ରାଜକୁମାର ପରି ଦେହେରା । ଠିକ୍ ମହାରାଜ ବିମ୍ବିସାରଙ୍କ ପରି । ଫିଙ୍ଗି ଦେବା ପାଇଁ ସତରେ ମୋର ମନ ଆଦୌ ବଳୁ ନାହିଁ ମହାଦେଇ ।'

ଅମ୍ବାପାଲ୍ଲୀର ନିର୍ଯାତିତ ଓ ମଥିତ ମାତୃତ୍ୱ ପୁଣି ଯେପରି ମୁଣ୍ଡଟେକି ଉଠୁ-ଥିଲା । ଶିଶ୍ରମା ଅନୁନୟର ସ୍ୱରରେ କହିଲା, 'ନିଅ କୋଳକୁ ନିଅ ମହାଦେଇ !'

ଦଳିତା ସର୍ପିଣୀ ଅମ୍ବାପାଲ୍ଲୀ ଗର୍ଜି ଉଠିଲା, 'ନା, ନା, ସେ କଳଙ୍କ । ସେ ବନ୍ଧନ । ଏ ଜୀବନରେ ସେ ଅଭିଶାପ । ଏଇ ମୁହୂର୍ତ୍ତରେ ତାକୁ ଫିଙ୍ଗିଦେଇ ଆ ଶିଶ୍ରମା । ଝିଅଟାଏ ହୋଇଥିଲେ ବରଂ ରଖିଥାନ୍ତି । କିନ୍ତୁ ପୁଅଟାଏ, ଫିଙ୍ଗିଦେଇ ଆ ଶିଶ୍ରମା, ଏଇ ମୁହୂର୍ତ୍ତରେ । ମୁଁ ଆଉ ତୋର ଯୁକ୍ତି ଶୁଣିବାକୁ ଚାହେଁନା ।'

ଶିଶ୍ରମା କୋଳରେ ଶିଶୁଟି କାନ୍ଦି ଉଠିଲା । ଅମ୍ବାପାଲ୍ଲୀ ଚିତ୍କାର କରି ଉଠିଲା 'ମୁହଁରେ ତାର ଲୁଗା ଚାପି ଦେ ଶିଶ୍ରମା । ସର୍ବନାଶ । ଯା—ଅଲକ୍ଷଣୀ, ଆଉ ଠିଆହୋଇ ରହିଲୁ କାହିଁକି ?'

ଶିଶୁମା ଶିଶୁଟିକୁ ଆଉଥରେ ନିବିଡ଼ କରି ଗୁଡ଼ିଧରି ବାହାରକୁ ଚାଲିଗଲା । ଅମ୍ବାପାଲ୍ଲୀ ଆଜି ନେଲା ଯେପରି ନିଜର ପରିତ୍ୟକ୍ତ ଓ ଉପେକ୍ଷିତ ଜନ୍ମର ପ୍ରତିଶୋଧ !

ମାତ୍ର ସେ ପ୍ରତିଶୋଧରେ ଅମ୍ବାପାଲ୍ଲୀ ଦୁଇ ଆଖିରେ ଲୁହର ଏ ଝରଣା କାହିଁକି ?

( ଚାରି )

ସେଦିନ ରାତ୍ରିର ସେଇ ପରିତ୍ୟକ୍ତ ଶିଶୁ ପରବର୍ତ୍ତୀ କାଳରେ ହୋଇଥିଲା ବୈଦ୍ୟ ଶାସ୍ତ୍ରରେ ଧନ୍ୱନ୍ତରି—ଗୌତମ ବୁଦ୍ଧଙ୍କର ଶିଷ୍ୟଶିରୋମଣି 'ଜୀବକ' । କିନ୍ତୁ ବୈଶାଳୀର ରାଜପଥରୁ କେଉଁ ନିଃସନ୍ତାନର ଆଶ୍ରୟ ଓ ପ୍ରତିପୋଷଣରେ ଅମ୍ବାପାଲ୍ଲୀର ପରିତ୍ୟକ୍ତ, ନାମହୀନ, ପରିଚୟହୀନ ଶିଶୁ ଭବିଷ୍ୟତକାଳରେ ଯେ ହେଲା ବୈଦ୍ୟରାଜ ଜୀବକ, ତାର କୌଣସି ଧାରାବାହିକ ଇତିହାସ ମିଳିବ ନାହିଁ ଅବଶ୍ୟ !

( ପାଞ୍ଚ )

ତା'ର ବହୁ ବର୍ଷ ପରେ……

ଅମ୍ବାପାଲ୍ଲୀର କେଳି ମନ୍ଦିର ପଡ଼ିଛି ଶୂନ୍ୟ ଓ ନିର୍ଜନ । ଅମ୍ବାପାଲ୍ଲୀର ଯୌବନ-ବସନ୍ତର ନବପଲ୍ଲବିତ ବୃକ୍ଷଶାଖା, ଯେଉଁ ବିଳାସୀମାନଙ୍କର କଳରବରେ ମୁଖରିତ ହୋଇ ଉଠିଥିଲା, ସେମାନେ ଆଜି ନୂତନ ବସନ୍ତର ସନ୍ଧାନରେ, କିଏ ଯାଇଁ କେଉଁଠି ! କି ଏକ ଦାରୁଣ ବ୍ୟାଧିରେ ଅମ୍ବାପାଲ୍ଲୀ ପଙ୍ଗୁ, ଗଳିତକୁଷ୍ଠରୋଗଗ୍ରସ୍ତା । ନୃତ୍ୟଚପଳ ପାଦ ଦୁଇଟିରେ ପାଷାଣର ଜଡ଼ ନିର୍ଜୀବତା, ହେମ ଗୌର ଦେହରେ ମୃତ୍ୟୁର କାଳିମା, ବନହରିଣୀର ଦୁଇ ଆଖିରେ ମାଡ଼ିଯାଇଛି ପରଳ । ଏହି ସୁଯୋଗରେ ପଦ୍ମାବତୀ ହୋଇଛି ଶ୍ରେଷ୍ଠ ବୈଶାଳୀର ନାୟିକା । ଯେଉଁଆଡ଼େ ଶୁଣ ସେ ଆଡ଼େ ଖାଲି ପଦ୍ମାବତୀର ପ୍ରଶଂସା, ଅମ୍ବାପାଲ୍ଲୀ ଯେପରି ନାହିଁ ବା କେବେ ନ ଥିଲା ।

( ଛଅ )

ରୋଗ ଶଯ୍ୟା ଉପରେ ଅମ୍ବାପାଲ୍ଲୀର ବ୍ୟାଧିଗ୍ରସ୍ତ କୁତ୍ସିତ ଦେହ ପଡ଼ିଛି ଅଥର୍ବ, ଜଡ଼ ହୋଇ । ଜୀବକ ଅମ୍ବାପାଲ୍ଲୀର ଆଖି ଦୁଇଟିରେ କି ଗୋଟିଏ ଅଞ୍ଜନ ପ୍ରଲେପ କରୁଛନ୍ତି, ଶଯ୍ୟାରେ ଗୋଟିଏ ପାଖରେ ବସି । ଅମ୍ବାପାଲ୍ଲୀ ଯନ୍ତ୍ରଣାକ୍ଲିଷ୍ଟ କଣ୍ଠରେ

ପାଗଳୀ ପରି ଚିତ୍କାର କରି ଉଠିଲା—'ମୋତେ ଗରଳ ଦିଅ ଜୀବକ । ଏ ଜୀବନରେ ଆଉ ପ୍ରୟୋଜନ ନାହିଁ । ଜାଣେ ଜୀବକ ସେ ଅପହୃତ ଯୌବନ ଆଉ ଫେରିବ ନାହିଁ, ସେ ଲୁଣ୍ଠିତ ଦୃଷ୍ଟିଶକ୍ତି ଆଉ ଫେରିବ ନାହିଁ । ବୃଥା ତମର ଏ ଆଶ୍ୱାସ !'

ଜୀବକ ଅମ୍ବପାଳୀର କପାଳ ଉପରେ ଧୀରେ ଧୀରେ ହାତ ବୁଲାଇ କହିଲେ —'ଶାନ୍ତ ହୋଇ ଶୋଇପଡ଼ ମା । ମୁଁ ପ୍ରତିଶ୍ରୁତି ଦେଉଛି; ମୁଁ ପୁଣି ଫେରାଇ ଆଣିବି ତମର ପୂର୍ବ ସ୍ୱାସ୍ଥ୍ୟ ଓ ଯୌବନ ।'

ଧନ୍ୱନ୍ତରୀ ଜୀବକଙ୍କର ଅଦ୍ଭୁତ କ୍ଷମତା । ତାଙ୍କର ପ୍ରତିଶ୍ରୁତି ମିଥ୍ୟା ହେବାର ନୁହେଁ । ସେହି ବିଶ୍ୱାସରେ ଅମ୍ବପାଳୀ ନିଜକୁ ସମ୍ପୂର୍ଣ୍ଣ ଭାବରେ ସମର୍ପଣ କରି ଦେଇଛି ଜୀବକଙ୍କ ହାତରେ । ଏ କି ପୁଲକ । ଏ କି ଶୀତଳତା ! ଜୀବକଙ୍କର ସ୍ପର୍ଶରେ ଏ କି ଯାଦୁ । ମା ଶବ୍ଦ ଉଚ୍ଚାରଣରେ ଏ କି ଅପୂର୍ବ ମମତା ! ଅମ୍ବପାଳୀ ଦୁଇ ଅନ୍ଧ ଆଖିମେଲି ଥରେ ଚାହିଁଲା, ଜୀବକଙ୍କୁ ଦେଖିବା ପାଇଁ । ମାତ୍ର ସବୁ କିପରି ଦେଖାଯାଏ ଝାପ୍ସା, କୁହେଳୀର ପର୍ଦ୍ଦା ପରି । ଅମ୍ବପାଳୀର ମନେ ପଡ଼ିଗଲା ସେଦିନ ସେଇ ସଦ୍ୟଜାତ ଶିଶୁକୁ ଥରେ ବକ୍ଷ ଉପରେ ଚାପିଧରି, ମାତୃତ୍ୱର ଯେଉଁ ସ୍ନିଗ୍ଧ ଅନୁଭୂତିରେ ଅମ୍ବପାଳୀର ପ୍ରାଣ ସିକ୍ତ ହୋଇ ଉଠିଥିଲା ଆଜି ଜୀବକଙ୍କର ସ୍ପର୍ଶରେ ଯେପରି ପୁଣି ଜାଗି ଉଠୁଛି ସେଇ ଅନୁଭୂତି !

ଅମ୍ବପାଳୀ ପଚାରିଲା—'ତୁମେ କିଏ ଜୀବକ ?'

ଜୀବକ ଉତ୍ତର ଦେଲେ—'ମୁଁ ଭିକ୍ଷୁ—ଜୀବକ । ଏପରି ବିଚଳିତ ନ ହୋଇ ଶୋଇପଡ଼ ମା ! ମୁଁ ନିର୍ଭର ପ୍ରତିଶ୍ରୁତି ଦେଉଛି, ତମେ ଯଥାଶୀଘ୍ର ରୋଗମୁକ୍ତ ହେବ !

ଅମ୍ବପାଳୀ ଏ ଉତ୍ତରରେ ସନ୍ତୁଷ୍ଟା ନ ହୋଇ ପୁଣି ପଚାରିଲା—'ମାତ୍ର ଏତ ତମର ପରିଚୟ ନୁହେଁ ଜୀବକ ! କିଏ ତମେ ?'

ଜୀବକ ମ୍ଳାନ ଭାବରେ ହସି ଉତ୍ତର ଦେଲେ—'ଭିକ୍ଷୁର ପରିଚୟ ଭିକ୍ଷୁ । ତା'ର ପିତା ନାହିଁ, ମାତା ନାହିଁ, ବନ୍ଧୁ ନାହିଁ, ପୁତ୍ର ନାହିଁ, କନ୍ୟା ନାହିଁ, ସଂସାର ନାହିଁ । ସେ କେବଳ ଭିକ୍ଷୁ ।'

ଅମ୍ବପାଳୀ ଅନୁନୟ ସୁରରେ କହିଲା—'କିନ୍ତୁ ତମେ ମୋ ପାଖରେ ଦଣ୍ଡେ ବସ ଜୀବକ ! ଉଃ···ସେ ଆଖି ଦୁଇଟାରେ ଭାରି ଯନ୍ତ୍ରଣା । ଆଉ ଥରେ ସେମିତି କପାଳ ଉପରେ ତମର ହାତ ବୁଲାଇ ଦିଅ ଜୀବକ !'

ଜୀବକ ବାଧ୍ୟ ଶିଶୁ ପରି ଅମ୍ବପାଳୀର ଉତପ୍ତ କପାଳ ଉପରେ ହାତ ବୁଲାଇଲେ । ଗଭୀର ତୃପ୍ତି ଓ ପ୍ରଶାନ୍ତିରେ ଅମ୍ବପାଳୀର ଅନ୍ତଃସ୍ଥଳ ଯେପରି ସ୍ନିଗ୍ଧ ହୋଇ ଉଠିଲା । ଜୀବକ, ଅମ୍ବପାଳୀର କପାଳ ଉପରେ ହାତ ବୁଲାଉ ବୁଲାଉ କହିଲେ— 'ସୃଷ୍ଟିର ଏଇତ ଚରମ ସତ୍ୟ ମା !'

ଅମ୍ବପାଳୀ ପ୍ରଶ୍ନ କଲା, 'କି ସତ୍ୟ ଜୀବକ ?'

ଜୀବକ କହିଲେ—'ଏଇ ବ୍ୟାଧି; ବାର୍ଦ୍ଧକ୍ୟ, ଏଇ ଦୁଃଖ ! ଯୌବନ କ୍ଷଣସ୍ଥାୟୀ ମା !'

ଅମ୍ବାପଲ୍ଲୀ ପ୍ରଶ୍ନ କହିଲା—'ତା'ହେଲେ ?'

ଜୀବକ କହିଲେ, 'ଭୋଗରେ ଜୀବନର ଯେ ନାଗପାଶରୁ ମୁକ୍ତି ନାହିଁ ମା । ତ୍ୟାଗ ହିଁ ଜୀବନର ଏକମାତ୍ର ମୁକ୍ତି ମାର୍ଗ ! ସେଥିପାଇଁ ତ ରାଜପୁତ୍ର ଶାକ୍ୟସିଂହ ଆଜି ସର୍ବତ୍ୟାଗୀ, ସଂସାର ଉଦାସୀ-ସନ୍ନ୍ୟାସୀ !'

ଅମ୍ବାପଲ୍ଲୀ ପଚାରିଲା—'କିନ୍ତୁ କିଏ ସେ ଶାକ୍ୟସିଂହ ?'

ଜୀବକ କହିଲା—'ଆଉ ଦିନେ କହିବି ତାଙ୍କ କଥା ।'

× × × ×

ଜୀବକଙ୍କର ସେବା ଓ ଚିକିତ୍ସାରେ ଅମ୍ବାପଲ୍ଲୀ ଧୀରେ ଧୀରେ ଆରୋଗ୍ୟ ଲାଭ କରି ଆସୁଛି । ଦୃଷ୍ଟିଶକ୍ତି ସମ୍ପୂର୍ଣ୍ଣ ଫେରି ଆସି ନଥିଲେହେଁ, ଅମ୍ବାପଲ୍ଲୀ ଦେଖି ପାରୁଛି ସବୁ, ଅବଶ୍ୟ ଝାପ୍‌ସା ଭାବରେ ।

ସେ ଦିନ···

ଜୀବକଙ୍କୁ ପ୍ରଥମ ଥର ପାଇଁ ଦେଖି ଅମ୍ବାପଲ୍ଲୀର ମର୍ମସ୍ଥଳ କେଉଁ ଅଦୃଶ୍ୟ ବ୍ୟାଧର ଶରାଘାତରେ ଯେପରି ଛିନ୍ନ ଭିନ୍ନ ହୋଇଗଲା । ଏଇ ଜୀବକ—ଭିକ୍ଷୁ ! ସେଦିନର ସେଇ ପରିତ୍ୟକ୍ତ ଶିଶୁ ଆଜି ଯଦି ବଞ୍ଚିଥିବ, ହୁଏତ ହୋଇଥିବ ଠିକ୍ ଏଇ ଜୀବକଙ୍କ ପରି । ଠିକ୍ ସେଇ ଚେହେରା, ସେଇ ପ୍ରଶସ୍ତ କପାଳ, ସେଇ ଆଖି, ସେଇ ଖଡ୍ଗଧାର ନାକ ! ନା-ନା ଜୀବକ କାହିଁକି ହେବେ ପାପୀୟସୀ ଅମ୍ବାପଲ୍ଲୀର ଜାରଜ ? ସେ ଦେବତା । କିନ୍ତୁ ଏ କି ଅତୃପ୍ତି ? ଏ କି କ୍ଷୁଧା ? ଏ କି କାମନା ? ଜୀବକଙ୍କୁ କୋଳରେ ଚାପି ଧରିବା ପାଇଁ ଏ କି ବ୍ୟଗ୍ରତା ? ଅମ୍ବାପଲ୍ଲୀର ଦୁଇ ଆଖିରୁ ଦୁଇ-ଧାର ଲୁହ ଝରି ଆସିଲା । ଜୀବକ ପ୍ରଶ୍ନ କଲେ—'ତୁମେ କାନ୍ଦୁଚ ମା ?'

ନା-ନା—ଏ ସମ୍ବୋଧନ କାହିଁକି ? ଡାକ ଅମ୍ବା, ଅମ୍ବାପଲ୍ଲୀ, କିମ୍ବା ଆଉ ଯାହା ଇଚ୍ଛା ହୁଏ ଡାକ । କିନ୍ତୁ ଅମ୍ବାପଲ୍ଲୀର ଜୀବନରେ କଣ ଏ ସମ୍ଭାବନା ନଥିଲା ? ରୋଗ ଶଯ୍ୟା ପାର୍ଶ୍ୱରେ ତାର ସେବାରତ ପୁତ୍ର, ଆଖିରେ ଲୁହ ଦେଖିଥିଲେ ଠିକ୍ ଏମିତି ପଚାରିଥାନ୍ତା···ତୁମେ କାନ୍ଦୁଚ ମା ? ମାତ୍ର ସଂଘ ପାଇଁ ସେ ତ ସର୍ବସ୍ୱ ତ୍ୟାଗ କରିଛି ! ସେତ ସବୁ ସମ୍ଭାବନା ବିସର୍ଜନ ଦେଇଛି ! ତା'ହେଲେ ଏ ଅଭିଶାପ କାହିଁକି ?

ଜୀବକ ପୁଣି ଥରେ ପ୍ରଶ୍ନ କଲେ···ତୁମେ କାନ୍ଦୁଚ ମା ?

ଅମ୍ବାପଲ୍ଲୀ ଆଖିର ଲୁହ ବସ୍ତ୍ରାଞ୍ଚଳରେ ପୋଛି କହିଲା···ନା, ଜୀବକ, ଆଖିରେ କି ଗୋଟାଏ ଯନ୍ତ୍ରଣା ହେଉଛି । ତୁମେ ବ୍ୟସ୍ତ ହୁଅନା । ଯନ୍ତ୍ରଣାଟା ଆପେ ଆପେ

କମି ଆସିବ !···ହଁ ଜୀବକ, ତୁମେ ସେଦନ କହୁଥିଲ ବୋଲି କହୁଥିଲ ଶାକ୍ୟସିଂହଙ୍କ କଥା । କୁହ ମୋତେ ।

ଜୀବକ ଆରମ୍ଭ କଲେ କପିଳବାସ୍ତୁର ସନ୍ନ୍ୟାସୀ ଶାକ୍ୟସିଂହଙ୍କ କାହାଣୀ !

( ପାଞ୍ଚ )

ଗୌତମ ବୁଦ୍ଧ ଆସିବେ ବୈଶାଳୀ ।

ବୈଶାଳୀର ପୁରେ ପୁରେ ରଟି ଯାଇଛୁ ବାର୍ତ୍ତା ।

ଲଚ୍ଛବୀମାନେ ବୁଦ୍ଧଙ୍କୁ ଯଥାଯୋଗ୍ୟ ଭାବରେ ଆମନ୍ତ୍ରଣ କରିବା ପାଇଁ ବିପୁଳ ଉଦ୍ୟମରେ ବ୍ୟସ୍ତ । ଗୌତମଙ୍କର ଦର୍ଶନ ପାଇଁ ବୈଶାଳୀର ନରନାରୀ ବ୍ୟଗ୍ର, ଉତ୍କଣ୍ଠିତ ।

ଇତମଧ୍ୟରେ ଅମ୍ବାପାଲୀ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରିଛୁ । ରାହୁମୁକ୍ତ ଚନ୍ଦ୍ରପରି ଅମ୍ବାପାଲୀ ଫେରି ପାଇଛୁ ପୁଣି ଅପହୃତ ଯୌବନ । ମାତ୍ର ମାନସ-ସ୍ୱଚ୍ଛ ସେ ଆଖି ଦୁଇଟି ଉପରେ ନଇଁ ଆସିଛୁ ଯେପରି କଳାମେଘର ଛାଇ । କି ଏକ ଅବ୍ୟକ୍ତ ଦୁଃଖ କଳାକମଳର ସେ ଆଖି ଦୁଇଟିକୁ ମଳିନ କରି ଦେଇଛୁ !

ଜୀବକ କହିଲେ—'ଶୁଣିଚ ମା, ପ୍ରଭୁ ବୁଦ୍ଧ ଆସିବେ ବୈଶାଳୀ ।'

ଅମ୍ବାପାଲୀ କହିଲ—'କିନ୍ତୁ ମୋର ଜାଣି କି ଲାଭ ଜୀବକ ? ମୁଁ ଯେ ଗଣିକା । ଦେହ ଯାହାର ପଣ୍ୟ, ସେ କି କେବେ ବୁଦ୍ଧ ଦର୍ଶନର ଯୋଗ୍ୟା ହୋଇପାରେ ଜୀବକ ?

ଜୀବକ ଅଳ୍ପ ହସି ଉତ୍ତର ଦେଲେ—'ମାତ୍ର ଗଣିକା କିଏ ନୁହେଁ ମା ? ଦେହ କେବଳ ତମର ପଣ୍ୟ, ମାତ୍ର ପ୍ରାଣ ନୁହେଁ । କିନ୍ତୁ ଉଭୟ ଦେହ ଓ ପ୍ରାଣ ଯେଉଁମାନେ ପଣ୍ୟ କରିଛନ୍ତି, ସେମାନେ ଯେ ତମଠାରୁ ଆହୁରି ନୀଚ, ଆଉରି ହୀନ ମା ! ବୈଶାଳୀ ସଂଘର ଏଇ ଲଚ୍ଛବୀମାନେ ! ଗଣ ନାମରେ ପ୍ରାଣ ଏମାନଙ୍କର ପଣ୍ୟ ହୋଇ ନାହିଁକି ? ସଂଘ ପାଇଁ ବିବେକ ଏମାନେ ବଳି ଦେଇ ନାହାନ୍ତି କି ?

ଅମ୍ବାପାଲୀର ଆଖି ଦୁଇଟିରେ ନାଚି ଉଠିଲି ଯେପରି ରୁଦ୍ରବେଶ ବୈଶାଖର ଅଗ୍ନି ଶିଖା !

ଆଜି ମହାରାଜ ବିମ୍ବିସାର ଆସିବେ । ମଗଧର ବର୍ତ୍ତାବହ ବାର୍ତ୍ତା ଆଣିଛୁ ।

ଆଜି ଆସିବେ ବୁଦ୍ଧ ।

ଅମ୍ବାପାଲୀର ପ୍ରାସାଦରେ କେତେ କୋଳାହଳ । କେତେ କୁସୁମର ସଜ୍ଜା ! ଅମ୍ବାପାଲୀ କହିଲ 'ଆଜି ଅତିଥି ଆସିବେ ଶୀଘ୍ରମା; ଚିର ଇପ୍‌ସିତ ଅତିଥି ।'

ଫାଲ୍‌ଗୁନ ପୂର୍ଣ୍ଣିମାର ସନ୍ଧ୍ୟା । ଆମ୍ରମୁକୁଳର ଗନ୍ଧରେ ବୈଶାଳୀ ଉପକଣ୍ଠରେ ଅମ୍ବାପାଲୀର ଆମ୍ରୋଦ୍ୟାନ ସୁରଭିତ ହୋଇ ଉଠିଛୁ । ଅମ୍ବାପାଲୀ ·ବହୁଦିନ ପରେ

ଆଜି ପୁଣି ବିଶ୍ୱମୋହିନୀ ସଜ୍ଜାରେ ସଜାଉଛନ୍ତି ନଟକନ୍ୟା । ଚନ୍ଦ୍ରା, ଅମ୍ବାପଲ୍ଲୀର ଲାକ୍ଷାରଞ୍ଜିତ ଚରଣରେ ପିନ୍ଧାଉଛି ସ୍ୱର୍ଣ୍ଣ ଜାଲମୟ ମଣିଶିଖର ମଞ୍ଜୀର । ଶ୍ୟାମା କଟୀରେ ପିନ୍ଧାଉଛି କନକମୟ ଚୂମ୍ବୀ ମେଖଳା । ଛନ୍ଦା ବାହୁରେ ପିନ୍ଧାଉଛି କେୟୂର । ସିଗ୍ଧମା ଧୂପର ଧୂଆଁରେ ସୁରଭିତ କରୁଛି କୁନ୍ତଳ । ଅମ୍ବାପଲ୍ଲୀ ଦର୍ପଣ ହାତରେ ଧରି କପାଳରେ ପିନ୍ଧୁଛି କୁଙ୍କୁମର ଟିପ ।

ଚନ୍ଦ୍ରମା ପଡ଼ିଯାଇଛି, ଆଜି ଆସିବେ ବିମ୍ବିସାର । ଶିଳନଦୀ ପରି ଅମ୍ବାପଲ୍ଲୀର ପ୍ରାଣ ନାଚି ଉଠୁଛି ଆଜି ଆସିବେ ବୁଦ୍ଧ, ଚିର ଇପ୍‌ସିତ ଅତିଥି !

ଅମ୍ବାପଲ୍ଲୀ, ଉତ୍କଣ୍ଠିତ କଣ୍ଠରେ କହିଲା—'ଚନ୍ଦ୍ରା, ଶ୍ୟାମା, ଛନ୍ଦା, ସିଗ୍ଧମା, ଆଉ ବିଳମ୍ବ କରନା ସଖୀ ! ଏଇ ଯେ ଉଇଁ ଆସିଲାଣି ପୂର୍ଣ୍ଣିମାର ଚନ୍ଦ୍ର ।

ସିଗ୍ଧମା ଅମ୍ବାପଲ୍ଲୀର ବେଣୀରେ ଖୋସୁଥିଲା ଅଶୋକ ।

ରାଜପଥରେ କୋଳାହଳ ଶୁଭୁଛି । ଅମ୍ବାପଲ୍ଲୀ ଛୁଟି ଯାଇଁ ବାତାୟନ ପଥରେ ଚାହିଁଲା କୋଳାହଳମୁଖର ରାଜପଥ ଆଡ଼େ । କିଏ ଜଣେ ଆସି ସମ୍ବାଦ ଦେଲା, ମହାରାଜ ବିମ୍ବିସାର, କେଳିମନ୍ଦିରରେ ଅପେକ୍ଷା କରିଛନ୍ତି ।

ଏଇ ବୁଦ୍ଧ ଆସୁଛନ୍ତି । ସେଥିପାଇଁ ବୈଶାଳୀର ନର ନାରୀଙ୍କର ଏ ଉନ୍ମତ୍ତ କୋଳାହଳ । ଅମ୍ବାପଲ୍ଲୀ ବାତାୟନ ପାଖରୁ ଧାଇଁ ଆସି କହିଲା—'ଏଇ ଅତିଥି ଆସିଲେ ସିଗ୍ଧମା । ଆଉ ମୃଗନାଭି ଆଉ ଲୋଧ୍ରରେଣୁ, ପଦ୍ମଆଉ କୁସୁମର ମାଳା ।'

ଅମ୍ବାପଲ୍ଲୀ, ଉନ୍ମାଦିନୀ ପରି ଛୁଟିଗଲା । ଅସମାପ୍ତ ବେଣୀରୁ ଝରି ପଡ଼ୁଥାଏ ରାଶି ରାଶି ଅଶୋକ ।

ଜୀବନର ବୀଣା ବନ୍ଦ ହୋଇଗଲା । ମହାରାଜ ବିମ୍ବିସାର ବିସ୍ମୟରେ ଆଖି ମଳିଲେ । ଲିଚ୍ଛବୀ ସଂଘର ରାଜଶଦୋପଜୀବୀମାନେ ହତବାକ୍ ହୋଇଗଲେ ।

ଅମ୍ବାପଲ୍ଲୀର ନୃତ୍ୟ ମନ୍ଦିରରେ ଆତିଥ୍ୟ ଗ୍ରହଣ କରିଛନ୍ତି ଗୌତମ ବୁଦ୍ଧ । ଅମ୍ବାପଲ୍ଲୀ ବିଶ୍ୱମୋହିନୀ ବେଶରେ ଉନ୍ମାଦିନୀ ପରି ଛୁଟି ଆସି, ଲୋଟି ପଡ଼ିଲା ଧ୍ୟାନ-ନିମୀଳିତ-ଚକ୍ଷୁ ବୁଦ୍ଧଙ୍କ ପାଦତଳେ ।

ଏ ଯେପରି ପ୍ରବୃତ୍ତି ସହିତ ନିବୃତ୍ତିର, ମହାକାଳ ସହିତ ମୁହୂର୍ତ୍ତର, ଜୀବନ ସହିତ ନିର୍ବାଣର ମହାମିଳନ ।

ସମବେତ ଭିକ୍ଷୁ ମଣ୍ଡଳୀଙ୍କ କଣ୍ଠରେ ଫୁଟିଥିଲା—

ବୁଦ୍ଧଂ ଶରଣଂ ଗଚ୍ଛାମିଂ
ଧର୍ମଂ ଶରଣଂ ଗଚ୍ଛାମିଂ
ସଂଘଂ ଶରଣଂ ଗଚ୍ଛାମିଂ ।



# ଶ୍ରୀକୃଷ୍ଣଙ୍କ ଶେଷହସ

ସେଦିନ ମହାଭାରତ ବିୟୋଗାନ୍ତ ନାଟକର ଶେଷଦୃଶ୍ୟ ଦେଖି ଦିବାପାଇଁ ଯେପରି ଇନ୍ଦ୍ରପ୍ରସ୍ଥର ଗିରିମାଳା ନେପଥ୍ୟରେ ଅସ୍ତାଚଳ ପଥରେ ସର୍ବଦ୍ରଷ୍ଟା ଦିବାକର ଅରୁଣ-ବାହିତ ରଥ ଦଣ୍ଡେ ଅଟକାଇ ଦେଇଥିଲେ ।

ମହାଭାରତ ମହାସମର ପରେ ପରିତ୍ୟକ୍ତ କୁରୁକ୍ଷେତ୍ର, ଧ୍ୱଜା ଓ କଳସଶୋଭିତ, ମୁକ୍ତା ଓ ମଣିହୀରା ବିମଣ୍ଡିତ, କୌରବପକ୍ଷର ଅସଂଖ୍ୟ ଭଗ୍ନରଥ, ପୁଣି ତୂଣ, ଧନୁ ଓ ନାରାଚଶୋଭିତ ଏକାଦଶ ଅକ୍ଷୌହିଣୀ ଯୋଦ୍ଧୃବର୍ଗଙ୍କର ଶବରାଶି, ଦ୍ୱାଦଶ ଯୋଜନ ବିସ୍ତାର କରି, ଶୋଣିତ-ପଙ୍କ ମଧ୍ୟରେ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଅଛି । ସେହି ମହା-ଶ୍ମଶାନର ଶବସ୍ତୂପ ମଧ୍ୟରେ ରୋରୁଦ୍ୟମାନା, ଅସମ୍ବୃତବସନା, ଅବିନ୍ୟସ୍ତକୁନ୍ତଳା, ଦୁର୍ଯ୍ୟୋଧନ ମହିଷୀ ଭାନୁମତୀ ଓ ଅନ୍ୟ କୌରବ-କୁଳ-ନାରୀମାନେ ନିଜ ନିଜର ପ୍ରିୟ ଓ ସ୍ୱଜନବର୍ଗଙ୍କୁ ଅନ୍ୱେଷଣ କରୁଅଛନ୍ତି । ସେମାନଙ୍କର ମର୍ମାନ୍ତିକ କ୍ରନ୍ଦନ, ଶ୍ୱାନ, ଶିବା ଓ ଶକୁନମାନଙ୍କର ନାରକୀୟ ରଡ଼ିକୁ ସୁଦ୍ଧା ବେଳେବେଳେ ନିମଜ୍ଜିତ କରି ଦେଉଅଛି ।

ଶତଶତ ଚିତାନଳର ଦୃପ୍ତ ଚପଳତା ମୃତ୍ୟୁର ଅଚଞ୍ଚଳ ଗାମ୍ଭୀର୍ଯ୍ୟ ମଧ୍ୟରେ ପ୍ରଶମିତ ହୋଇଅଛି । ଅଶ୍ୱମାନଙ୍କର ହ୍ରେଷାରବ, କ୍ଷୁବ୍ଧ ଦନ୍ତାବଳମାନଙ୍କର ବୃଂହିତ ଯୋଦ୍ଧୃବର୍ଗଙ୍କର ପ୍ରମତ୍ତ ଆସ୍ଫାଳନ, ମୃତ୍ୟୁର ଗଦାଘାତରେ ସବୁ ନୀରବ ହୋଇଅଛି । କ୍ରନ୍ଦନ ଓ ଶିବାରଡ଼ିମୁଖରିତ ସେହି ମହାଶ୍ମଶାନ ଉପରେ ଚକ୍ରାକାରରେ ଉଡ଼ି ବୁଲୁଥିବା, ପର୍ଯ୍ୟୁଷିତ ମାଂସଲୋଭୀ ଅଗଣିତ ଶକୁନଙ୍କର ସଞ୍ଚାଳିତ ପକ୍ଷ, କରାଳ ଛାୟାପରି ବିସ୍ତାରିତ ହୋଇଅଛି ।

ଇନ୍ଦ୍ରପ୍ରସ୍ଥରେ ଧୃତରାଷ୍ଟ୍ରଙ୍କ ପ୍ରାସାଦ ନୀରବ ଓ ନିର୍ଜନ । ବେଳେବେଳେ ସଞ୍ଜୟ ଓ ବିଦୁରଙ୍କର ଶାନ୍ତ, ଧୀର ପଦଶବ୍ଦ ଧୃତରାଷ୍ଟ୍ରଙ୍କର ମର୍ମଭେଦୀ ଦୀର୍ଘଶ୍ୱାସ ଓ ଗାନ୍ଧାରୀଙ୍କର ଅସ୍ଫୁଟ କ୍ରନ୍ଦନର ଭୟାକ୍ରାନ୍ତ ନୀରବତାକୁ ଆହୁରି ଘନୀଭୂତ କରି ଦେଉଅଛି ।

ଧୃତରାଷ୍ଟ୍ର ଜନ୍ମାନ୍ଧ । ତେଣୁ କୁରୁକ୍ଷେତ୍ରର ମହାଶ୍ମଶାନରେ, ମହାନିଦ୍ରାର ଧୂଳିଶଯ୍ୟାରେ, ମାନଗୋବିନ୍ଦ ଦୁର୍ଯ୍ୟୋଧନ ସମେତ ଶତପୁତ୍ର, ପୁଣି କର୍ଣ୍ଣ, ଶଲ୍ୟ, ଦ୍ରୋଣ ଓ ଭୂରିଶ୍ରବା ପ୍ରମୁଖ ସଖା ଓ ସୋଦରମାନଙ୍କୁ ଶେଷବାର ଦେଖି ଆସିବାପାଇଁ ତାଙ୍କର ବ୍ୟାକୁଳତା, ଉତ୍କଣ୍ଠା, ଶୋକ ଓ ଦୀର୍ଘଶ୍ୱାସ କୌରବ ପ୍ରାସାଦର ଛାୟାଚ୍ଛନ୍ନ ଭିତ୍ତି-ପ୍ରସ୍ତର ଦେହରେ ବାଧା ପାଇ ବାରମ୍ବାର ନୀରବ ହେଉଅଛି ।

ମାତ୍ର ଗାନ୍ଧାରୀ ନିଜର ଦୁଇ ଆଖିରୁ ଅନ୍ଧ-ପଟ୍ଟିକାର ଆବରଣ ଫିଙ୍ଗିଦେଇ, ମହାନିଦ୍ରାରେ ଶାୟିତ ଶତପୁତ୍ରଙ୍କୁ, ପ୍ରଥମ ଓ ଶେଷବାର ଥରେ ଦେଖିବାପାଇଁ ଉତ୍କଣ୍ଠିତ ହୋଇ ପଡ଼ିଅଛନ୍ତି; କାରଣ ଅନ୍ଧ-ଧୃତରାଷ୍ଟ୍ରଙ୍କ ପାଣିଗ୍ରହଣ ବେଳେ ସତୀତ୍ୱର ପରମ ନିଷ୍ଠାରେ ବ୍ରତଚାରିଣୀ ପରି ଗାନ୍ଧାରୀ ନିଜର ଦୁଇଆଖିରେ ଅନ୍ଧପଟ୍ଟିକାର ଯେଉଁ ଆବରଣ ବାନ୍ଧିଥିଲେ, ତାହାର ବନ୍ଧନ ଦୁର୍ଚ୍ଛେଦ୍ୟ ଓ ଗ୍ରନ୍ଥି ଦୁର୍ଭେଦ୍ୟ। ତା ନହେଲେ ସତୀଧର୍ମର ସବୁ ଅହଙ୍କାର ଭୁଲି, ଆଜ ସେହି ଅନ୍ଧପଟ୍ଟିକାକୁ ଏକ ତୁଚ୍ଛ ପ୍ରତିବନ୍ଧକ ରୂପେ, ପଥର ଧୂଳିରେ ଫିଙ୍ଗି ଦେବାପାଇଁ ସେ ଉତଳହେଲେ କୁଣ୍ଠିତା ନୁହନ୍ତି।

ଦୁର୍ଯୋଧନ, ଦୁଃଶାସନ, ଦୁର୍ଜୟ, ଦୁରନ୍ତ, ଦୁର୍ଗମ, ଦୁରମ, ଦୁର୍ତ୍ତିର, ଦୁର୍ବାଳକ ପ୍ରମୁଖ ଶତପୁତ୍ରର ଜନନୀ, ମାତୃତ୍ୱ-ଗରବିଣୀ ସୋମବଂଶର ପୂଜନୀୟା ଗାନ୍ଧାରୀ। କର୍ପୂର-ରେଣୁ-ସିକ୍ତ ତୁଳି-ତଳ୍ପରେ ସୁଦ୍ଧା ଯେଉଁମାନଙ୍କୁ ନିଦ୍ରାସ୍ପର୍ଶ କରୁ ନ ଥିଲା, ଆଜ ସେମାନେ କୁରୁକ୍ଷେତ୍ରର ଶୋଣିତକର୍ଦ୍ଦମରେ ମହାନିଦ୍ରାରେ ଅଚେତନ।

ସେମାନଙ୍କ ଶବ ଉପରେ ଶ୍ୱାନ, ଶିବା ଓ ଶକୁନମାନଙ୍କର ଅଶ୍ଳୀଳ ଚତ୍କାର ଦ୍ୱିଗୁଣ ରୌରବ ସୃଷ୍ଟି କରିଅଛୁ।

ଗୋଟିଏ ଶକୁନପଲର ବିକଟ ରଡ଼ିରେ ଗାନ୍ଧାରୀ ଆର୍ତ୍ତନାଦ କରି ଉଠିଲେ।

ଆଶ୍ରୟ ପାଇଁ ଶୂନ୍ୟରେ ଶୁଷ୍କ-ଚର୍ମାବୃତ ଦୁଇ ଶିଥିଳ ବାହୁ ଟେକି, ଅନ୍ଧ-ପଟ୍ଟିକାବୃତା ଗାନ୍ଧାରୀ ଅସହାୟ କଣ୍ଠରେ ଚତ୍କାର କଲେ···'ବିଦୁର, ସଞ୍ଜୟ !'

ପରିତ୍ୟକ୍ତ କୌରବ-ପ୍ରାସାଦର ପୈଶାଚିକ ନୀରବତା ମଧ୍ୟରେ ଗାନ୍ଧାରୀଙ୍କ ଆକୁଳ ଆହ୍ୱାନ ପ୍ରତିଧ୍ୱନି ଉଠାଇ ପୁଣି ନୀରବ ହୋଇଗଲା।

*   *   *   *

ନିଷ୍ଫଳ ଅହଙ୍କାର ଓ ଅଭିମାନରେ ଦୁଇ କର୍ମିତ ବାହୁ ସ୍ଫୀତ କରି, ଉର୍ଦ୍ଧ୍ୱକୁ ଟେକି, ଅନ୍ଧ ଧୃତରାଷ୍ଟ୍ର ବିଦୁରଙ୍କ ସମ୍ମୁଖରେ ଆସ୍ଫାଳନ କରୁଥିଲେ···'ଭୁଲିଯାଅ ନାହିଁ ବିଦୁର, ଆଜ ସୁଦ୍ଧା ଏହି ଦୁଇ ବାହୁରେ କୁରୁକୁଳହନ୍ତା ଭୀମ-ସମେତ ପାଣ୍ଡବ ପଞ୍ଚ-ଭ୍ରାତାଙ୍କୁ ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେବାର ଶକ୍ତି ଅକ୍ଷୁଣ୍ଣ ରହିଅଛୁ !'

ଧୃତରାଷ୍ଟ୍ର କୌରବ-ସିଂହାସନ ଉପରେ ପ୍ରଚଣ୍ଡ ଜିଘାଂସାରେ ଶସ୍ତ୍ରାହତ ପଶୁପରି ଗର୍ଜନ କରି ଉଠିଲେ। ତାଙ୍କର କୁଞ୍ଚିତ ଓ ରେଖାଙ୍କିତ ମୁଖମଣ୍ଡଳର ଶିଥିଳ ମାଂସପେଶୀମାନ ଏକ କାଠିନ୍ୟରେ ନିଷ୍ଠୁର ହୋଇଗଲା। ସୁପ୍ତ ଆଗ୍ନେୟଗିରିର ଅନ୍ଧକାର ବିବର ପରି, ତାଙ୍କର ଦୁଇ ଦୃଷ୍ଟିହୀନ ଅନ୍ଧଚକ୍ଷୁରେ ଅଗ୍ନ୍ୟୁଦ୍‌ଗାର ଯେପରି ଉଦ୍ଗୀରଣ କରି ଉଠିଲା।

ବିଦୁର ଶାନ୍ତ କଣ୍ଠରେ କହିଲେ···'ମହାରାଜ, ଧୃତରାଷ୍ଟ୍ରମାନେ ଚିରକାଳ ଅନ୍ଧ। ସିଂହାସନର ସ୍ୱର୍ଣ୍ଣଦୀପ୍ତିରେ କାଳେକାଳେ ସେମାନେ ଅନ୍ଧ ହୋଇଛନ୍ତି।

ଚକ୍ଷୁଷ୍ମାନ୍ ଏକମାତ୍ର ଦୃଷ୍ଟି ନୁହେଁ ମହାରାଜ । ପାଣ୍ଡବ ପଞ୍ଚଭ୍ରାତାଙ୍କୁ ସମୂଳେ ବିନାଶ କରିବା ପାଇଁ ଜତୁଗୃହଦାହର ଷଡ଼ଯନ୍ତ୍ରବେଳେ, ଭୀମସେନଙ୍କୁ ବିଷମୋଦକ ଖୁଆଇଲ ବେଳେ, ବ୍ୟାସ ସରୋବରରେ ଆତ୍ମଗୋପନ କରିଥିବା ଦ୍ରୌପଦୀଙ୍କ ପଞ୍ଚପୁତ୍ରଙ୍କୁ ମୁଗୟାଛଳନାସରେ ହତ୍ୟା କଲାବେଳେ, କୁରୁସଭାତଳେ କୁଳବଧୂ ଦ୍ରୌପଦୀଙ୍କୁ ବିବସନା କଲାବେଳେ, ପୁଣି ସାମାନ୍ୟ ପାଞ୍ଚଖଣ୍ଡି ଗ୍ରାମପାଇଁ ଶ୍ରୀକୃଷ୍ଣଙ୍କ ଦୌତ୍ୟର ଉତ୍ତରରେ 'ସୂଚ୍ୟଗ୍ର ପରିମିତ ଭୂମି ଦେବୁନାହିଁ' ବୋଲି ଦୁର୍ଯ୍ୟୋଧନ ଆସ୍ଫାଳନ କଲାବେଳେ, ପୂର୍ବେବିଦୃଷ୍ଟିରେ ଆପଣ ଯଦି ଏ ପରିଣତି କଳ୍ପନା କରିଥାନ୍ତେ, ତାହାହେଲେ ଅନୁଶୋଚନାରେ ଆଜି ଆପଣ ଏପରି ତିଳେ ତିଳେ ଦଗ୍‌ଧୀଭୂତ ହେଉ ନଥାନ୍ତେ ! କିନ୍ତୁ କେବଳ ଆପଣ ନୁହନ୍ତି, ସବୁ ଧୃତରାଷ୍ଟ୍ର ଆପଣଙ୍କ ପରି ଜନ୍ମାନ୍ଧ ।'

ଧୃତରାଷ୍ଟ୍ର କହିଲେ···'ମାତ୍ର ଭୀଷ୍ମ, କର୍ଣ୍ଣ, ଦ୍ରୋଣ ପରି ମହାବୀରମାନେ ପାଣ୍ଡବମାନଙ୍କଦ୍ୱାରା ଏପରି ପରାଜିତ ହେବେ, ତାହା ତ ଆଶଙ୍କା କରି ନଥିଲି ବିଦୁର ।

ବିଦୁର କହିଲେ···'ସେଥିପାଇଁ ତ ମୁଁ କହେ, ଧୃତରାଷ୍ଟ୍ରମାନେ ଚିରକାଳ ଅନ୍ଧ । ନିର୍ଯ୍ୟାତିତ, ନିପୀଡ଼ିତ, ଆର୍ତ୍ତ ଓ ବଞ୍ଚିତର ଦାବୀ, ଆପାତଦୃଷ୍ଟିରେ ଯେତେ ଦୁର୍ବଳ ହେଲେ ସୁଦ୍ଧା, ଅକ୍ଷୌହିଣୀ ସେନାର ରଣପ୍ରସ୍ତୁତି ଓ ତ୍ରିପୁର ବିଜୟୀ ଯୋଦ୍ଧାମାନଙ୍କର ଧନୁଷ୍ଟଙ୍କାର ତାହାକୁ ବିଡ଼ମ୍ବିତ କରିପାରିବ ନାହିଁ । କେତେ ଦର୍ପିତ ଇନ୍ଦ୍ରପ୍ରସ୍ଥ, କେତେ ମଦମତ୍ତ ହସ୍ତିନା, କେତେ ଅହଙ୍କାରୀ ବାରୁଣା, ମହାକାଳରେ ଏହିପରି ବାରମ୍ବାର ଭୂଲୁଣ୍ଠିତ ହେବ । ମହାରାଜ, ମହାଭାରତରେ ଐକ୍ୟ ଓ ଶାନ୍ତି କ୍ଷମତାର ଦାମ୍ଭିକତାରେ ରହିବ ନାହିଁ, ଲାଞ୍ଛିତ, ବଞ୍ଚିତ ଓ ଅପମାନିତକୁ ତା'ର ଯଥାର୍ଥ ଦାବୀରେ ପ୍ରତିଷ୍ଠିତ କରିବାରେ, ରହିବ ଔଦାର୍ଯ୍ୟରେ, କରୁଣାରେ, ଦାକ୍ଷିଣ୍ୟରେ ।'

ଇନ୍ଦ୍ରପ୍ରସ୍ଥର ଆକାଶରେ କାଳବୈଶାଖୀର ଘୂର୍ଣ୍ଣି ଧୃତରାଷ୍ଟ୍ରଙ୍କ କଣ୍ଠରେ ଯେପରି ଗର୍ଜନ କରି ଉଠିଲା । ବିଦୁରଙ୍କ ପ୍ରତି ପ୍ରଚଣ୍ଡ କ୍ରୋଧରେ ଚିତ୍କାର କରି, ଧୃତରାଷ୍ଟ୍ର କହିଲେ—'ତୁମେ ନା ବିଦୁର, କୌରବର ଅନ୍ନଭୋଜୀ ! କୌରବର ଔଦାର୍ଯ୍ୟରେ, କରୁଣାରେ, ଦାକ୍ଷିଣ୍ୟରେ, ତୁମେ ନା ଲାଳିତ ପାଳିତ ଓ ବର୍ଦ୍ଧିତ ! ଆଜି ସେହି କୌରବମାନଙ୍କର ଚରମ ଦୁର୍ଦ୍ଦିନରେ ଏହି କି ତୁମର ପ୍ରତିଦାନ ? କୌରବର ଅନ୍ନର ପ୍ରତିଦାନରେ ତୁମ କଣ୍ଠରେ ସମବେଦନାର କ୍ଷୀଣ ବାଣୀ ସୁଦ୍ଧା ନାହିଁ !'

ବିଦୁର ଅବିଚଳିତ କଣ୍ଠରେ ଉତ୍ତର ଦେଲେ···'କିନ୍ତୁ ସତ୍ୟ ଯେତେ କଠୋର ହେଲେ ସୁଦ୍ଧା ଦିନେ ତାହାର ସମ୍ମୁଖୀନ ହେବାପାଇଁ ପଡ଼ିବ, ମହାରାଜ !'

ଧୃତରାଷ୍ଟ୍ର ଚିତ୍କାର କରି ଉଠିଲେ···'କିନ୍ତୁ ସାମାନ୍ୟ ରାଜ୍ୟପାଇଁ ପାଣ୍ଡବମାନଙ୍କଦ୍ୱାରା, ସଖା-ନାଶ, ସୋଦର-ନାଶ, କୁଳନାଶ, ଏହି କ'ଣ ତୁମର ସତ୍ୟ

ବିଦୁର ? ମୁଁ ବା କିପରି ଭୁଲିବି କହ, ବିଦୁର ! ଆଜି ସୋମବଂଶର ଦୀପଶିଖା ଗୋଟିକ ପରେ ଗୋଟିଏ ନିର୍ବାପିତ ହୋଇଗଲା । ଅନ୍ଧ ଧୃତରାଷ୍ଟ୍ରର ଅନ୍ଧ ଚର୍ମଚକ୍ଷୁ ଆବରଣ ଏହାପରେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସବୁ ନିରନ୍ଧ୍ର, ସୂଚୀଭେଦ୍ୟ, ନିଷ୍ଠୁର ଅନ୍ଧକାର !'

ବିଦୁର ଶାନ୍ତ କଣ୍ଠରେ ଉତ୍ତର ଦେଲେ···'କର୍ମଫଳର ଅନିବାର୍ଯ୍ୟ ପରିଣତି ରୂପେ ଏହାକୁ ଗ୍ରହଣ କରି ଶୋକ ସମ୍ବରଣ କରନ୍ତୁ ମହାରାଜ, ଶାନ୍ତିଲାଭ କରିବେ । ଆପଣ କୁରୁକୁଳର ଅଗସ୍ତିରୂପେ କୌରବ-ସମୁଦ୍ର ନିଃଶେଷ କରିଅଛନ୍ତି, ପାଣ୍ଡବମାନେ ତ କୀର୍ତ୍ତି କୂପମାତ୍ର ! ଆଉ କ୍ରୋଧାନଳରେ ପ୍ରଜ୍ୱଳିତ ହୋଇ ସେ କୂପକୁ ନିଃଶେଷ କରନ୍ତୁ ନାହିଁ ।'

ଏହି ସମୟରେ ଅନ୍ଧପଟ୍ଟିକାବୃତା, ଶୋକାକୁଳା ଗାନ୍ଧାରୀ, ଉନ୍ମାଦିନୀ ପରି ସେଠାକୁ ଧାଇଁ ଆସି କହିଲେ···'ମହାରାଜ, ଦିନେ ଆପଣଙ୍କ ପାଇଁ ମୁଁ ଆଖିରେ ସ୍ୱହସ୍ତରେ ବାନ୍ଧିଥିଲି ଏହି ଅନ୍ଧପଟ୍ଟିକା । ସେହି ବନ୍ଧନର ଦୁର୍ଭେଦ୍ୟ ଗ୍ରନ୍ଥି ଆଜି ସ୍ୱହସ୍ତରେ ଛିନ୍ନ କରିଦିଅନ୍ତୁ ମହାରାଜ ! ଶତପୁତ୍ରର ଜନନୀ ମୁଁ, ଜୀବିତରେ ଯେଉଁ-ମାନଙ୍କୁ ଦେଖି ନାହିଁ, ଆଜି ଅନ୍ତତଃ ମୃତ୍ୟୁର ଶେଷ ଶଯ୍ୟାରେ ସେମାନଙ୍କୁ ଥରେ ଦେଖି ନୟନର ଜ୍ୱାଳା ଶାନ୍ତ କରେ ।'

ଅନ୍ଧପଟ୍ଟିକାର ଗ୍ରନ୍ଥି ଛିନ୍ନ କରିବାର ନିଷ୍ଫଳ ଉଦ୍ୟମରେ ଶିଥିଳ ଅଙ୍ଗୁଳିର ଶତ ନଖାଘାତରେ, ନରକଙ୍କାଳ ପରି ଦିଶୁଥିବା ଗାନ୍ଧାରୀଙ୍କର ଶୁଷ୍କ ଚର୍ମାବୃତ ମୁଖ ରକ୍ତାକ୍ତ ହୋଇ ପଡ଼ିଥିଲା । ଲୋତକ ଓ ଶୋଣିତର ଧାରା, ଗାନ୍ଧାରୀଙ୍କ ମୁଖମଣ୍ଡଳକୁ ଅତ୍ୟନ୍ତ ଭୟଙ୍କର କରି ଦେଇଥିଲା ।

ଗାନ୍ଧାରୀ ଶୋକାପ୍ଳୁତ କଣ୍ଠରେ ପୁଣି ଥରେ ଚିତ୍କାର କରି ଉଠିଲେ··· 'ମହାରାଜ, ଆପଣଙ୍କ ପାଇଁ ଅନ୍ଧପଟ୍ଟିକାର ଆବରଣ ତଳେ ଚକ୍ଷୁଥାଇ ସୁଦ୍ଧା ମୁଁ ଚିର ଜୀବନ ଅନ୍ଧ ରହି ଆସିଅଛି । ଆଜି ମୋ ପାଇଁ ସେ ଆବରଣ ଥରେ ଉନ୍ମୋଚନ କରନ୍ତୁ ମହାରାଜ ।'

ଗାନ୍ଧାରୀଙ୍କର ଅନୁରୋଧରେ ଧୃତରାଷ୍ଟ୍ରଙ୍କ ମୁଖମଣ୍ଡଳ ଏକ କୃଷ୍ଣ ମେଘ ଖଣ୍ଡରେ ଯେପରି ଆଚ୍ଛନ୍ନ ହୋଇପଡ଼ିଲା । ଗାନ୍ଧାରୀ ଜାଣନ୍ତି ନାହିଁ, ମାତ୍ର ଧୃତରାଷ୍ଟ୍ର ଜାଣନ୍ତି, ଅନ୍ଧପଟ୍ଟିକାବୃତା ଗାନ୍ଧାରୀଙ୍କର ଦୁଇ ଚକ୍ଷୁରେ ପୁଞ୍ଜିଭୂତ ହୋଇ ରହିଅଛି ବିଶ୍ୱର ଦାବାନଳ ! ସେ ଦୃଷ୍ଟି ଥରେ ଫିଟିଲେ ଧୃତରାଷ୍ଟ୍ର ସୁଦ୍ଧା ସେଥିରେ ଭସ୍ମ ହୋଇଯିବେ ।

ଗାନ୍ଧାରୀଙ୍କୁ ସାନ୍ତ୍ୱନା ଦେଇ ବିଦୁର କହିଲେ···'ଶୋକ ସମ୍ବରଣ କରନ୍ତୁ ମହାଦେବି ! କିଏ କହେ ଆପଣ ପୁତ୍ରହୀନା ? ଅଗ୍ରପାଣ୍ଡବ ଯୁଧିଷ୍ଠିରଙ୍କ ଅଭିଷେକ ଛଡ଼ିଯାଇଥିଲେ, ଦୁର୍ଦ୍ଦିନ ଏବେ ସୁଦ୍ଧା ଜୀବିତ । ପୁଣି ପଞ୍ଚପାଣ୍ଡବ ତ ଆପଣଙ୍କୁ ଜନନୀ ରୂପେ ଭକ୍ତି କରନ୍ତି ।'

ଗାନ୍ଧାରୀ ଉନ୍ମାଦିନୀ ପରି ଚିତ୍କାର କରି ଉଠିଲେ···'ମୁଁ ଜାଣେ ମହାରାଜ, ଆଉ ଏ ଅନ୍ଧପଟ୍ଟିକା ଉନ୍ମୋଚିତ ହେବ ନାହିଁ । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ, ଗାନ୍ଧାରୀର ଜୀବନ କେବଳ ଅମାବାସ୍ୟାର ନିରନ୍ଧ୍ର, ନିଷ୍ଠୁର ଅନ୍ଧକାର !'

ଗାନ୍ଧାରୀ ଯେପରି ବାତ୍ୟାବାହିତ ଗୋଟିଏ ଶୁଷ୍କପତ୍ର ପରି ଧୃତରାଷ୍ଟ୍ରଙ୍କ ସମ୍ମୁଖକୁ ଉଡ଼ି ଆସିଥିଲେ, ସେହିପରି ସେଠାରୁ ପୁଣି ସ୍ଖଳିତ ପାଦରେ ଚାଲିଗଲେ ।

* * * *

ରଥ ପ୍ରସ୍ତୁତ । ଯୁଧିଷ୍ଠିର ଏକାକୀ ରଥରେ ଉପବେଶନ କରିବାପାଇଁ ଉଦ୍ୟତ ହୋଇଥିଲେ; ଏହି ସମୟରେ ଶ୍ରୀକୃଷ୍ଣ ଦୁର୍ଦ୍ଦଷ ସହିତ ହଠାତ୍ ବିପରୀତ ଦିଗରୁ ଆସି ତାଙ୍କୁ ପଚାରିଲେ, 'ହସ୍ତିନାର ସିଂହାସନରେ ଆସନ୍ନ ଅଭିଷେକର ଉତ୍ସବ ମଝିରେ ଏକାକୀ କେଉଁଆଡ଼େ ବାହାରିଲେ ଧର୍ମରାଜ ?

ଯୁଧିଷ୍ଠିର କହିଲେ···'ମାତା ଗାନ୍ଧାରୀ ମୋତେ ସ୍ମରଣ କରିଅଛନ୍ତି । ତାଙ୍କରି ଦର୍ଶନ ପାଇଁ ବାହାରିଅଛୁ ।'

ଶ୍ରୀକୃଷ୍ଣ କହିଲେ—'ବହୁକାଳ ଗାନ୍ଧାରୀଙ୍କ ସହିତ ମୋହର ମଧ ସାକ୍ଷାତ ହୋଇନାହିଁ । ତାହାହେଲେ ଚାଲନ୍ତୁ ଅଗ୍ରପାଣ୍ଡବ, ମୁଁ ଆପଣଙ୍କ ରଥ ଚଳାଇ ନେବି ।'

ଯୁଧିଷ୍ଠିର ଏ ପ୍ରକାର ଆକସ୍ମିକତାରେ ବିସ୍ମିତ ହୋଇ ପଚାରିଲେ, 'ଏ ପୁଣି କି ନୂତନ ମାୟା, ମାୟାଧର ?'

ଶ୍ରୀକୃଷ୍ଣ ସାରଥି ସ୍ଥାନରେ ବସି, ସ୍ମିତ ହସି ଯୁଧିଷ୍ଠିରଙ୍କୁ କହିଲେ—'ମହାଭାରତର କୈଳିଯାତ୍ରା ପଥରେ ଯେ ପାଣ୍ଡବଙ୍କ ଜୟରଥ ବାହିଥିଲି; ତା'ର ଉତ୍‌ଦର୍ଶନରେ କ'ଣ ଆପଣଙ୍କର ସନ୍ଦେହ ହେଉଛି କୌନ୍ତେୟ ?

ଯୁଧିଷ୍ଠିର ନୀରବ ରହିଲେ ।

ଶ୍ରୀକୃଷ୍ଣ ଚିରଦିନ ଏହିପରି ପ୍ରହେଳିକାମୟ !

* * * *

କୁରୁକ୍ଷେତ୍ରର ମହାଶ୍ମଶାନ ମଧ୍ୟରେ, ପ୍ରତି ଶବସ୍ତୁପ ବୁଲି ସଞ୍ଜୟଙ୍କ ସହିତ ଗାନ୍ଧାରୀ ଶତପୁତ୍ରଙ୍କ ଶବ ସନ୍ଧାନ କରୁଥିଲେ । ଶିବା, ଶକୁନ ଓ ଶ୍ୱାନଦଳଙ୍କୁ ଠେଲି ଗାନ୍ଧାରୀଙ୍କ ହସ୍ତ ଧରି, ସଞ୍ଜୟ ତାହାଙ୍କୁ ଆସନ୍ନ ସନ୍ଧ୍ୟାର ବିଷଣ୍ଣ ଗୋଧୂଳି ମଧ୍ୟରେ ପଥ କଢ଼ାଇ ନେଉଥିଲେ ।

ସଞ୍ଜୟ କହିଲେ···'ମହାଦେବି ! ଭୂତଳଶାୟୀ ହୋଇ ମହାନିଦ୍ରାରେ ଅଚେତନ ହୋଇ ପଡ଼ିଛନ୍ତି, ଏହି ଦେଖନ୍ତୁ ପିତାମହ ଭୀଷ୍ମ । ମୁଖ-ମଣ୍ଡଳରେ ତାଙ୍କର ଅନନ୍ତ ପ୍ରଶାନ୍ତି ।'

ଗାନ୍ଧାରୀ କହିଲେ···'ଜାଣେ ସଞ୍ଜୟ, ସ୍ୱଇଚ୍ଛାରେ ସେ ପ୍ରାଣସମ୍ବରଣ କରି ଅଛନ୍ତି । ତା ନ ହେଲେ ତ୍ରିପୁରବିଜୟୀ ଭୀଷ୍ମଙ୍କ ସମ୍ମୁଖରେ ପାଣ୍ଡବମାନେ ତ ତୃଣାଦପି ତୁଚ୍ଛ ।'

ସଞ୍ଜୟ କହିଲେ, 'ଆଉ ରଥ-ଚକତଳେ ଏଠି ନିଷ୍ପେଷିତ ହୋଇ ପଡ଼ିଛନ୍ତି, ବାହ୍ଲୀକ-ବୀର ସୋମଦତ୍ତ, ମତ୍ତହସ୍ତୀର ଦନ୍ତାଘାତରେ ରକ୍ତାକ୍ତ ହୋଇ ପଡ଼ିଛନ୍ତି ଭୂରିଶ୍ରବା । ମହାଦେବି ! ଅର୍ଜୁନର ଶରାଘାତରେ ଏଇ ଉତ୍ତାନଶାୟୀ ହୋଇ ପଡ଼ିଛନ୍ତି ମହାବୀର କର୍ଣ୍ଣ । ବୈଦୂର୍ଯ୍ୟଖଚିତ ତାଙ୍କ କଣ୍ଠରେ ଅସ୍ତସୂର୍ଯ୍ୟଙ୍କର ଶେଷ କିରଣ ରେଖା, ପୁତ୍ରର ମସ୍ତକରେ ପିତାର ଆଶୀର୍ବାଦ-ସ୍ନିଗ୍ଧ ସ୍ୱର୍ଣ୍ଣ ପରି ତଥାପି ଲାଗିରହିଛି । ସେହି ଦ୍ୟୁତିରେ କର୍ଣ୍ଣଙ୍କ ମୁଖମଣ୍ଡଳ ଶତଦଳର ସଦ୍ୟତାରେ ତଥାପି ଉଦ୍‌ଭାସିତ ।'

ଗାନ୍ଧାରୀ ଶୋକାର୍ତ୍ତ କଣ୍ଠରେ କର୍ଣ୍ଣଙ୍କ ଶବକୁ ଆଲିଙ୍ଗନ କରି କହିଲେ···'ଆସ ବାବୁ, ଜନନୀର ବାତ୍ସଲ୍ୟ-ବଞ୍ଚିତ କୌନ୍ତେୟ, ଅଗ୍ର ପାଣ୍ଡବ । ଦୁର୍ଯ୍ୟୋଧନର ମାନରକ୍ଷା ପାଇଁ ଅପରାଜେୟ ବୀର ତୁମେ, ଆଜି ରଣଭୂମିରେ ଶୋଣିତ-ପଙ୍କରେ ଲୋଟୁଅଛ, କିନ୍ତୁ ହେ ସର୍ବଦ୍ରଷ୍ଟା, ଦିବାକର, ସର୍ବଶକ୍ତିମାନ, ସହସ୍ରଶୀର୍ଷ ହିରଣ୍ୟଗର୍ଭ ଅଂଶୁମାଳୀ; ଯେଉଁମାନେ କ୍ଷାତ୍ରଧର୍ମର ପ୍ରତିକୂଳାଚରଣ କରି ଅନ୍ୟାୟ ଯୁଦ୍ଧରେ କର୍ଣ୍ଣଙ୍କୁ ହତ୍ୟା କରିଅଛନ୍ତି, ସେମାନଙ୍କ ପାଇଁ କ'ଣ କୌଣସି ଶାସ୍ତି ନାହିଁ ? ନାହିଁ ? ନାହିଁ ?'

ଆଉ କିଛି ଦୂର ଅଗ୍ରସର ହେବା ପରେ, ସଞ୍ଜୟ କହିଲେ,···'ଦେବି ! ଭୀମର ଗଦାଘାତରେ ଏଇ ଧରାଶାୟୀ ହୋଇଛନ୍ତି—ଭଗ୍ନଜାନୁ ଦୁଃଶାସନ ! ବିବସନା ଦ୍ରୌପଦୀର ଉଲଙ୍ଗ ଜାନୁ ପ୍ରତି ଅଶ୍ଳୀଳ କଟାକ୍ଷର ପ୍ରତିଶୋଧ ନେବାପାଇଁ ଏହାହିଁ ଥିଲା ଭୀମର ପ୍ରତିଜ୍ଞା । ନୀଳମେଘରେ ବିଦ୍ୟୁତ୍‌ର ଚମକ ପରି, ତାଙ୍କର ପ୍ରଶସ୍ତ ବକ୍ଷରେ ମଣିମୁକ୍ତା-ଖଚିତ ଗଳାହାର ତଥାପି ବିଲମ୍ବିତ ରହିଅଛି !···ବୁଝିଲୁ ଦେବି, ଜୀବନ ମୃତ୍ୟୁର ଏହା ତ ଚିରନ୍ତନ ଲୀଳା, ସମସ୍ତେ କର୍ମଫଳର ଅଧୀନ !'

ଗାନ୍ଧାରୀ ଉଚ୍ଛ୍ୱସିତ କ୍ରନ୍ଦନର ରୁଦ୍ଧ ଆବେଗରେ କହିଲେ···'ମୋର ଅନ୍ଧପଟ୍ଟିକା ଥରେ ଉନ୍ମୋଚନ କରିଦିଅ ସଞ୍ଜୟ ! ଜୀବନରେ ଯାହାକୁ କେବେ ଦେଖିନାହିଁ, ମୃତ୍ୟୁର ଧୂଳିଶଯ୍ୟାରେ ତାକୁ ଥରେ ଦେଖି ଚିରକ୍ଷୁଧିତ ନୟନର ଜ୍ୱାଳା ପ୍ରଶମିତ କରେ ।'

ଗାନ୍ଧାରୀଙ୍କଠାରୁ ଅଳ୍ପ ଦୂରରେ ଶ୍ରୀକୃଷ୍ଣ ରଥର ଗତି ସ୍ତିମିତ କରିଦେଲେ । ଯୁଧିଷ୍ଠିର ଉଦ୍‌ବିଗ୍ନ କଣ୍ଠରେ ପଚାରିଲେ···'ରଥର ଗତି କାହିଁକି ସ୍ତିମିତ କଲେ ନାରାୟଣ ?'

ଶ୍ରୀକୃଷ୍ଣ ସ୍ମିତ ହସି କହିଲେ···'ଯେଉଁମାନେ ଶୋକାର୍ତ୍ତ, ବେଦନାର୍ତ୍ତ, ଦୁଃଖୀ, ସେମାନଙ୍କ ନିକଟକୁ କ୍ଷମତା ଓ ଦର୍ପର ଅଭିମାନରେ ରଥାରୂଢ଼ ହୋଇ ଯିବା

ଶୋଭନୀୟ ନୁହେଁ, ସେଥିରେ ସେମାନଙ୍କର ଶୋକର ଗାମ୍ଭୀର୍ଯ୍ୟ ଓ ମର୍ଯ୍ୟାଦା ଲଙ୍ଘିତ ହୁଏ । ଗାନ୍ଧାରୀ ପୁଣି ସହଜେ ତ ତୁମର ମାତୃତୁଲ୍ୟା ।'

ଯୁଧିଷ୍ଠିର ଅପରାଧୀ ପରି ରଥରୁ ଅବତରଣ କରି କହିଲେ···'ଆପଣ ଯଥାର୍ଥ କହୁଅଛନ୍ତି ନାରାୟଣ; ଶୋକାର୍ତ୍ତି ଗାନ୍ଧାରୀଙ୍କ ନିକଟକୁ ପାଦରେ ଯିବାହିଁ ମୋ ପକ୍ଷରେ ସମୀଚୀନ ।'

ଦୁର୍ଯ୍ୟୋଧନ ଶବ ନିକଟରେ ବହ୍ନିଳତା ଗାନ୍ଧାରୀଙ୍କ ନିକଟକୁ ଯୁଧିଷ୍ଠିର ଅଗ୍ରସର ହେଉଥିଲେ, ଶ୍ରୀକୃଷ୍ଣ ତାହାଙ୍କର ଗୋଟିଏ ବାହୁ ଟାଣିଧରି କହିଲେ···ଗାନ୍ଧାରୀ ତୁମକୁ କାହିଁକି ସ୍ମରଣ କରିଅଛନ୍ତି, ଜାଣିଛ ଯୁଧିଷ୍ଠିର ?

ଯୁଧିଷ୍ଠିର କହିଲେ···'ନା, ତାହା ଜାଣେନା ତ ।'

ଶ୍ରୀକୃଷ୍ଣ ସ୍ମିତ ହସି କହିଲେ···'କୁରୁ ମହାଶ୍ମଶାନର ଶବସ୍ତୁପ ମଧ୍ୟରେ ଗାନ୍ଧାରୀ ନିଜ ପୁତ୍ରମାନଙ୍କୁ ଥରେ ଦେଖିବା ପାଇଁ, ତାଙ୍କର ଅନ୍ଧପଟ୍ଟିକା ଉନ୍ମୋଚନ କରିବା ଉଦ୍ଦେଶ୍ୟରେ ତୁମକୁ ସ୍ମରଣ କରିଅଛନ୍ତି ।'

ଯୁଧିଷ୍ଠିର କହିଲେ···'ଏ ବା କି କଷ୍ଟକାର୍ଯ୍ୟ ? ଏହି ମୁହୂର୍ତ୍ତରେ ମୁଁ ସେହି ଗ୍ରନ୍ଥି ଛିନ୍ନ କରିଦେବି ।'

ଶ୍ରୀକୃଷ୍ଣ ସ୍ମିତ ହସି କହିଲେ—'କିନ୍ତୁ ଯୁଧିଷ୍ଠିର, ତମେ ବିସ୍ମୃତ ହେଉଛ କିପରି, ଶତପୁତ୍ରର ଜନନୀ ଗାନ୍ଧାରୀ ଆଜି ତୁମରି ହେତୁ ପୁତ୍ରହୀନା ! ଗାନ୍ଧାରୀଙ୍କ ଭାବନାରେ, ତୁଚ୍ଛ ସିଂହାସନ ପାଇଁ ତୁମର ସର୍ବଗ୍ରାସୀ ଲୋଭ ଓ ଈର୍ଷା, ଆଜି କୁରୁକୁଳକୁ ନିଷ୍ପ୍ରଦୀପ କରିଅଛି ।'

ଯୁଧିଷ୍ଠିର ଅସହାୟ କଣ୍ଠରେ କହିଲେ···'ସେ ବୃତ୍ତାନ୍ତ ଗାନ୍ଧାରୀ ନ ଜାଣନ୍ତୁ ପଛେ, ଆପଣତ ସବୁ ଜାଣନ୍ତି ଅନ୍ତର୍ଯ୍ୟାମୀ !'

ଶ୍ରୀକୃଷ୍ଣ କହିଲେ···'ଏବେ ତୁମେ ଗାନ୍ଧାରୀଙ୍କ ଅନ୍ଧପଟ୍ଟିକା ଉନ୍ମୋଚନ କରିବା ପରେ, ସେ ଯେତେବେଳେ ତୁମର ପାଦତଳେ ପ୍ରିୟ ପୁତ୍ର ଦୁଃଶାସନର ଭୂତଳଶାୟୀ ଶବ ଦେଖିବେ, ସେତେବେଳେ ଶାନ୍ତି ଓ ସାନ୍ତ୍ୱନା ପରିବର୍ତ୍ତେ, ତାଙ୍କ ପ୍ରାଣରେ ଶୋକବହ୍ନି ଶତଗୁଣରେ ପ୍ରଜ୍ୱଳିତ ହେବ ନାହିଁ କି ?'

ଯୁଧିଷ୍ଠିର କିଂକର୍ତ୍ତବ୍ୟବିମୂଢ଼ ପରି କହିଲେ, 'ତାହା ଯଥାର୍ଥ । କିନ୍ତୁ ଗାନ୍ଧାରୀ ଯେତେବେଳେ ଅନ୍ଧପଟ୍ଟିକାର ଆବରଣ ଉନ୍ମୋଚନ କରିବାପାଇଁ ମୋତେ ସ୍ମରଣ କରିଅଛନ୍ତି, ମୁଁ କ'ଣ କରିବି କୁହନ୍ତୁ ନାରାୟଣ ? ମୁଁ ନିରୁପାୟ !'

ଶ୍ରୀକୃଷ୍ଣ କହିଲେ···'ଗାନ୍ଧାରୀଙ୍କ ଶତପୁତ୍ର ବିନଷ୍ଟ ହୋଇ ପାରିଥାନ୍ତି ; ତଥାପି ଜୀବିତ ଅଛି ଦୁର୍ଦ୍ଦିକ୍ଷ । କୁରୁବଂଶର ଶେଷ ପ୍ରଦୀପ ଦୁର୍ଦ୍ଦିକ୍ଷକୁ ଦେଖି, ଗାନ୍ଧାରୀ ଶୋକାର୍ତ୍ତି ପ୍ରାଣ ଶାନ୍ତି ଲାଭ କରିବ ।'

ଯୁଧିଷ୍ଠିରଙ୍କ କଣ୍ଠସ୍ୱର ଶୁଣି ଉତ୍କଣ୍ଠିତା ଗାନ୍ଧାରୀ ପଚାରିଲେ···'ସଞ୍ଜୟ, ଏ ତ ଯୁଧିଷ୍ଠିର କଣ୍ଠସ୍ୱର ପରି ମନେ ହେଉଅଛି ।'

ସଞ୍ଜୟ କହିଲେ···'ଶ୍ରୀକୃଷ୍ଣଙ୍କ ସହିତ ଅଗ୍ରପାଣ୍ଡବ ଆପଣଙ୍କ ପଦବନ୍ଦନା ପାଇଁ ଆସୁଛନ୍ତି ।'

ଉଦ୍‌ବେଳିତା ଗାନ୍ଧାରୀ ଯୁଧିଷ୍ଠିରଙ୍କୁ ଆଲିଙ୍ଗନ କରିବା ପାଇଁ, ଶୂନ୍ୟରେ ଦୁଇ କମ୍ପିତ ଶିଥିଳ ବାହୁ ଟେକି କହିଲେ···'ଆସ ଆସ ବାପୁ, ବିଗଳିତ କରୁଣାର ପ୍ରତିରୂପ, ଅଗ୍ରପାଣ୍ଡବ ଯୁଧିଷ୍ଠିର···ଆଜି ତୁମେ ଅଗ୍ରକୌରବ ମଧ୍ୟ । ମୁଁ ପାପିନୀ, ମୋର କୁରକର୍ମର ଫଳ ଭୋଗ କରିଅଛି । ଏବେ ମୋର ଦୁର୍ଭେଦ୍ୟ ଅନ୍ଧପଟ୍ଟିକାର ଗ୍ରନ୍ଥି ଥରେ ଉନ୍ମୋଚନ କରିଦିଅ ପୁତ୍ର; ଯେଉଁ ଶତପୁତ୍ରଙ୍କୁ ଜନ୍ମଦେଇ ସୁଦ୍ଧା ସ୍ୱଚକ୍ଷୁରେ କେବେ ଦେଖିନାହିଁ, ଏବେ ସେମାନଙ୍କୁ ପ୍ରଥମ ଓ ଶେଷଥର ପାଇଁ ଦେଖି ମୋର ନୟନର ଜ୍ୱାଳା ପ୍ରଶମିତ କରେ ।

ଗାନ୍ଧାରୀଙ୍କ ବ୍ୟାକୁଳ ନିବେଦନରେ, ଯୁଧିଷ୍ଠିର ଅନ୍ଧପଟ୍ଟିକାର ଗ୍ରନ୍ଥିଛେଦନ କରିବା ପାଇଁ ଅଗ୍ରସର ହେଉଥିଲେ, ଶ୍ରୀକୃଷ୍ଣ ହଠାତ୍ ତାହାଙ୍କର ଗୋଟିଏ ବାହୁ ଧରି ପକାଇ ଅସ୍ଫୁଟ କଣ୍ଠରେ ଦୁର୍ଦ୍ଧର୍ଷଙ୍କୁ କହିଲେ, 'ଦୁର୍ଦ୍ଧର୍ଷ, ଜନନୀ ଗାନ୍ଧାରୀଙ୍କ ଅନ୍ଧପଟ୍ଟିକା ଉନ୍ମୋଚିତ କର । ପୁତ୍ରହୀନା, ଶତପୁତ୍ରର ଜନନୀ ଗାନ୍ଧାରୀ, ତୁମକୁ ସଶରୀରେ ଜୀବିତ ଦେଖିଲେ ପୁତ୍ରଶୋକ ବିସ୍ମୃତା ହେବେ ।'

ଶ୍ରୀକୃଷ୍ଣଙ୍କ ଦୁଇ ରଙ୍ଗାଧରରେ ରହସ୍ୟ ବିଜଡ଼ିତ ହସ ।

ଯୁଧିଷ୍ଠିର କହିଲେ, 'ତାହାହିଁ କର ଦୁର୍ଦ୍ଧର୍ଷ ।'

ଯୁଧିଷ୍ଠିରଙ୍କ ନିର୍ଦ୍ଦେଶରେ ତାଙ୍କର ଚିର ଅନୁଗତ ଦୁର୍ଦ୍ଧର୍ଷ ମୁହୂର୍ତ୍ତିକ ମଧ୍ୟରେ ଗାନ୍ଧାରୀଙ୍କର ଅନ୍ଧପଟ୍ଟିକାର ଗ୍ରନ୍ଥି ଛିନ୍ନ କରିଦେଲା ।

ଗ୍ରନ୍ଥି ଉନ୍ମୋଚିତ ହେବା ମାତ୍ରେ, ଅନ୍ଧପଟ୍ଟିକାର କୃଷ୍ଣ ଆବରଣ ତଳୁ ଅଗ୍ନ୍ୟୁଦ୍‌ଗାରର ସର୍ବନାଶୀ ଶିଖା ଯେପରି ଝଲମି କରି ଉଠିଲା । ସେହି କରାଳ ଦୃଷ୍ଟିର ପୁଞ୍ଜୀଭୂତ ତେଜରେ, ଦୁର୍ଦ୍ଧର୍ଷ ଦୁଃଶାସନଙ୍କ ଭୂଲୁଣ୍ଠିତ ଶବ ଉପରେ ମୁହୂର୍ତ୍ତିକ ମଧ୍ୟରେ ଭସ୍ମୀଭୂତ ହୋଇ ପଡ଼ିଲା ।

ଯୁଧିଷ୍ଠିର ଆର୍ତ୍ତନାଦ କରି ଉଠିଲେ···'ଏ ପୁଣି କି ଚକ୍ର ଛଳନା କଲେ ଚକ୍ରୀ ? ଦୁର୍ଦ୍ଧର୍ଷ ଯେ ମୋର ଚିର ଅନୁଗତ !

ଶ୍ରୀକୃଷ୍ଣ ଅନୁଚ୍ଚ କଣ୍ଠରେ କହିଲେ ··'ନୀରବ ରହ ନିର୍ବୋଧ ! ଆଜି ଗାନ୍ଧାରୀର ନୟନାନଳରେ ଦଗ୍ଧ ହୋଇଥିଲେ, କାଲି ତୁମେ ହସ୍ତିନାର ସିଂହାସନରେ ଅଭିଷିକ୍ତ ହୋଇଥାନ୍ତ କିପରି ? ଏହା ରାଜନୀତି···ରାଜନୀତିର ଯଜ୍ଞକୁଣ୍ଡରେ ଏହିପରି ବହୁ ବିଶ୍ୱସ୍ତ ଓ ବିଶମ୍ବଦ ଦୁର୍ଦ୍ଧର୍ଷର ଆହୁତି, ଏକ ଦୈନନ୍ଦିନ ଘଟଣା । ସେଥିରେ ତୁମପରି ଧୀମାନ ବିଚଳିତ ହେବା ଉଚିତ ନୁହେଁ, ଯୁଧିଷ୍ଠିର !'

ସଞ୍ଜୟ ବଜ୍ରାହତ ପରି ଶୋକାପ୍ଲୁତ କଣ୍ଠରେ କହିଲେ···'ଏ କ'ଣ କଲେ ମହାଦେବ ! କୁରୁକୁଳର ଏକମାତ୍ର କ୍ଷୀଣ ପ୍ରଦୀପଶିଖା ଦୁର୍ଦ୍ଦକ୍ଷକୁ ସୁଦ୍ଧା ସ୍ୱହସ୍ତରେ ନିର୍ବାପିତ କରିଦେଲେ !'

ଶ୍ରୀକୃଷ୍ଣ ସମବେଦନାର ଅଭିନୟ କରି କହିଲେ···'ଜନନୀ, କିଏ କହେ ଆପଣ ପୁତ୍ରହୀନା ? କୌରବ କିଏ, ପାଣ୍ଡବମାନେ ବା କିଏ ? ସେମାନଙ୍କୁ ଏବେ ପୁତ୍ର ରୂପେ ଗ୍ରହଣ କରନ୍ତୁ ।'

ଶ୍ରୀକୃଷ୍ଣଙ୍କ ଦୁଇ ଓଷ୍ଠାଧରରେ ରହସ୍ୟ ବିଜଡ଼ିତ ହସ !

ଗାନ୍ଧାରୀ ପାଦତଳେ, ଦଗ୍ଧ ଆମ୍ରମୁକୁଳ ପରି ଝଡ଼ିପଡ଼ିଥିବା, ଦୁର୍ଦ୍ଦକ୍ଷର ଭସ୍ମରାଶି ଆଡ଼େ ଚାହିଁ, ଉନ୍ମାଦିନୀ ପରି ଅଟ୍ଟହାସ କରି କହିଲେ···'ବୁଝିଛୁ ଚକ୍ରୀ, ବୁଝିଛୁ ତୁମର ଚକ୍ରାନ୍ତ; କିନ୍ତୁ ସୁଦର୍ଶନ ଚକ୍ରର ଚକ୍ରାନ୍ତ ଓ ଶକ୍ତିରେ କେବଳ କୌଣସି ସିଂହାସନ ରହି ନାହିଁ; କମ୍ବା ରହି ପାରିବ ନାହିଁ । ପ୍ରତାରିତ ଓ ନିପୀଡ଼ିତ ଆତ୍ମାର ଅଭିଶାପରେ ସବୁ ଦଗ୍ଧ ହୋଇଯିବ, ସବୁ ଭସ୍ମ ହୋଇଯିବ । ତୁମର ମଧ୍ୟ ସେଥିରୁ ନିସ୍ତାର ନାହିଁ ଶ୍ରୀକୃଷ୍ଣ ! ସ୍ୱଜନଦ୍ରୋହ ମଧ୍ୟରେ ସୋମବଂଶ ପରି, ବିରାଟ ଯଦୁବଂଶ ମଧ୍ୟ ଦିନେ ନିଷ୍ପ୍ରଦୀପ ହୋଇଯିବ ! ତୁମର ପ୍ରିୟପୁତ୍ର ପ୍ରଦ୍ୟୁମ୍ନ ସୁଦ୍ଧା ସେଥିରୁ ରକ୍ଷା ପାଇବ ନାହିଁ !'

ଉଚ୍ଛ୍ୱସିତ କ୍ରନ୍ଦନର ରୁଦ୍ଧ ଆବେଗରେ ଗାନ୍ଧାରୀ ଦୁର୍ଦ୍ଦକ୍ଷର ଭସ୍ମରାଶି ଉପରେ ଲୋଟି ପଡ଼ିଲେ ।

ଶ୍ରୀକୃଷ୍ଣଙ୍କ ଦୁଇ ଓଷ୍ଠାଧରରେ ଚିର ରହସ୍ୟବିଜଡ଼ିତ ସ୍ମିତ ହାସ୍ୟରେଖା, ଦ୍ୱିତୀୟାର କ୍ଷୀଣ ଶଶିଲେଖା ପରି ବିକ୍ଷୁବ୍ଧ ଅନ୍ଧକାର ମଧ୍ୟରେ ଧୀରେ ଧୀରେ ମଳିନ ହୋଇ ଆସୁଥିଲା ।

ଅସ୍ତାଚଳରେ ଇନ୍ଦ୍ରପ୍ରସ୍ଥର ଗିରିମାଳା ନେପଥ୍ୟରେ, ସର୍ବଦ୍ରଷ୍ଟା ଦିବାକର ମଧ୍ୟ ଅସ୍ତମିତ ହେଉଥିଲେ ।



---

ସାରଳା ମହାଭାରତର 'ନାରୀପର୍ବ'ରେ ବର୍ଣ୍ଣିତ ଗୋଟିଏ ଉପାଖ୍ୟାନ ଅବଲମ୍ବନରେ ଏହି ଗଳ୍ପଟି ଲିଖିତ ହୋଇଅଛି । ଏହା ସଂସ୍କୃତ-ମହାଭାରତରେ ନାହିଁ ଓ ସଂସ୍କୃତ ମହାଭାରତଠାରୁ ସାରଳା ମହାଭାରତର ଏହା ଏକ ବିଷୟଗତ ବୈଷମ୍ୟ । —ଲେଖକ

# ଝୋଦାନୀ

ମେଘ କୁଣ୍ଡା ଝୀଡ଼ୁଛୁ.........

କାହିଁ ପାହାଡ଼ଚୂଲ ଖଣ୍ଡେ ଧଲା ବହଦର କମ୍ବଲ ତଳେ ଅଧା ଦିଶୁନାହିଁ । ବାର୍ଡ଼ କମ୍ପାନୀ ଖାଦାନରେ ଘଣ୍ଟା ପିଟା ହେଲା...ଦିନ ବାରଟା !

ରେଲ୍ ସାଇଡିଂ ବନ୍ଧତଳେ, ଗୁଣ୍ଡ କୋଇଲା ଆଉ ମାଙ୍ଗାନିଜ ପଥର ଗୁଣ୍ଡର ଗୋଟିଏ ଗଦା ଉପରେ ବସି, ଜାନମ୍ ମୁଣ୍ଡା ଚାହିଁ ରହିଥିଲା ସାମନା ରାସ୍ତା ଆଡ଼େ ।

ଜାନମ୍ ମୁଣ୍ଡା ବୁଢ଼ା । ବୟସ ପଚାରିଲେ ସେ କହିବ, 'ଜାଣେ ନାହିଁ ।' ଜୋର କରି, ଧମକେଇ ପଚାରିଲେ କହିବ ଦ' କୋଡ଼ି କି କୋଡ଼ିଏ ! କିନ୍ତୁ ଦେଖିଲେ ମନେ ହେବ ଷାଠିଏ ପାଖାପାଖି । ଅଲଗା ମୁଣ୍ଡବାଳ ସବୁ ପାଚି ଆସିଲାଣି । ଆଖି ଦୁଇଟା ଫୁଲଫୁଲା, ସେଥିରୁ ପାଣି ଝରୁଛି । ଚେପଟା ନାକଅଗଟା ଗୋଟିଏ ମାଂସ ପିଣ୍ଡୁଳା । କଳାଗାରଟଣା, ଶୁଖିଲା ଚମଡ଼ାଢଙ୍କା ମୁହଁ ଉପରେ ସେହି ନାକ ଅଗଟା ପ୍ରଥମ ଦିଶେ ଖୁବ୍ ବଡ଼ ଓ ସ୍ପଷ୍ଟ ହୋଇ । ଅଣ୍ଟାରେ ଖାଦାନ ଧୂଳିରେ କଷରା ଖଣ୍ଡେ କନା, ମୁଣ୍ଡରେ ସେହି ରଙ୍ଗର ଆଉ ଖଣ୍ଡେ କନା ଗୁଡ଼ା ହୋଇ.. । କାନରେ ଫଣ୍ଡେ ଖଣ୍ଡିଆ ସିଗାରେଟ୍ ଖୋସା ହୋଇଛି । ଫ୍ରାନସିସ ଧାଁଙ୍ଗଡ଼ା ଆଜି ସକାଳେ ବଡ଼ବିଲ୍ ବଜାରରେ ତାକୁ ଡାକି ଦେଇଥିଲା ଟିଣେ ଚା' ଆଉ ଖଣ୍ଡେ ସିଗ୍ରେଟ୍ ।

ଫ୍ରାନସିସ୍ କହୁଥିଲା, ପାଦ୍ରୀ ସାଇବ ପାଖକୁ ଗଲେ ଟଙ୍କା ଦେବ, ଲୁଗା ଦେବ, ଜମି ଜାଗା କରାଇଦେବ । ବୁଢ଼ାଦିନେ ଜାନମ୍ ମୁଣ୍ଡା ଶାନ୍ତିରେ, ସୁଖରେ ରହି ପାରିବ ।

ଦୂର୍ ହ...ଦୂର୍ ହ...ଫ୍ରାନସିସ୍ ପରି ସେ ବଡ଼ ବୋଙ୍ଗାକୁ ଛାଡ଼ିଯିବ ନାହିଁ । ଆଉ କେଇଟା ବା ଦିନ ? କପାଳରେ ତ ନାହିଁ । ନେହିଲେ କାହିଁ ଗାଁରେ ସେତ ଥିଲା ମୁଖିଆ । ଦୁଇଝିଅ ଥିଲେ ରସ୍ମମନି, ଫୁଲମନି । ଖିଲ୍ ଖିଲ୍ ହସରେ ଯେପରି ସୁନା ନଈର ପାହାଡ଼ୀ ସୁଅ ଛୁଟୁଥିଲା । ମୁହଁ ଯେମିତି ଇନ୍ଦ୍ର ପୁନେଇଁର ଜହ୍ନ । କଳା ମୁନୁନ ପଥରର ନିହାଣକଟା କୁନ୍ଦା ଦେହ । ଜାନମ୍ ଭାବିଥିଲା, କେଜାଣି କୋଡ଼ିଏ ମୁଣ୍ଡ ପୋଢ଼ ବଳଦ ପାଇଥାନ୍ତା—ରସ୍ମମନି ଆଉ ଫୁଲମନିକୁ ସାଦୀ ଦେଇ, ସୁଖ୍ମୁ ବାବନ୍ଦକୁ । ସେତ ହେଲା ନାହିଁ ! ଆଉ ଏ ଦିନେ ସେ ଯିବ ପାଦ୍ରୀ ସାଇବ ପାଖକୁ !

ଇଙ୍କିଣିଙ୍ଗରଣ, ଜୋର୍ଡ଼ା, କୋଇଡ଼ା, ବଣେଇ ଆଡ଼େ ସାପେଇ ସାପେଇ, ଛଟ୍‌ପଟ୍ ହୋଇ ପାହାଡ଼ କାଟି କାଟି ଚାଲି ଯାଇଛି, ଶାଳଗଛଇଡଙ୍କା ଗେରୁଆ ସଡ଼କ । ସେହି ସଡ଼କରେ ଚାଲିଛି ଅସୁମାରି ଟ୍ରକ ଆଉ ଜୀପ୍, ଘଡ଼ଙ୍କେ ପହୁଡ଼ଙ୍କେ ପାହାଡ଼ଖଣ୍ଡେ ଚମକାଇ । ଡ୍ରାଇଭରର ସୀଟ୍ ପଛଆଡ଼େ ଟ୍ରକ୍ ବାଡ଼ାକୁ ଧରି ଠିଆ ହୋଇଛନ୍ତି ରେଜା ଟୋକୀ । ଜୁଡ଼ାରେ କୁରୁଚ ଫୁଲ, ଓଠରେ ହସ, ଦେହରେ ଖୁଦାବସ୍ତ୍ର । ତାର ରାସ୍ମମନି, ଫୁଲମନି ଏଇମାନଙ୍କ ଦଳରେ କେଜାଣି ଏମିତି କୋଉ ଟ୍ରକରେ ହୁଏତ ଠିଆହୋଇ ଯାଉଥିବେ । ଜାନମ୍‌ର ଜାଲଜାଲୁଆ ଆଖିରେ ସେମାନେ ଆଉ ଦିଶୁନାହାନ୍ତି କି ସେମାନଙ୍କୁ ଦେଖିବା ଆଉ ଦରକାର ନାହିଁ । ···ସେମାନେ ଶାଢ଼ୀ ଲୋଭରେ, ଅନ୍ତର ଲୋଭରେ, କଲବାଜା ଶୁଣିବା ଲୋଭରେ ଖାଦାମୀ ହେଲେ, ଖୀରସ୍ତାନ ହେଲେ । କମ୍ପାନୀ ସାଇବ, ପଞ୍ଜାବୀ ଡ୍ରାଇଭରର ସଙ୍ଗୀ ହେଲେ । ଛି, ଛି, ଇଜ୍ଜତ ଦେଲେ । ଗଲେ । ମଲେ । ଯାଆନ୍ତୁ ! ଜାନମ୍‌ର ବା ଆଉ କେତେଟା ଦିନ ? ଏଇ ଠାକୁରାଣୀ ପାହାଡ଼ର ବୁରୁବଙ୍ଗା, ଶାଳ-ଜଙ୍ଗଲର ବୀରବଙ୍ଗା, କାରୋ ନଈର ନାଗେଏରା, ତଳମାଟିର ହାସାବଙ୍ଗା, ସବୁରି ଉପରେ ଯେ ଦିନ ରାତି ଆଖି ମେଲି ଅନେଇ ବସିଛି ଶମିଲବଙ୍ଗା, ଏମାନଙ୍କୁ ଛାଡ଼ି ଜାନମ୍ ପାଦ୍ରୀ ପାଖକୁ ଯିବନାହିଁ । ଜାନମ୍ ସମସ୍ତଙ୍କ ଉଦ୍ଦେଶ୍ୟରେ ଥରେ ଥରେ ମାଟିରେ ମୁଣ୍ଡ ଲଗାଇ ଦଣ୍ଡବତ୍ ହେଲା ।

ଜାମ୍‌ଦା ଷ୍ଟେସନ ଆଡ଼ୁ ବଡ଼ବିଲ ରେଲ ସାଇଡିଂ ଆଡ଼େ ଗୋଟାଏ ଖାଲି ମାଲ୍‌ଗାଡ଼ି ସିଟି ଦେଇଦେଇ ମାଡ଼ି ଆସୁଛି । ଇଞ୍ଜିନରୁ ଧୂଆଁ ବାହାରୁଛି ଭକ୍ ଭକ୍ । ଏହା ପରେ ଖାଲି ଡବା ଗୁଡ଼ାକରେ ବୋଝେଇ ହୋଇ ଓଡ଼ିଶାର ଗୋଡ଼ି ମାଟି, ରପ୍ତାନୀ ହେବ କଲିକତା ବନ୍ଦରରୁ । ଆମଦାନୀ ହେବ ସୁନା, ଡଲାର ! ଓଡ଼ିଶାର ଆଦିବାସୀ ଜାନମ୍ ମୁଣ୍ଡା, ଯେଉଁ ମାଟିକୁ ପୂଜା କରି ଆସୁଥିଲା ହାସାବଙ୍ଗା ବୋଲି, ଯେଉଁ ପାହାଡ଼କୁ ବଳି ଦେଇ ଆସୁଥିଲା ବୁରୁବଙ୍ଗା ଭାବି, ସେହି ମାଟି ଖୋଳି, ପାହାଡ଼ ଭାଙ୍ଗି, ବିଦେଶୀ ବଣିଆ ଆଜି ସୁନା କୁଢ଼ାଉଛି ! ଯେଉଁ ସାର୍‌ନାରେ ରାତିଅଧରେ ଅରଣ୍ୟ ଦେବତା ବୀରବଙ୍ଗା ବୁଲି ବୁଲି ବଂଶୀ ବଜାଉଥିଲା, ସେ ସାର୍‌ନା ଆଜି କଟା ହୋଇ ପଡ଼ିଛି, ଥୁଣ୍ଟା ଟାଙ୍ଗର । ବୀରବଙ୍ଗା ଏହିପରି ମାଲଗାଡ଼ିରେ ବୁହା ହୋଇ ବନ୍ଦୀ ହୋଇଛି କଲିକତା ବଜାରରେ । ସଭ୍ୟଜଗତର ବଣିଆ ସବୁ ଲୁଟ୍ କରିଛି; ଜାନମ୍ ମୁଣ୍ଡାର ମାଟି, ଜାନମ୍ ମୁଣ୍ଡାର ପାହାଡ଼, ଜାନମ୍ ମୁଣ୍ଡାର ସାର୍‌ନା, ଜାନମ୍ ମୁଣ୍ଡାର ସମ୍ପଦ ! ଶୋଷଣ କରିଛି ଜାନମ୍ ମୁଣ୍ଡାର ଝାଳ, ଜାନମ୍ ମୁଣ୍ଡାର ରକ୍ତ, ଲୁଣ୍ଠନ କରିଛି ପୁଣି ସୁନିଆଁ, କଇଁତା, ରାସ୍ମମନି ଆଉ ଫୁଲମନି ପରି କେତେ ଧାଙ୍ଗଡ଼ୀଙ୍କ ଇଜ୍ଜତ ! ସବୁ ଶେଷହେଲା ପରେ, ପାହାଡ଼ ପଡ଼ିଛି ଫମ୍ପା ହୋଇ, ଗୋଡ଼ା ଜମି ପଡ଼ିଛି ଖାତ ହୋଇ, ରାସ୍ମମନି କୁଆଡ଼େ ଯାଇଛି କୋଉ ଶିଖ୍ ଡ୍ରାଇଭରର ସଙ୍ଗୀ

ହୋଇ, ଫୁଲମନ ଗୁଣ୍ଡୀ ସାଜ ପଡ଼ିଛୁ ବଡ଼ବିଲ ବସ୍ତିରେ ଗନୋଣଆ, ସିଫିଲସ୍‌ରେ ଷଢ଼; ଆଉ ଜାନମ୍ ମୁଣ୍ଡା ବସିଛୁ ସ୍ନେକଲ ପେଟରେ, ଶେଡ଼ା ଫୁଲ ଆଖିରୁ ପାଣି ଗଡ଼ାଇ; ମାଙ୍ଗାନକ୍ ପଥର ଗୁଣ୍ଡର ଗଦା ଉପରେ······ରେଲ ଲାଇନ କଡ଼ରେ !

କାଗ୍ରେ ଗାଁର ଜାନମ୍ ମୁଣ୍ଡା ।

ଖାଲି ଜଣେ ମଣିଷ ନୁହେଁ—ଏ ଲାଞ୍ଛନା, ଏ ଶୋଷଣ ଓ ଏ ନର୍ଯାତନାର ସଙ୍କେତ !

ବାଗିନ୍ ପରେ ବାଗିନ୍ (ଓ୍ୱାଗନ୍) ବୋଝାଇ ହୋଇ ଆସୁଛୁ ବାର୍ଡ଼ କମ୍ପାନୀର ମାଙ୍ଗାନଜ, ଟାଟା କମ୍ପାନୀର ଲୁହା···ଅଣ୍ଡା ପିଠି ନୁଆଁଇ ବାଗିନ୍ ଠେଲି ଠେଲି ଆଣୁଛନ୍ତି ପୁରୁଷ ଆଉ ସ୍ତ୍ରୀ ଯୋଡ଼ଯୋଡ଼ି ହୋଇ । ଅଳସ ଜୁଡ଼ାରେ ଧାତକୀ ଫୁଲ ଶୁଖି ଯାଇଛୁ, ମୁଣ୍ଡର ଝାଳ ବର୍ଷା ପାଣି ସାଙ୍ଗରେ ମିଶି ଗୁଣ୍ଡ ଭିତରେ ବୋହି ଯାଉଛୁ । ନାଲି ଧୂଳିରେ କପର ଶାଢ଼ୀ ତଳୁ କୋଣାର୍କ ନର୍ତ୍ତକୀର ବକ୍ଷଶ୍ରୀ, ଠିକାଦାରର ଲୁବ୍ଧ ଆଖିରୁ ବଞ୍ଚାଇବା ପାଇଁ ଉଦ୍ୟମ ନାହିଁ । ହାୟ ଭଗବାନ୍···ଏତେ ଐଶ୍ୱର୍ଯ୍ୟ, ଏତେ କ୍ଷୁଧା, ଏତେ ସୌନ୍ଦର୍ଯ୍ୟ, ଏତେ ଦାରିଦ୍ର୍ୟ କେବଳ ଓଡ଼ିଶାର ଅନ୍ଧାରମୂଳକ ଏହି ଖାଦାନ୍ ରାଜ୍ୟରେହିଁ ସମ୍ଭବ କରିଛୁ !

ଜାନମ୍ ମୁଣ୍ଡା ପିବାପାଇଁ ଉଠିଲା । କାଗ୍ରେ ଗାଁ ଏଠୁ ପୁଣି ବହେ ବାଟ । କ୍ଷେତବାଡ଼ି କାମ ଦିନରେ ଖାଦାନ୍ ମାନଙ୍କରେ କୁଲି ମଜୁରିଆମାନେ ଖାଦାନ୍ ଛାଡ଼ି ଚାଲିଯାନ୍ତି । କ୍ଷେତକାମ ଶେଷ ହେଲେ ପୁଣି ଫେରିଆସନ୍ତି ଖାଦାନ୍‌କୁ । ସେମାନଙ୍କ ଭିତରୁ କେତେକ କାମ ପାନ୍ତି ପୁଣି ଆଉ ଅନେକେ କାମ ନପାଇ ଫେରିଯାନ୍ତି । ଜାନମ୍ ଖାଦାନ୍‌ରେ କାମ କରିବା ପାଇଁ ଘୃଣାକରେ । ସମସ୍ତେ ଘୃଣା କରନ୍ତି । ସେଥିପାଇଁ ଖାଦାନ୍ ମାଲିକମାନେ ବର୍ଷ କେତୋଟା ତଳେ ସୁଦ୍ଧା, ବାହାରୁ କୁଲି ଆଣି ଖାଦାନ୍ ଚଳାଉଥିଲେ । ଏବେ ଅବଶ୍ୟ ଖାଦାନ୍‌ର ଆକର୍ଷଣ କମ୍ଛୁ । ଖାଦାନ୍ କମାଣରୁ ସୁବିଧାରେ ଦାରୁ ମିଳେ, ବଡ଼ବିଲ୍ ବଜାରରେ ଶସ୍ତା ସିଗ୍ରେଟ୍ ମିଳେ, ଶସ୍ତା ଅତର ମିଳେ, ରଙ୍ଗ ବେରଙ୍ଗ ଶାଢ଼ୀ ମିଳେ···ତେଣୁ ପୂର୍ବର ସେ ଘୃଣା ଆଉ ସେତେ ପରିମାଣରେ ନାହିଁ । ତଥାପି କାଗ୍ରେ, ଝେଣ୍ଡ୍ରା, ଡଲକା, ବେଲ୍‌କୋଣ୍ଡୀ ପ୍ରଭୃତି ଗାଁର ଗ୍ରାମ୍ୟସମାଜରେ ଖାଦାନ୍ ପ୍ରତି ପୂର୍ବର ଭୟ ଓ ଘୃଣା କମିନାହିଁ । ଯେ ଖାଦାନ୍‌କୁ ଗଲା ସେ ହେଲା ଖାଦାନୀ, ତାର ଜୁନିଯାଦ୍ ଗଲା । ଖାଦାନ୍ ଭିତରେ କମ୍ପାନୀ ସାଇବ ବୁରୁବଙ୍ଗା ପାଖରେ ବଳି ପକାଏ, ହାସପାତାଲ ଭିତରେ ଧରି ନେଇ ହାତ ଗୋଡ଼ କାଟି ପକାଏ ବୋଲି ତଥାପି ନାନା ବିଚିତ୍ର ଆଶଙ୍କା ଏହି ସମାଜରେ ଛପି ରହିଛୁ ।

ଜାନମ୍ ମୁଣ୍ଡା ସେହିମାନଙ୍କ ମଧ୍ୟରୁ ଜଣେ ।

ମାତ୍ର ଗତବର୍ଷ ମରୁଡ଼ି ପଡ଼ିଲା । ଖାଦାନ୍ ଗର୍ଭରେ ଯାଇଁ ଜାନମ୍ ମୁଣ୍ଡାର ଜମି ଯାହା ବଳିଥିଲା, ସେଥିରେ ଫସଲ ଜଳିଗଲା । ଜାନମ୍ ବାଧ୍ୟ ହୋଇ ଆସିଥିଲା ଖାଦାନ୍‌କୁ ।

ଆଜି କନ୍ଟ୍ରାକ୍ଟର ଠିକାଦାର ମନା କରିଦେଲା···କାମ ନାହିଁ । କୋଉ ସକାଳୁ ଖୁଣ୍ଟାଏ ସିଝାପିତାଳୁ ଖାଇ ଜାନମ୍ ମୁଣ୍ଡା ବଡ଼ବିଲ ଆସିଥିଲା କାମ ପାଇଁ । କାମ ମିଳିଲା ନାହିଁ । କାଳେ ଗାଁ ଆଉରି ବୃହେ ବାଟ । ଜାନମ୍ ମୁଣ୍ଡା ଯିବା ପାଇଁ ଉଠିଲା ।

## ( ଦୁଇ )

ବଡ଼ବିଲ ବସ୍ତି ମୁଣ୍ଡରେ ମଦଭାଟି ।

ଆଜି ଖାଦାନ୍ ମାନଙ୍କରେ ସପ୍ତାହର ମଜୁରି ମିଳିବା ଦିନ । କାଲି ରବିବାର; ଖାଦାନ୍ ବନ୍ଦ । ଆଉ କିଛିକ୍ଷଣ ରାସ୍ତାରେ ଘାଟରେ ଲାଗିଯିବ ମାତ୍‌ଲମି; ଛୁଟିଯିବ କର୍କଶ କଣ୍ଠରେ ଗୀତର ଲହର, ତା'ରି ଭିତରେ ଲାଗିଯିବ ଦଙ୍ଗାହାଙ୍ଗାମା···ଦାରୁ ଆଉ ବେପରୁଆ ଜୀବନ, ମହୁଆ ଆଉ ଧାଙ୍ଗଡ଼ୀ······ସକାଳକୁ ନିଃଶେଷ ହୋଇ ଯାଇଥିବ ସପ୍ତାହକର ଉପାର୍ଜନ । ଅବଶିଷ୍ଟ ଥିବ ଖାଲି କେତେ ସେର ଚାଉଳ । ନିଜ ନିଜର ପାଉଣା ଆଦାୟ ପାଇଁ ଆସିଲେଣି ଘରର ଦର୍ଜା, ଠେଙ୍ଗାଧରି ଆସିଲେଣି କାବୁଲିବାଲା, ଶ୍ରମିକ ୟୁନିୟନର ନେତା ବୁଣ୍ଡା ମଧ୍ୟ ଆସିଲାଣି ଚାନ୍ଦା ଆଦାୟ ପାଇଁ । ମଦଭାଟି ସାମ୍ନାରେ ଲାଗିଗଲାଣି ଭିଡ଼ । ଆକାଶରେ ମାଛକାଉଆ ବଉଦ ଫାଙ୍କରେ ଉଙ୍କି ମାରିଲାଣି ଜହ୍ନ । ମଦଭାଟି ପଛ ପଡ଼ିଆରେ କିଛି ପିଲା ଦଳେ ଆରମ୍ଭ କରି-ଦେଲେଣି ଝୁମୁର ନାଚ । ମାନସିଂ ମୁଣ୍ଡା ବୋତଲେ ଦାରୁ କାଖତଳେ ଯାକି, ଭାଟି ଭିତରୁ ବାହାରି ଆସିଲା । ଏ ଗୋଳମାଳ ଭିତରେ ତାକୁ ଭଲ ଲାଗୁ ନଥିଲା । ସେ ଖୋଜୁଥିଲା ଦାରୁ ଆଉ ନିର୍ଜନ ନୀରବତା ।

ମାନସିଂକୁ କିଏ ଜଣେ ଗହଳି ଭିତରକୁ ଡାକିଲା······କାହିଁ ଯାଉଛ୍ ବାଦରେ ଭେଇୟା ?

ମାନସିଂ ଫେରି ଚାହିଁଲା । ରାସ୍ତା ଉପରକୁ ବାହାରି ଆସିଲା ଗୋରଖପୁରୀ ଏକ ବୁଣ୍ଡା । ଏ ମଧ୍ୟ ଖାଦାନୀ; ଠାକୁରାଣୀ ଖାଦାନ୍‌ରେ କାମ କରିବାପାଇଁ କମ୍ପାନୀ ବାହାରୁ ଆଣି ରଖିଛି । ପିନ୍ଧିଛି ଖଣ୍ଡିଏ କଳା ଚୁଣ୍ଡା ପ୍ୟାଣ୍ଟ, ଦେହରେ ଖଣ୍ଡେ କଳା କଟ୍ କଟ୍ ଗେଞ୍ଜି । ବେକରେ କଳାଫିତାରେ ଗୋଟାଏ ଚାରିକୋଣିଆ ମାଦୁଲି ଝୁଲୁଛି । କାଖତଳେ ଖଣ୍ଡେ ବାଉଁଶ ଠେଙ୍ଗା । ଦାରୁନିଶାରେ ପାଦ ତାର ଟଳମଳ

ହେଉଛି । କେତେ ଦିନ ତଳେ ଫୁଲ୍‌ମନି ପାଖରେ ବସି ଦୁହେଁ ମଦ ପିଉଥିଲେ । ମାନ୍‌ସିଂ ସେଦିନ ଯାଇଥିଲା ଫୁଲ୍‌ମନି ପାଖକୁ ତାକୁ ଅଧଃପତନର ସେ ନର୍କକୁଣ୍ଡରୁ ଫେରାଇ ଆଣିବା ପାଇଁ । କିନ୍ତୁ ଫୁଲ୍‌ମନି ସେଦିନ ଏଇ ଗୁଣ୍ଡାକୁ ଲଗାଇ ଦେଇଥିଲା, ମାନସିଂକୁ ପିଟିବା ପାଇଁ । ମାତ୍ର ମାନସିଂ ଠାରୁ ମାଡ଼ ଖାଇ ସେ ହାସ୍‌ପାତାଳରେ ପଡ଼ିଥିଲା କିଛି ଦିନ । ମୁଣ୍ଡାଚ୍ଛୁଆ ବାଘଚ୍ଛୁଆ । ତା'ଦେହରେ ହାତ ଦେବ କିଏ ? ଆଜି ତେଣୁ ଗୋରଖପୁରୀ ନାରାୟନ୍ ପରସାଦ୍ ମାନସିଂକୁ ଦେଖି ଆସୁଥିଲା ସେଦିନର ପ୍ରତିଶୋଧ ନେବା ପାଇଁ, ଅଶ୍ରାବ୍ୟ ଭାଷାରେ ମାନସିଂକୁ ଗାଳି ଦେଇଦେଇ । ମାନସିଂ ଦଣ୍ଡେକ ପାଇଁ ଚାହିଁଲା ନାରାୟନ୍‌ର ଡାରୁରଙ୍ଗା ଆଖି ଆଡ଼େ । ତା'ପରେ ତାର ପେଟକୁ ଲକ୍ଷ୍ୟ କରି ମାରିଲା ଏକ ଘୁଷି । ନାରାୟନ୍ ତଳେ ପଡ଼ିଗଲା । ନାରାୟନ୍‌ର ଠେଙ୍ଗା କାଢ଼ିଆଣି ମାନସିଂ ଉଞ୍ଚାଉଥିଲା, ନାରାୟନ୍‌ର ମୁଣ୍ଡ ଉପରକୁ । କିନ୍ତୁ ପର ମୁହୂର୍ତ୍ତରେ କଅଣ ଭାବି ଠେଙ୍ଗାଟା ତଳେ ଫିଙ୍ଗି ଦେଇ ସେ ଚାଲିଗଲା ଲୋକଗହଳି ବାହାରକୁ ।

କି ଗୋଟାଏ ବଣଫୁଲର ମହକ ସନ୍ଧ୍ୟାର ପବନରେ ବହୁଦୂରରୁ ଭାସି ଭାସି ଆସୁଛି । ଗୋଟାଏ ଅଚିନ କୋଇଲି କେଉଁଠୁ କେଉଁ ପତ୍ର ଗହଳରେ ରାବି ଉଠୁଛି ରହି ରହି । ମାନସିଂ ନିଭୃତ ନିର୍ଜନ ରାସ୍ତା କଡ଼ରେ ଗୋଟାଏ ଶାଳଗଛ ଦେହରେ ଆଉଜି ବସି ପଡ଼ିଲା, ସାମ୍‌ନାର ମେଘଆଲୁଅଧିଆ ଜଙ୍ଗଲ ଆଡ଼େ ଚାହିଁ ।

ଏମିତି ଜହ୍ନଆଲୁଅ ଦେଖିଲେ ମନେ ପଡ଼ିଯାଏ ଫୁଲ୍‌ମନିର କଥା, ବହୁଦିନ ତଳର ସେଇ ଇଦ୍‌ପରବ୍‌ର କଥା । ଦୂର୍...ଫୁଲ୍‌ମନି ରଣ୍ଡି । ଫୁଲ୍‌ମନି ମଲାଣି । ଆଉ ଫୁଲମନିର କଥା କାହିଁକି ? ମାନ୍‌ସିଂ ଦାରୁ ବୋତଲ ଖୋଲି ମୁହଁରେ ଲଗାଇଲା । ମାନ୍‌ସିଂର ମନେ ପଡ଼ିଲା ଗାଁ କଥା, ଘର କଥା । ଦଲ୍‌କା ଗାଁରେ ଥିଲା ଘର । ଗାଁ ଶେଷରେ, ପାହାଡ଼ ମୁଣ୍ଡି ଉପରେ ଛବି ପରି ଖଣ୍ଡେ ଘର । ମାନ୍‌ସିଂର ମା ବହୁ ଯତ୍ନରେ ସେ ଘରକୁ ରଙ୍ଗାଇ ଥିଲା......ପ୍ରଥମେ ଧଳାଉଆ ମାଟି ତା' ଉପରକୁ କଳାମାଟି, ଆଉ କଳାମାଟି ଉପରକୁ ହଳଦିଆ ମାଟିର ଗୋଟିଏ ଚଉଡ଼ା ଗାର ଦେଇ ଉପରେ ଟାଇଲର ଛପରଛାଉଣି । ଏବେ ସେ ଘର ଚାରିକଡ଼େ ସବ୍‌ଜା ମକ୍‌କା କ୍ଷେତ ଜଙ୍ଗଲ ପରି ବଢ଼ି ଉଠେ । ଆଜି ସେ ଘର ଭାଙ୍ଗିଗଲାଣି । ମାନ୍‌ସିଂର ବାପ ଗଲା ଲଢ଼େଇକୁ, ଆସାମ । ପାଦ୍ରୀ ସାଇବ ଦାଦନ୍ ଦେଇ ପଠାଇ-ଥିଲା ଲଢ଼ିବାପାଇଁ । ମାନସିଂର ବାପ ଆଉ ସେ ଲଢ଼େଇରୁ ଫେରିଲା ନାହିଁ । ଗାଁ ମୁଣ୍ଡରେ ମାନ୍‌ସିଂର ମା, ତା' ବାପ ଉଦ୍ଦେଶ୍ୟରେ ଶାଳଗଛ ତଳେ ବସାଇଥିଲା ଖଣ୍ଡେ ଶଶାନ୍-ଦିରି । ଦୁଇବର୍ଷ ତଳେ ମାନସିଂର ମା'କୁ ଠାକୁରାଣୀ ଜଙ୍ଗଲରେ ବାଘ ଖାଇଲା । ମାନ୍‌ସିଂ ମା' ଯାଇଥିଲା ପିତାଳୁ, ବଇଙ୍ଗା, ମହୁଆଳୁ ଖୋଳିବା ପାଇଁ ଜଙ୍ଗଲକୁ । ମାନସିଂ ତା' ବାପର ଶଶାନ-ଦିରି ପାଖରେ ତିନକୋଣିଆ ଚକ୍‌କଣ

ପଥର ଖଣ୍ଡେ ଆଣି ତା' ମା ଉଦେଶ୍ୟରେ ପକାଇଦେଲା ଆଉ ଖଣ୍ଡେ ଶଶାନପଥର... ସ୍ମୃତିର ଶେଷଚିହ୍ନ ! ପୁଷମାସରେ ଶାଳଫୁଲ ଝରିଲେ ସେ ଶଶାନ୍ ପଥର ବୁଡ଼ିଯାଏ ପୋତି ହୋଇପଡ଼େ ଶାଳଫୁଲରେ ।

ଆଜକୁ ସେ ଅନେକ ଦିନ ତଳେ ।

କାସେ ଗାଁରେ ହେଉଥିଲା ଇନ୍ଦ୍ ପରବ । ଶାଳ ଜଙ୍ଗଲରେ ନାଲିପଥର, ପଲାଶ ଗଛରେ ନାଲି ପଲାଶର, ହୋରି ଲାଗିଥିଲା । ମହୁଲ ଗଛରେ କଳା ଭଅଁର ମାତାଲ ହୋଇଥିଲା । ତଳେ କାସେ ଗାଁ, ଦଲକା ଗାଁ, ଖେଣ୍ଡା ଗାଁ, ଆଉ ବେଲ-କୋଣ୍ଡୀ ଗାଁର ଯେତେକ ଧାଙ୍ଗଡ଼ା, ଯେତେକ ଧାଙ୍ଗଡ଼ୀ ମାତାଲ ହୋଇଥିଲେ ମହୁଆ ନିଶାରେ, ଝୁମୁର୍ ନାଚରେ, ମାଦଳ ବାଜାରେ, ବଂଶୀର ଲହରରେ । ନାଚ ନାଚ ପାଦ ଥକି ଗଲେ, ଦମ୍ ଛୁଟି ଗଲେ, ଦଳ ଦଳ ହୋଇ ଧାଙ୍ଗଡ଼ା ଧାଙ୍ଗଡ଼ୀ ହାତ ଧରାଧରି ହୋଇ ଚାଲି ଯାଉଥିଲେ ଜଙ୍ଗଲ ଭିତରକୁ, କାରୋ ନଈ କୂଳକୁ । ଆକାଶରେ ଆଜ ପୁଷ୍ପ ପୁନେଇଁର ଚାନ୍ଦ ଉଠିବ । ଯୌବନ ଦରିଆରେ ଢେଉ ଆଜ ଜୁଆର ଉଠିଛି । ଆଜ ସାତ ଖୁନ୍ ମାଫ୍ ।

ଦିନ ଶେଷ ହୋଇ କେତେବେଳେ ସନ୍ଧ୍ୟା ଆସିଲା । ଆକାଶରେ କେତେ-ବେଳେ ଜହ୍ନ ଉଠିଲା । ମାନ୍‌ସିଂର ବଂଶୀ ତଥାପି ବାଜୁଛି । ଜାନମ୍ ମୁଣ୍ଡାର ସାନଝିଅ ଫୁଲମନି ଅନ୍ୟ ଧାଙ୍ଗଡ଼ୀମାନଙ୍କ ସଙ୍ଗରେ କାନ୍ଧକୁ କାନ୍ଧ ମିଶାଇ, ଅଣ୍ଟାକୁ ଅଣ୍ଟା ମିଶାଇ ତଥାପି ନାଚୁଛି...ପବନରେ ଯେମିତି ପେନ୍ଥାଏ କୁରେଇ ଫୁଲ ଦୋଳୁଛି ।

ମାନସିଂ ଫୁଲମନିର ଅଣ୍ଟା ଚାରିଆଡ଼େ ହାତ ବେଢ଼ାଇ, ଅଣ୍ଟାରେ ବଇଁଶୀ ଖୋସି ଚାଲି ଆସିଲା, ଜହ୍ନ ଆଲୁଅରେ ଚୁପିଚୁପିକିଆ ଶାଳଜଙ୍ଗଲ ଭିତରକୁ । ଖଣ୍ଡେ ପଥର ଉପରେ ଦୁହେଁ ବସି ପଡ଼ିଲେ । ମାନ୍‌ସିଂ କହିଲା...'ଦୁଗିନ୍ ଚାନ୍ଦୁ ନଦାହ ବାସ୍କାନା' (ସୁନ୍ଦର ଜହ୍ନରାତି ହୋଇଛି । )

ଫୁଲମନି ଖିଲ ଖିଲ ହସି ମାନ୍‌ସିଂର ଛାତି ଉପରେ ଲେଟି ପଡ଼ି, ପୁଣି ଦୂରେଇ ଗଲା ।

ଆକାଶରେ ପୁଷ୍ ପୁନେଇଁର ଚାନ୍ଦୁ, ପବନରେ ମହୁଲ ଫୁଲର ସୁଆନ୍ ।

ମାନ୍‌ସିଂ କହିଲା...'ଆସ୍ମା ହାନ୍ଦକାନା' (ମୁଁ ତୋତେ ବାହା ହେବି ।

ଫୁଲମନି କାରୋନଈର ପାହାଡ଼ୀ ସୁଅ ପରି ହସି ହସି ମାନ୍‌ସିଂଠାରୁ ଦଉଡ଼ି ପଳାଇଲା ।

ମାନ୍‌ସିଂ ତାକୁ ଖୋଜି ଖୋଜି ଆସି ପାଇଲା କାରୋ ନଈକୂଳରେ, ଗୋଟିଏ ଶାଳଗଛ ତଳେ । ଦୂରରୁ ଶୁଭୁଛି ଇନ୍ଦ୍ ପରବର ବାଜା ଆଉ ଗୀତ । ଫୁଲମନି ଗୁଣୁ ଗୁଣୁ ହୋଇ ଗୀତ ଗାଉଥିଲା । ମାନ୍‌ସିଂ ତା' ପାଖରେ ବସିପଡ଼ି ପଚାରିଲା...

'ଚକାନ୍ ଦୁର୍ଂ ତାନା ?'   ( କ ଗୀତ ଗାଉଛୁ ? ) ଫୁଲ୍‌ମନ କହୁ ଆଲୁଅ ଧୂଆଁ ଏହି ଶାଳ ଜଙ୍ଗଲ ପଣ···ତାକୁ ଧର ହୁଏ, କିନ୍ତୁ ଛୁଇଁ ହୁଏନା । ମାନସିଂ ଫୁଲ୍‌ମନକୁ ଦୁଇବାହୁ ଭିତରେ ଚୁପି ଧରି ତାର କପାଳରେ ଲଗାଇଦେଲା ସିନ୍ଦୁରର ଟୀପ ! ଫୁଲ୍‌ମନ ମାନସିଂର ବାଗଦତ୍ତା । ମାନସିଂ ମନେ ମନେ ଆଶା କରୁଥିଲା ଫୁଲ୍‌ମନ ମାନସିଂର କପାଳରେ ମଧ୍ୟ ପିନ୍ଧାଇଦେବ ସିନ୍ଦୁରର ଟୀକା ! କିନ୍ତୁ ଫୁଲ୍‌ମନ ପୁଣି ଖିଲ୍‌ଖିଲ୍ ହସି ଗାଁ ଆଡ଼କୁ ଦୌଡ଼ି ପଳାଇ ଆସିଲା ।

×          ×          ×          ×

ବୋତଲରୁ ଦାରୁ ଶେଷ ହୋଇଛୁ । ମାନସିଂ ମୁଣ୍ଡା ଖାଲି ବୋତଲଟା ପକେଟ୍ ଭିତରେ ପୁରାଇ ଦେଲା । ପକେଟ୍‌ରେ ତଥାପି ହ୍ୱସ୍କିର ମହକ ପଡ଼ୁଛି । ଏ ବୋତଲେ ଦାରୁରେ ହେବନାହିଁ । ମାନସିଂ ଖଣ୍ଡେ ସିଗ୍ରେଟରେ ନିଆଁ ଲଗାଇ ଟଳ ଟଳ ପୁଣି ବସ୍ତି ଆଡ଼େ ଫେରିଲା । ଆଜ ସେ ଖୁବ୍ ମାତାଲ ହେବା ପାଇଁ ।

ଅଥଚ ଦିନେ ମାନସିଂ ଦାରୁର ବସ୍ନା ପାଇଲେ ପାଖ ମାଡ଼ୁ ନ ଥିଲା । ତା' ଗାଁରେ ଯେଉଁମାନେ ଦାରୁ ପିଉଥିଲେ, ସେମାନଙ୍କ ସଙ୍ଗରେ ସେ ମିଶୁ ନ ଥିଲା । ଖାଦାନକୁ ସେ ଘୃଣା କରୁଥିଲା । କିନ୍ତୁ ଜାନମ୍ ମୁଣ୍ଡା ଯେଉଁଦିନ ଖବର ପଠାଇଲା —ଦଶମୁଣ୍ଡ ପୋଢ଼ୋ ସୁଙ୍ଗୁମୁ ନ ପାଇଲେ ସେ ଫୁଲ୍‌ମନକୁ ଦେବ ନାହିଁ, ମାନସିଂ ସୁଙ୍ଗମୁ ପଇସାପାଇଁ ଆସିଲା ବଡ଼ବିଲ୍ ଖାଦାନ୍‌କୁ । ପଇସା ପଇସା କରି ସେ ସଞ୍ଚିଲା ପୋଢ଼ କଣିବାର ମୂଲ୍ୟ ।

କିନ୍ତୁ ଏହା ଭିତରେ ସବୁ ଓଲଟ ପାଲଟ ହୋଇଗଲା ।

ସେ ବର୍ଷ ପଡ଼ିଲା ମରୁଡ଼ି । ଜଙ୍ଗଲରେ ମହୁଲ ଫଳ, ଚୁର୍‌ଫଳ, କାଙ୍ଗୁ, ଗୁଲ୍‌ଦ ଫସଲ ଆଉ ତେନ୍ଦୁଲ ମଞ୍ଜି, ଯାହା ସଞ୍ଚିତ ହୋଇଥିଲା ସବୁ ଶେଷ ହୋଇଗଲା । ଜଙ୍ଗଲରେ ପିତାଳୁ, ବଇଙ୍ଗା, ମଣ୍ଡେଇ, ମହୁଆଳୁ ଖୋଳି ଖୋଳି ସବୁଆଡ଼େ ଗୋଟିଏ ଗୋଟିଏ ଗ୍ରେଟିଆ ଖାଦାନ୍ ହୋଇଗଲା । କାରେ ଗାଁର ଲୋକେ ତଥାପି ଖାଦାନ୍‌କୁ ଗଲେ ନାହିଁ । ଅଥଚ ଖାଦାନ୍‌ରେ ମିଳେ ପଇସା ଆଉ ଚାଉଳ । ବାଧ୍ୟ ହୋଇ ଶେଷରେ କାରେ ଗାଁରୁ ଜଣ ଜଣ ହୋଇ ଆସିଲେ ଖାଦାନ୍‌କୁ । କିନ୍ତୁ ଜାନମ୍ ମୁଣ୍ଡା ଆସିଲା ନାହିଁ । ଆସିଲା ଏକା ଫୁଲ୍‌ମନ, ଗାଁର ଆଉ କେତେକଙ୍କ ସଙ୍ଗରେ ।

×          ×          ×          ×

ଫୁଲ୍‌ମନ ତା' କୁଡ଼ିଆଘର ଅଗଣାରେ ବସି କାନ୍ଦୁଥିଲା । ଘର କହିଲେ କାଠବାକ୍‌ସରେ ଢଥାଇ ଅନ୍ଧାର କଟ୍‌କଟ ଗୋଟାଏ ଗୁମ୍ଫା । ଉପରେ ଫୁଟା ଦସ୍ତା

ଆଉ ଭଙ୍ଗାଟିଣର ଗ୍ରଛ । ପବନରେ ଟିଣ ଉଡ଼ି ନ ଯିବାପାଇଁ ଉପରେ ଚପା ଯାଇଛି ପଥର, ଇଟା, ସାଇକଲର ଭଙ୍ଗା ରିମ୍, ଆଉ ବସ୍ତିର ଯେତେକ ପରିତ୍ୟକ୍ତ ଆବର୍ଜନା ।

ପୋଡ଼ପଡ଼ା ଜନ୍ତୁଙ୍କୁ ବି ମରଣ ନାହିଁ ! ମେଘଧୂଆ ଆକାଶରେ ତୋରି ଜହ୍ନଆଲୁଅ ପଡ଼ିଛି ଆସି ଫୁଲମନର କୁଡ଼ିଆ ଅଗଣାରେ, ପଚ୍ଚ ବର୍ଷାପାଣିର ଶିଉଳି-ଦଳଭରି ନଳା ଉପରେ, ଫୁଲମନର ବ୍ୟାଧିଗ୍ରସ୍ତ ଶୀର୍ଣ୍ଣ ଦେହ ଉପରେ । ଫୁଲମନ ଦେହରେ ଜର···ଏବେ ସବୁ ଦିନେ ସଞ୍ଜ ହେଲେ ଦେହ ଜରତାପରେ ଖଇ ଫୁଟେ । ଫୁଲମନ ଦାରୁ ପିଇ ଦେହକୁ ତାଜା କରେ । ମୁହଁରେ ସ୍ନୋ ପାଉଡ଼ର ମାଖେ, କୁଣ୍ଡାରେ ଧାତକୀ ଫୁଲ ଖୋସେ, ରଙ୍ଗ ବେରଙ୍ଗର ଶାଢ଼ୀ ପିନ୍ଧେ । ଫୁଲମନକୁ ସଙ୍ଗୀ କରିଛି ଜଣେ ପଞ୍ଜାବୀ ଡ୍ରାଇଭର । ଅସୁରପରି ଚେହେରା, ବିନା ଲାଇସେନ୍ସରେ ଟ୍ରକ ଚଳାଏ । ଦିନକୁ କମାଣି ଶହେଟଙ୍କା । ଦିନେ ଦିନେ ଦୂର ନୋଆମୁଣ୍ଡି, ଗୁଇଁବସା, ଚକ୍ରଧରପୁର ନୋହିଲେ କୋଇଡ଼ା ପର୍ଯ୍ୟନ୍ତ ଯାଏ ଟ୍ରକ ନେଇ । ସେ ଦିନମାନଙ୍କରେ ସେ ଫେରେ ନାହିଁ । ଫୁଲମନ ସେପରି ସନ୍ଧ୍ୟା ମାନଙ୍କରେ ଠିଆ ହୁଏ ଯାଇଁ ମଦଭାଟି ପାଖରେ । ଯାହାକୁ ଦେଖେ ତା ଆଡ଼େ ଗ୍ରହିଁ ହସେ ।

ଆଜି ଖୁବ୍ ମାଡ଼ ଖାଇଛି ଫୁଲମନ, ସେ ପଞ୍ଜାବୀ ଡ୍ରାଇଭର ପାଖରୁ । ଦାରୁ ନିଶାରେ ଖୁବ୍ ପିଟିଗଲା···ଫୁଲମନଠାରୁ ତା ଦେହକୁ କୁଆଡ଼େ ବେମାରି ଡେଇଁଛି । ଫୁଲମନ ମାଡ଼ର ଜ୍ୱାଳାରେ କାନ୍ଦୁ ନଥିଲା, କାନ୍ଦୁଥିଲା ମନର ଜ୍ୱାଳାରେ ।

ଫୁଲମନର ମନେ ପଡ଼ୁଥିଲା ମାନସିଂ ମୁଣ୍ଡାର କଥା, କାଠେ ଗାଁରେ ସେଦିନ ସେଇ ଇନ୍ଦ୍ ପରବର କଥା । ମାନ୍‌ସିଂ ମୁଣ୍ଡାର ହାତଧରି ସେ ମଧ୍ୟ ଗଢ଼ି ପାରିଥାନ୍ତା ସୁନାର ସଂସାର । ଶାଳଫଳ, ମହୁଲ ଫଳ ସାଉଣ୍ଟି, ବଂଶଗଜା, ମଣ୍ଡେଇ ଖୋଳି, ମକା, ମାଣ୍ଡିଆ, କାଙ୍ଗ, କୁଲଥି ବୁଣିକରି, ଶାଳଗଛ ଗ୍ରଇତଳେ ଝୁମୁର, ଡାଲକୋଇ ନାଚ ନାଚି, ସେ ମଧ୍ୟ ବିତାଇ ଦେଇ ପାରିଥାନ୍ତା ଜୀବନ ।

କିନ୍ତୁ···ସେଥର ସେଇ ଯୋର ମରୁଡ଼ି ପଡ଼ିଲା, କାଠେ ଗାଁରୁ ଅନେକ ଲୋକ ଗଲେ ଆଖ ପାଖ ଖାଦାନମାନଙ୍କୁ କାମ କରିବା ପାଇଁ । ଖାଦାନରେ ପଇସା ମିଳେ, ଗ୍ରଉଳ ବି ମିଳେ । ରାମ୍ସମନ ଗାଁ ଲୋକଙ୍କ ସାଥିରେ ଆସିଲା ବଡ଼ବିଲ ଖାଦାନକୁ । ଜାନମ୍ ମୁଣ୍ଡା ମନାକଲା । ଖାଦାନରେ ବୁରୁବଙ୍ଗା ପାଖରେ ବଳି ପକାନ୍ତି, ହାସପାତାଳରେ ରଖି ହାତଗୋଡ଼ କାଟି ପକାନ୍ତି । କିନ୍ତୁ ରାମ୍ସମନ ଜାନମ୍ ମୁଣ୍ଡାର କଥା ନମାନି ଆସିଲା । ମାନସିଂ ମୁଣ୍ଡା ସୁଖ୍‌ମୁ ପଇସା ଯୋଗାଡ଼ କରି ଦଶମୁଣ୍ଡ ପୋଢ଼ କିଣି ଯେଉଁଦିନ ଜାନମ୍ ମୁଣ୍ଡା ପାଖକୁ ଲୋକ ପଠାଇବ, ସେହି ଦିନର ଅପେକ୍ଷା କରି ଫୁଲମନ ରହିଲା ଘରେ ।

ସେଦିନ···ସନ୍ଧ୍ୟା ।

ଫୁଲ୍‌ମନି ଚୁଲ୍ଲୀ ପାଖରେ ବସି ପିଠାକୁ ସିଝାଉଥିଲା ଗୋଟିଏ ହାଣ୍ଡିରେ । ଜାନମ୍ ମୁଣ୍ଡା କୋଉଠୁ ଏ ପିଠାକୁ ଖୋଜି ଆଣିଛି ଯେ, ଯେତେ ସିଝେଇ ପାଣି ଗାଳିଲେ ବି, 'ସେଥିରୁ ପିଠାଅଂଶ ଯାଉନାହିଁ । ରାସ୍ମମନି ଖାଦାନରୁ ଫେରି ଫୁଲ୍‌ମନିଠାରୁ ଅଳ୍ପ ଦୂରରେ କାନ୍ଥକୁ ଆଉଜି ବସି ପଡ଼ିଲା । ଜାନମ୍ ମୁଣ୍ଡା ଘର ସାମନା ଶାଳଗଛ ତଳେ ଖଣ୍ଡେ ଦଉଡ଼ିବୁଣା ଖଟିଆ ପକାଇ ହାଣ୍ଡିଆ ନିଶାରେ ଅଚେତ ହୋଇ ପଡ଼ିଥିଲା । କି ଗୋଟାଏ ସୁନ୍ଦର ଭୁରୁଭୁରୁ ଗନ୍ଧରେ ଘରଆଡ଼ ମହକି ଉଠିଲା ।

ଫୁଲ୍‌ମନି ପଚାରିଲା···'ଏ ବୁଗିନ୍ ସୁଆନ୍ କାହୁଁ ଆସିଲାରେ ରାସ୍ମମନି ?'

ରାସ୍ମମନି ମାତାଲ କଣ୍ଠରେ ହସିଲା ଖାଲି ହି ହି ହୋଇ । ଫୁଲ୍‌ମନି ରାସ୍ମମନି ଆଡ଼େ ଚାହିଁଲା । ରାସ୍ମମନି ଦେହରେ ଆଉ ସେ ମଳି କୋଚଟ ଲୁଗା ନାହିଁ । ପିନ୍ଧିଛି ଖଣ୍ଡେ ଆରାଃ (ଲାଲ) ଶାଢ଼ୀ, କଳାଚକଣ ଜୁଡ଼ାରେ ଖୋସିଛି କୁରୁଚ ଫୁଲ୍, ମୁହଁରେ ବୋଳିଛି ପାଉଡ଼ର, ଦେହରେ ପିନ୍ଧିଛି ଦିକୁ ମାଇକିନାମାନଙ୍କ ପରି ରଙ୍ଗୀନ ଜାମା ।

ଫୁଲ୍‌ମନି ବିସ୍ମୟରେ ପଚାରିଲା···'ଏସବୁ କାହୁଁ ପାଇଲୁରେ ରାସ୍ମମନି ?'

ରାସ୍ମମନି ଖିଲ୍ ଖିଲ୍ ହସି ଲୁଗା ଭିତରୁ ଗୋଟିଏ ସ୍ନୋଟ ଅତର ଶିଶି କାଢ଼ି ଫୁଲ୍ ମନି ଆଡ଼େ ବଢ଼ାଇଦେଲା । ଫୁଲ୍ ମନି ସେ ସ୍ନୋଟ ଶିଶିଟି ନାକ ପାଖରେ ଧରିବାମାତ୍ରେ ଭୁରୁ ଭୁରୁ ସୁଗନ୍ଧରେ ମନ ତାର ସ୍ନିଗ୍ଧ ହୋଇଗଲା । ରାସ୍ମମନି ଯାଦୁକର ପରି ଶାଢ଼ୀ ଅଞ୍ଚଳ ଭିତରୁ ଆହୁରି ପୁଣି କାଢ଼ିଲା ଖଣ୍ଡେ ବାସନା ସାବୁନ୍, ଗୋଟାଏ ଆଇନା । ଫୁଲ୍ ମନି ରାସ୍ମମନି ହାତରୁ ଅଇନାଟା ଝାମ୍ପି ନେଇ ଚୁଲ୍ଲୀ ଅଲୁଅରେ ଥରେ ନିଜ ମୁହଁଆଡ଼େ ଚାହିଁଲା । ସେ ଏତେ ସୁନ୍ଦର, ଏ ଧାରଣା ତାର ନ ଥିଲା କେବେ । ଅଇନାରେ ନିଜର ଚେହେରା ଦେଖି ସେ ଏତେ ମୁଗ୍‌ଧ ହୋଇଗଲା ଯେ ପିଠାକୁ କେତେବେଳେ ହାଣ୍ଡି ତଳରେ ଲାଗି ପୋଡ଼ିଗଲା, ତାକୁ ଜଣା ପୁଞ୍ଜା ପଡ଼ିଲା ନାହିଁ ।

ଫୁଲ୍ ମନି ପଚାରିଲା···'ଏ ସବୁ କାହୁଁ ପାଇଲୁରେ ରାସ୍ମମନି ?'

ରାସ୍ମମନି ଖିଲ୍ ଖିଲ୍ ହସି ଜବାବ ଦେଲା—'ଖାଦାନ୍ ବାବୁ ଦେଲା, କହିଛି ଆହୁରି ଦେବ ।'

ତା ପରଦିନ ରାସ୍ମମନି ଫୁଲ୍ ମନି, ଦୁଇ ଭଉଣୀ ହାତ ଧରାଧରି ହୋଇ, କରମା ଗୀତ ଗାଇ ଗାଇ, ଗ୍ଭଲିଲେ ବଡ଼ବିଲ୍ ଖାଦାନ ଆଡ଼େ ।

ସେ ବନ୍ଧୁହିନ ତଳେ ।

ସେଦିନୁ ଫୁଲ୍‌ମଣି କେତେ ଖାଦାନ ଠିକାଦାରର ସଙ୍ଗୀ ହୋଇ ରହିଛି । ପୁଣି କେତେବାର ଚଡ଼ା ଖାଇ ମାଡ଼ ଖାଇ ଆସିଛି ତାର ସୁମାରି ନାହିଁ । ମାନସିଂ ମୁଣ୍ଡା ଦଶମୁଣ୍ଡ ପୋଡ଼ କଣି ବନ୍ଧୁବାର ଜାନମ୍ ମୁଣ୍ଡା ଦୁଆରକୁ ଆସିଛି । କିନ୍ତୁ ସବୁଥର ଫେରିଛି ଫୁଲ୍‌ମଣି ଠାରୁ ଦୂର୍ ଦୂର୍, ମାର୍ ମାର୍; ଗାଳି ଶୁଣି । ଆଜି ଅବଶ୍ୟ ଖାଦାନର ମୋହ ଗଲଣି । ବାସ୍ନାତେଲ, ସାବୁନର ଚଟକ ଗଲଣି । ଫୁଲମଣି ବେଳେ ବେଳେ ଭାବେ କାବେ ଗାଁରେ, ଶାଳଗଛ ତଳେ ଛାଉଆ ମାଟିରେ ରଙ୍ଗା ସେହି ଘରଟି ଭିତରକୁ ଧାଇଁ ପଳାଇବା ପାଇଁ । ଫୁଲମଣି ଦିନେ କେତେ ଦୂରବାଟରୁ ଲାଲମାଟି, କଳାମାଟି ଆଣି ନିଜ ହାତରେ ଲିପି ପୋଛି ସେ ଘର ଝଣ୍ଟିକୁ ଚକ୍ ଚକ୍ କରି ରଖିଥିଲା । କିନ୍ତୁ ଆଜି କାବେ ଗାଁରେ ସମାଜରେ ତାର ସ୍ଥାନ ନାହିଁ । କାବେ ଗାଁ । ରାସ୍ତାରେ ତା' ପାଇଁ ଆଜି କଣ୍ଟା ଛଟା ହୋଇଛି ।

× × × ×

ଖାଦାନ ସାହେବ ବଙ୍ଗଳାରେ ଘଣ୍ଟା ପିଟା ହେଲା···ରାତି ବାରଟା । ସବୁଆଡ଼େ ନୀରବ, ନିର୍ଜନ । ଆକାଶରେ ମେଘ ପରେ ମେଘ ଜମି ଆସୁଛି । ମେଘର ଗହଳି ଭିତରେ ଜହ୍ନ ମହଲା ଦିଶିଲଣି । ମାନସିଂ ମୁଣ୍ଡା ବଡ଼ବିଲ ବଜାର ଶେଷରେ ଫୁଲମଣିର କୁଡ଼ିଆ ଦୁଆରେ, ଅନ୍ଧାରରେ, ଦାରୁନିଶାରେ ଟଳଟଳ ଛିଡ଼ା ହେଲା । ଭିତରୁ ଶୁଭୁଛି ଫୁଲମଣି କାହାସଙ୍ଗରେ ଦାରୁ ପିଇ ମାତାଲ କଣ୍ଠରେ ହସୁଛି, କଥା କହୁଛି । ମାନସିଂ ମୁଣ୍ଡା ଚିତା ବାଘ ପରି ଲେପ୍‌ଟି, ବାକ୍‌ଲ ଫାଙ୍କରେ ଚାହିଁ ଦେଖିଲା ସେହି ନାରାୟନ୍ ପରସାଦ ଚଟାଣରେ ପଡ଼ିଛି ଚିତ୍ ହୋଇ, ଦୁଇକାତ ମେଲାଇ । ଫୁଲମଣି ତା ଛାତି ଉପରେ ମୁଣ୍ଡ ରଖି ପାଗଳୀ ପରି ହସୁଛି, କଥା କହୁଛି । ଗୋଟାଏ ଲଣ୍ଠନ ଝଣ୍ଟିଆ ଖଟିଆ ତଳେ ଜଳୁଛି ମିଞ୍ଜି ମିଞ୍ଜି ହୋଇ । ଦୁଇ ତିନିଟା ଦାରୁ ବୋତଲ ଏଣେ ତେଣେ ପଡ଼ିଛି ଖାଲି ହୋଇ ।

ନାରାୟନ୍ ପରସାଦ୍ ସନ୍ଧ୍ୟାରେ ମାନସିଂ ଠାରୁ ମାଡ଼ର ଜ୍ୱାଲା ଭୁଲି ନଥିଲା । ସେ କହିଥିଲା ଏଥର ମାନସିଂ ମୁଣ୍ଡାକୁ ସେ ପାଇଲେ ଖୁନ୍ କରିଦେବ । ଖୁନ୍ କରି ତାକୁ ଖାଦାନ ଭିତରେ ପୋତିଦେବ । ମାନସିଂ ନାଁ ଶୁଣି ଫୁଲମଣି ଚିତ୍କାର କରି ଉଠିଲା···'ତୁଇ ନାମରଦ୍ । ମୁହଁରେ ଖାଲି ବାହାଦୁର୍ । ଯୋଉ ଦିନ ମାନସିଂକୁ ମାରି ଖାଦାନ ଭିତରେ ପୋତିବୁ, ସେଇଦିନ ଆସିବୁ । ଯା, ଯା ଏଠୁ । ଭୁଟା ନାମରଦ୍ ।'

ମାନସିଂ ନ ମଲେ ଫୁଲ୍‌ମଣିର ନିତ ନିଭ ଆସୁଥିବା ଜୀବନରେ ଯେମିତି ଶାନ୍ତି ନାହିଁ !

ନାରାୟଣ୍ ପରସାଦ୍ କହିଲା...'ଠାକୁର୍‌ରେ ଶୋଷା, ଦେଖିବୁ ମାନସିଂକୁ ମାଣ, କେମିତ ମୁଁ ସାଫ୍ କରିଦେବ। ସତୁରୁ ଦନେ ସନ୍ତ ହେଲେ ସେ ଠାକୁରାଣୀ ଦୁଆରେ ଫେରେ ଭୁଙ୍ଗ୍ ହୁଇଁ ଆଡ଼େ। ଏକା ପାହାରକେ ମାନସିଂ ତ ମାନସିଂ ତା' ବୋପା ସୁଦ୍ଧା ଖତମ ହୋଇଯିବ।'

ନାରାୟଣ୍ ଉତ୍ତେଜନାରେ ଚିତ୍କାର କରି ଉଠିଲା...ଜୟ ବଜରଙ୍ଗ୍ ବାଲି କ ଜୟ।'

ମାନସିଂ କେଉଁଠି ଥିଲା; ବାପ କଥା ଶୁଣି କ୍ଷିପ୍ରପଣ ବାଙ୍କଲିଗୁଲିର କାଠ କବାଟରେ ଗୋଟାଏ ଧକ୍କା ମାରିଲା। କବାଟଟା ଭିତରୁ ଖୋଲି କାନ୍ଥରେ ବାଡ଼େଇ ହୋଇଗଲା। ଫୁଲ୍‌ମନ କୁଡ଼ିଆ ଭିତରେ ମାନସିଂ ମୁଣ୍ଡାର ରୁଦ୍ରମୂର୍ତ୍ତି ଦେଖି, ଭୟରେ ଚିତ୍କାର କରି କହିଲା...'ଖବର୍ ଖବର୍ ଏଠୁ ମାନସିଂ। ନୋହିଲେ ମୁଁ ପୋଲିସ ଡାକିବ।'

କୁଡ଼ିଆ କୋଣରେ ପଡ଼ିଥିବା ଖଣ୍ଡିଏ ଟାଙ୍ଗିଆ ହାତ ମୁଠାରେ ଧରି, ଚିତାବାଘ ସାମ୍‌ନାର ଶୀକାର ଆଡ଼େ ଗୁହିଁଲା ପରି, ମାନସିଂ ଗୁହିଁ ରହିଲା ନାରାୟଣ୍ ପରସାଦ ଆଉ ଫୁଲ୍‌ମନ ଆଡ଼େ। ନାରାୟଣ ପରସାଦ୍ ଅବସ୍ଥାର ମାରାତ୍ମକତା ବୁଝି, ଉଠୁଥିଲା ମାନସିଂ ଉପରେ ଲମ୍ଫ ଦେଇ ତାକୁ କାବୁ କରିଦେବା ପାଇଁ। ମାତ୍ର ଟାଙ୍ଗିଆ ଚୋଟରେ ତାର ମୁଣ୍ଡ ଦେହରୁ ଅଲଗା ହୋଇଗଲା। ପିଚ୍ ପିଚ୍ ରକ୍ତଛିଟାରେ ଲଣ୍ଠନଟା ଲିଭିଗଲା। ଫୁଲ୍‌ମନ ଚିତ୍କାର କରି ଚେଷ୍ଟା କରୁଥିଲା ବାହାରକୁ ପଳାଇ ଆସିବା ପାଇଁ, ମାତ୍ର ମାନସିଂ ତା'ର ଚୁଟି ଧରି ଝିଙ୍କି ଆଣି, ନାରାୟଣ୍ ପରସାଦ୍ ଉପରେ ତାକୁ ପକାଇ, କୁରାଢ଼ି ଚୋଟରେ ତାର ଗଣ୍ଡି ମୁଣ୍ଡ ମଧ୍ୟ ଅଲଗା କରିଦେଲା।

( ତନି )

ଥାନାରେ ଦୁଇ ହାତରେ ଦୁଇ କଟାମୁଣ୍ଡ ଧରି ପୁଲିସ ପାଖରେ ଆପେ ଆପେ ଧରା ଦେଲା ମାନସିଂ।

ସକାଳୁ ବର୍ଷା ପୁଣି ଲଗାଇଛୁ। ଅଝରଝର ବର୍ଷା। ବିରାମ ନାହିଁ।

ରବିବାର। ଖାଦାନ ବନ୍ଦ।

ଜାନମ୍ ମୁଣ୍ଡା କାଦୁ ନଈ କୂଳେକୂଳେ ବୁଲି ଝିରିଆ ପୋକ ଧରି ବୁଲୁଥିଲା। ଜାନମ୍ ମୁଣ୍ଡା ଅନେକ ଦିନୁ ଝିରିଆ ପୋକ ଖାଇନାହିଁ। ଝିଅମାନେ ଥିଲେ ଆଗେ ଖୁବ୍ ଝିରିଆ ପୋକ, କାଇଡମ୍ବ, ଭୁରକୁଟୀ ପୋକ ଆଣୁଥିଲେ। ଆକାଶରେ ଅସୁମାର

ଝିଣିଆ ପୋକ ଦେଖି ଜାନମ୍ ମୁଣ୍ଡାର ପାଟି ଲାଳେଇ ଯାଉଥିଲା । ଉଇହୁଙ୍କା-ମାନଙ୍କର ଗାତ ମୁହଁ ମାନଙ୍କରେ ଜାନମ୍ ମୁଣ୍ଡା ଶାଳପତ୍ରର ଠୁଙ୍ଗାମାନ ଲଗେଇ ଦେଇ ଯାଇଛି । ହୁଙ୍କା ଭିତରୁ ଶହ ଶହ ଝିଣିଆ ପୋକ ବାହାରି ଆସି ପିଟୁଡ଼ାକେ ସେ ଠୁଙ୍ଗାମାନ ଭରାଇ ଦେଉଛନ୍ତି । ଠାକୁରାଣୀ ପାହାଡ଼ ଉପରେ ମେଘ ରହି ରହି ଗର୍ଜନ କରି ଉଠୁଛି । କାସି ନଈରେ ବହଳ ନାଳପାଣିର ସୁଅ କଳକଳ ହୋଇ ଉଠୁଛି ।

କିଏ ଜଣେ ପଛରୁ ଡାକିଲା···'ବବା, ଏ ବବା ।'

ଜାନମ୍ ଫେରି ଚାହିଁଲା । ତାଙ୍କରି ଗାଁର କରକଣ୍ଡା ମୁଣ୍ଡା ଜାନମ୍ ଆଡ଼େ ଧାଇଁ ଧାଇଁ ଆସୁଛି । କରକଣ୍ଡା ବଡ଼ବିଲ ଖାଦାନରେ କାମକରେ, ରହେ ହଟିଂରେ ।

ଜାନମ୍ ପାଖକୁ ଧାଇଁ ଆସି କରକଣ୍ଡା କହିଲା···'ଫୁଲମନି ଲାସ୍ ପଡ଼ିଛି ଥାନାରେ, ଯା ନେଇ ଆସିବୁ । କାଲି ରାତିରେ ଫୁଲମନି ଆଉ ଜଣେ ଗୋରଖ-ପୁରିଆକୁ ଖୁନ କରି ଦେଇଛି ମାନସିଂ ମୁଣ୍ଡା ।'

ଜାନମ୍ ନିର୍ବୋଧ ପରି ଖାଲି ଚାହିଁ ରହିଲା ଠାକୁରାଣୀ ପାହାଡ଼ ଆଡ଼େ, କରକଣ୍ଡାର ମୁହଁ ଆଡ଼େ । ଝିଣିପୋକ ଧରିବା ସେ ଭୁଲିଗଲା ।

× × × ×

ମୁଣ୍ଡା ସମାଜରେ ଶବକୁ ପୋଡ଼ିଦେବା ବିଧି । କାସି ନଈ କୂଳରେ ଜଳି ଜଳି ଆସୁଥିଲା ଫୁଲମନିର ଚିତା । ଆକାଶରେ ମେଘ ଜମି ଆସୁଥିଲା ପୁଣି ଅନ୍ଧାର କରି—କାସି ନଈର ଉଚ୍ଛୁଳା ପାଣିରେ ଫୁଲମନିର ଚିତାର ଆଲୁଅ ନାଚି ଉଠୁଥିଲା, ଅରଣ୍ୟକନ୍ୟା ଫୁଲମନି ପରି । ଜାନମ୍ ଠାକୁରାଣୀ ପାହାଡ଼ଆଡ଼େ ଚାହିଁ ଭାବୁଥିଲା, ସବୁତ ଗଲା ଏଠି ଆଉ ରହିଲା କଅଣ ? ଏହାପରେ ଚାଲିଯିବ ସେ ଏ କାସେ ଗାଁ ଛାଡ଼ି । କିନ୍ତୁ ଯିବ କୁଆଡ଼େ ? ସିଂହଭୂମି ? ସେଠି ସୁଦ୍ଧା ଖାଦାନ୍ ! ବଣେଇ ? ସେ ଆଡ଼େ ବି ଖାଦାନ ! ପାଲଲହଡ଼ା; ସେଠି ଜଙ୍ଗଲ ଠିକାଦାର ଆଉ ଜଙ୍ଗଲ ବାକି ରଖିଥିବ କି ନାହିଁ କେ ଜାଣେ ? ଠିକ୍ ଜାଣିଥିଲା ଜାନମ୍ ମୁଣ୍ଡା, ଖାଦାନକୁ ଥରେ ଗଲେ ମଣିଷ ଆଉ ଫେରେ ନାହିଁ । ବୃରୁବଙ୍ଗା ରକ୍ତ ଶୋଷି ମାରି ପକାଏ । ବୃରୁବଙ୍ଗାକୁ ହାଣିଲେ ସେ ମାରିବ ନାହିଁ ? ଫୁଲମନି, ସାମ୍ବମନି, କାହିଁକି ସେ ସବନ ଶର ବାଟରେ ଗଲେ କେଜାଣି ? ଜାନମ୍ ମୁଣ୍ଡା ଜଙ୍ଗଲ ଆଡ଼େ ଚାହିଁଲା । ଆଗେ ଏଠି ମୟୂର ନାଚୁଥିଲା, ମହାବଳ ଗର୍ଜୁଥିଲା···ବୃରୁବଙ୍ଗା ରାତି ଅଧରେ ବଇଁଶୀ ଫୁଙ୍କି ବୁଲୁଥିଲା । ଆଜି ସେଠି ଶୁଭୁଛି ଖାଲି ଗଛ ଦେହରେ

କୁସୁଡ଼ୀ ପାହାଡ଼ର ଠକ୍ ଠକ୍ ଶବ୍ଦ ! ସାର୍ନା ଗଲା, ଜମି ଗଲା, ପାହାଡ଼ ଗଲା, ସସ୍ନମନ ଫୁଲ୍‌ମନ ଗଲେ । ଆଗରୁ ଯାଇଥିଲା ସେମାନଙ୍କ ମା । ଜାନମ୍ ମୁଣ୍ଡାର ଦୁଇ ଆଖି ଲୁହରେ ଛଳ ଛଳ ହୋଇଗଲା ।

ଫୁଲମନର ଚିତା ନିଭିଗଲା । ଚିତାରୁ ମୁଠାଏ ପାଉଁଶ ଆଉ ଖଣ୍ଡେ ହାଡ଼ ଆଣି ଜାନମ୍ ମୁଣ୍ଡା ଫେରିଲା ଗାଁ ଆଡ଼େ ।

ତା' ପରଦିନ ଗାଁ' ମୁଣ୍ଡ ବୁଢ଼ା ଶାଳଗଛ ତଳେ ଫୁଲ୍‌ମନର ମା'ଆର ଶଶାନ-ଦିରି ପାଖରେ ସେ ଗାତ ଖୋଳି ସେଥିରେ ପୋତି ଦେଲା ଫୁଲମନର ପାଉଁଶ ଆଉ ଖଣ୍ଡେ ହାଡ଼ । ତା'ପରେ ଖଣ୍ଡେ ଚକ୍‌କଣ, ଚିକ୍‌କୋଣିଆ ପଥର ଆଣି ପୋତିଦେଲା । ତା'ଉପରେ ଫୁଲମନର ଶଶାନ-ଦିରି ଉପରେ କୁରେଇ ଗଛରୁ କେଇଟା ଧଳା କୁରେଇ ଫୁଲ ବଡ଼ ବଡ଼ ଲୁହ ବିନ୍ଦୁପରି ତଳେ ଝରି ପଡ଼ିଲା ।

ଜାନମ୍ ମୁଣ୍ଡାର ବିଶ୍ୱାସ, ଏ ବୁଢ଼ା ଶାଳଗଛ ବୁରୁବଙ୍ଗାର ଆସ୍ଥାନ । ତା' ଉପରେ ଠିକାଦାର ଆଲ୍‌କାତରା ଦାଗ ଦେଇ ଗଲାଣି । କେବେ ତା ଦେହରେ କୁରାଢ଼ୀ ଶବ୍ଦ ବାଜିବ କେଜାଣେ ? ଜାନମ୍ ମୁଣ୍ଡା ବୁରୁବଙ୍ଗା ଉଦ୍ଦେଶ୍ୟରେ ମାଟିରେ ମୁଣ୍ଡ ଲଗାଇ ପ୍ରଣାମ କରି, ଅଚିହ୍ନା ଅଜଣା ବାଟରେ ଚାଲିଲା ସାର୍‌ନାର ସନ୍ଧାନରେ, ଶୋଷଣ ଓ ଲୁଣ୍ଠନ-ସଭ୍ୟତାର ଆକ୍ରମଣରୁ ଆତ୍ମରକ୍ଷା ପାଇଁ । ଗଲାବେଳେ ଫୁଲ୍‌ମନ ମା ଶଶାନ-ଦିରି ଆଡ଼େ ଗୁହିଁ, ଗଛପତ୍ର ଅନ୍ତରାଳରେ ଦିଶୁଥିବା ତାଉରଙ୍କା ବନ୍ଧୁ ପୁରାତନ, ବନ୍ଧୁ ଆପଣାର ସେ ଘର ଆଡ଼େ ଗୁହିଁ ଜାନମ୍ ମୁଣ୍ଡାର ଆଖିରେ ସାମନା ବାଟ ଜାଲଜାଲୁଆ ଦିଶୁଥିଲା । ଜାନମ୍ ମୁଣ୍ଡାର ଶଶାନ-ଦିରି ଏଠାରୁ କେତେଦୂରରେ କେଉଁଠି ପୋତାହେବ କେଜାଣେ ?

ଜାନମ୍ ମୁଣ୍ଡା ଦୁଇ ଆଖିରୁ ଲୁହ ପୋଛିଲା । ଟ୍ରକ୍ ପରେ ଟ୍ରକ୍ ଛୁଟିଛି କୋଇଡ଼ା ଖାଦାନ୍ ଆଡ଼େ । ଜାନମ୍ ପିଚ ରାସ୍ତା ଭିତରେ, ଛପି ଛପି ଜଙ୍ଗଲି ବାଟରେ ଆଗକୁ ଆଗକୁ ଚାଲିଲା ।

[ ୧୯୭୭ ]



# ମୃତ୍ତିକାର ଆତ୍ମା

ପିଚୁଢ଼ଳା ବଡ଼ ସଡ଼କରୁ ବାଙ୍କି ଯାଇଛି···ହଣପୁର ରୋଡ଼ ।

ଆରମ୍ଭରେ ହଣପୁର ବଜାର, ଶେଷରେ ଫିରଫିରି ଥାନା । ତା ପାଖକୁ ଗ୍ରେଟିଆ ମଫସଲି ବଜାର ଖଣ୍ଡେ । ଫିରଫିରି-ବ୍ଲକ ହେବା ଦିନୁ ସେଠି ଖୋଲିଛି ବ୍ଲକ ଅଫିସ, ବ. ଡ଼. ଓ. ଓ ଅନ୍ୟ ଗାଉଁଲି ହାକିମମାନଙ୍କ ପାଇଁ ଆକ୍‌ବେଷ୍ଟସ୍-ଛାଉଣୀ କେତୋଟା ସରକାରି କ୍ୱାଟରସ୍ ତିଆରି ହୋଇଛି । ତା ସେପାଖକୁ ଦଣ୍ଡ୍ରା ସେପଟେ ସ୍ୱରୂପ ନଈ ! ହଣପୁର-ଫିରଫିରି ରୋଡ଼ ସରିଲା ।

ଜାତୀୟ-ଯୋଜନାର ସଙ୍କେତ ଓ ସମୃଦ୍ଧିରୁ ମେଣ୍ଟାଏ ଛିଣ୍ଡି ପଡ଼ିଚ, କିଆ ଗୋହିରି, ବାଉଁଶଝାଡ଼ ଆଉ ବିଲପାଟଘେରା ଏଇ ଅଞ୍ଚଳରେ ।

ହଣପୁର-ଫିରଫିରି ରୋଡ଼ ନୂଆ ପିଚୁ ହୋଇଚ । ପଚୁଢ଼ଳା ସଡ଼କ ନାକସଳଖରେ ସିଧା ଲମ୍ବିଯାଇଛି, ଖଣ୍ଡେ କଳା ଫିତା ପରି ! ନବ୍ରୁଳି କନ୍ୟାର ଅଣ୍ଟା ଗୁରିପଟେ ଗୋଠ ପରି, ଏକଦା ଯେଉଁ ମାଟି-ସଡ଼କଟି ଅଙ୍କେଇ ବଙ୍କେଇ ଗାଁ ଦାଣ୍ଡମାନଙ୍କରେ ମୋଡ଼ ପରେ ମୋଡ଼ ବୁଲି, କେଉଁଠି କିଆଗୋହିରି ଭିତରେ, କେଉଁଠି ବାଉଁଶଝାଡ଼ ତଳେ, ଆଉ କେଉଁଠି ବା ଝଙ୍କାଳିଆ ଆମ୍ବତୋଟା କଡ଼ଦେଇ ବିଲପାଟ ଭିତରେ ସର୍ପିଳ ଛନ୍ଦରେ ଫିଟି ପଡ଼ିଥିଲା, ବହଳ ପିଚୁ ଆଉ କଳା ଗେଞ୍ଚିର କବର ତଳେ ତାର ଦେହାନ୍ତର ଘଟିଛି । ପିଚୁ ସଡ଼କ ଦାଣ୍ଡିର ଦୁଇ ପାଖରେ ଧାରେ ଧାରେ ସରୁଆ ପାଦଚଲା ରାସ୍ତା, ତା ପାଖକୁ ଛନଛନିଆ ଘାସର ସବୁଜ ରେଖା ।

ସଡ଼କଟା ଅଳ୍ପ ଦୂରରେ ବାଙ୍କି ଗୋପାଳପୁର ଗାଁକୁ ବାଁହାତ କାଟି ପୁଣି ଲମ୍ବିଯାଇଛି, ଫିରଫିରି ଆଡ଼େ ।

କିଲୋମିଟର ଖୁଣ୍ଟି ପାଖରେ ସଡ଼କ ଉପରେ ଇଟା-ସିମେଣ୍ଟର ଗୋଟିଏ ନୂଆ ପୋଲ ମଧ୍ୟ ତିଆରି ହୋଇଛି । ମାନ୍ଧାତା ଅମଳର ଜିଲ୍ଲାବୋର୍ଡ଼ ଦିନରୁ ଶୁକୁନଈ-ଜୋଡ଼ ଉପରେ ଯେଉଁ ଅଣଓସାରି ପୋଲଟି, ଉପରକୁ ଉଙ୍ଗାଇଥାଇଁ ଥିଲା ଉଦରଟିଏ କାଢ଼ି ତିଆରି ହୋଇଥିଲା, ସାମାନ୍ୟ ଅଣହୁସିଆରରେ ଯେଉଁ ପୋଲ ଉପରେ ଶଗଡ଼ ଓଲଟୁଥିଲା, ସାଇକଲ ଚଢ଼ାଳିମାନେ ମାଙ୍କଡ଼ଚଢ଼ ମାରୁଥିଲେ, ଏବେ ସେ ପୋଲଟି ଭଙ୍ଗାହୋଇ ତା ସ୍ଥାନରେ ଏହି ବ୍ରିଜ୍‌ଟି ତିଆରି ହୋଇଛି । ମାତ୍ର ପୋଲର

ଅର୍ଦ୍ଧବୃତ୍ତାକାର ଶିଳଣ ତଳେ ଯେଉଁ ଶୁକନଈ କଳାମୁଗୁନ ପାଟ ଆଉ ତଳର ଧାନ-କ୍ଷେତ ଆଡ଼କୁ ବହିଯାଉଥିଲା, ଆଜି ମଧ୍ୟ ସେଇ ଜୋଡ଼ର ଗୋଟିଏ କ୍ଷୀଣ ଧାର ସେହିପରି ବହିଯାଉଛି । ଦଳୁଆ ପାଣି ଧାରେ ଧାରେ ଜାତ ଜାତ ଶିଉଳି ଫୁଲ ଧଳାକଇଁ, ରଙ୍ଗାକଇଁ, ସେମିତ ଫୁଟୁଛି, ବଗସବୁ ମୌନୀ ସାଧୁ ପରି ପାଣି ଧାରେ ଧାରେ ସେମିତ ବସୁଛନ୍ତି, ମାଛରଙ୍କାଟାଏ ସେମିତ କୁଆଡୁ ଉଡ଼ିଆସି, କେତେବେଳେ ଝାମ୍ପଟାଏ ମାରି ସେଇ ବୁଢ଼ା ଅର୍ଜୁନ ଗଛ ଉପରକୁ ଉଡ଼ିଯାଉଛି, କାଣ୍ଡୀ ସାହିର କେତେକ ଲଙ୍ଗଳା ପିଲା ସେମିତ ପାଣି କାଦୁଅରେ ଚକଟି ହୋଇ କରଣ୍ଡି ମାଛ ଚପୁଛନ୍ତି । ସେଇ ନଗ୍ରୁଟିଆ ତାଳଗଛ ମୂଳେ ଭଜନୀ ସ୍ୱାଇଁ ତା ବଳଦରେ ଆଣ୍ଠେଇ ପଡ଼ ଯେମିତ ଏକଦା ହଳକାମ କରୁଥିଲା, ତା ପୁଅ ଧୋବଳିଆ ଏବେ ସେମିତ ଆଣ୍ଠେଇ ପଡ଼ି ଘାସ ତାଛୁଛି, ଅଳ୍ପ ଦୂରରେ କେତୋଟି ମାଇକିନା ଖାଲି ଟୋକେଇମାନ କାଖରେ ଧରି, ସେମାନଙ୍କ ଶାଶୁମାନଙ୍କ ପରି କ'ଣ ଖୋଜି ବୁଲୁଛନ୍ତି କେଜାଣି ? କନ୍ଲୁ ପୌଷରେ ପୁନେଇ ଫସଲ ସବୁ ଅମଳ ସରି, କେଉଁଦିନୁ ବେପାରୀମାନଙ୍କ ଟ୍ରକରେ ସହରକୁ ବୁହା ସରିଲାଣି । ସେଦିନର ଫସଲଭରା କ୍ଷେତସବୁ ଆଜି ଉଦାସ ଶୂନ୍ୟତାରେ ଫଗୁଣରେ ଟାଣ୍ଡି ଆଭୁତ-ଉଡ଼ା ନଗ୍ରୁଟିଆ ମଧ୍ୟାହ୍ନରେ ଗ୍ରୁଡ ମେଲି ପଡ଼ି ରହିଅଛି ।

ସିଦ କାନଗୋଇ ଖରା ଆଡ଼କୁ ପିଠି କରି ଛିଣ୍ଡା ମଫଲରର ଖଣ୍ଡେ ଆକର୍ଣ୍ଣ ଗୁଡ଼ାଇ, ଅତୀତରେ ଏକଦା ହଳଦିଆ ରଙ୍ଗର ଅବଶେଷ ଠାଏ ଠାଏ ଲାଗି ରହିଥିବା ଖଦି ଦୋଷଡ଼ା ଖଣ୍ଡେ ଦେହରେ ଘୋଡ଼ାଇ, ରେଖାଙ୍କିତ କୁଞ୍ଚିତ ଶୀର୍ଣ୍ଣ ମୁହଁର ନାକ ଆଗରେ ଟିଣଫ୍ରେମବନ୍ଧା ଚଷମାଟିଏ ଝୁଲାଇ, ପାଖରେ ତେଲପଗୁ ବାଉଁଶ ଠେଙ୍ଗା ଖଣ୍ଡ ଆଉଜାଇ, ସିମେଣ୍ଟ ପୋଲର ଗୋଟିଏ ବାଡ଼ ଉପରେ ବସିଥିଲେ । ଉଦାସ ଧାନକ୍ଷେତ, ଆଉ ଦୂରରେ ଝୁଲିପଡ଼ିଥିବା ରଣ୍କୁହୁଡ଼ର ଖଣ୍ଡେ ମେଘ ଭିତରକୁ ଚାହିଁ ସେ କଣ ଖୋଜି ହେଉଥିଲେ କେଜାଣି ?

ହରିପୁର ସଡ଼କ, ଗୋପାଳପୁର ଗାଁ ଆଉ ଚାରିକଡ଼ର ପରିବେଶ ଯାହା ଯେପରି ଥିଲା, ସବୁ ଠିକ୍ ସେହିପରି ରହିଛି । ସିଦ କାନଗୋଇଙ୍କୁ ଊନକୋଡ଼ି ଆଠ ବର୍ଷ ଚାଲିଲା । ଗୋପାଳପୁର ଗାଁ ଉ: ପ୍ରା: ସ୍କୁଲର ସେ ହେଡ୍‌ପଣ୍ଡିତ ଥିଲେ । ଉ: ପ୍ରା: ସ୍କୁଲ ଏମ: ଇ: ସ୍କୁଲ ହେଲା । ସେ କନ୍ଲୁ ଆଉ ପିଲା ଠେଙ୍ଗେଇ ନ ପାରିବାରୁ, ଦୁଇବର୍ଷ ତଳୁ ଚାକିରିରୁ ବିଦାୟ ନେଇ ଘରେ ବସିଲେଣି ।

ପିଲାବେଳେ ମଧ୍ୟ ଶୁକୁନଈ ପୋଲ ଉପରେ ବସିଲେ ଏଇ ସବୁ ଦୃଶ୍ୟ ଠିକ୍ ଏମିତ ଆଖିରେ ପଡ଼ୁଥିଲା । କାନଗୋଇଙ୍କ ମନରେ ଦମ୍ଭ ଆସିଲା, ଦୁନିଆ ତା'ହେଲେ ଠିକ୍ ଅଛି ! ଏ ଦୁନିଆଁକୁ ତା ହେଲେ ନିର୍ଭୟରେ ବିଶ୍ୱାସ କରିବା ଚଳିବ । ପରିବର୍ତ୍ତନ ଭିତରେ ହୋଇଛି କେବଳ, ଶଗଡ଼ଧଇଖୋଲା ମାଟି ସଡ଼କକୁ ପିଚୁ

ସଡ଼କ, ହଣପୁର ସଡ଼କର ପଦୋନ୍ନତ ହୋଇଛି ହଣପୁର ଫିର୍‌ଫିଗ୍ ରୋଡ଼କୁ, ଶୁଳୁ-ନଈ ଜୋଡ଼ର ଅଣଓସାରି ପୋଲ୍ ହୋଇଛି ଏକ ଆଧୁନିକ 'ବ୍ରିଜ୍'···ଦୁଇପାଖର ବାଡ଼ ସିମେଣ୍ଟରେ ଗଢ଼ା ହୋଇ ଚଉଡ଼ା ନଦୀ କାନ୍ଥପରି ଡ଼ଳୁ ଉଠିଯାଇଛି । ସହରର ବଡ଼ ଗାଡ଼ିମାନଙ୍କ ପରି ସିଚ୍‌ଛିଲା ସଡ଼କ···ଫଗୁଣର କଅଁଳ ଖରାରେ ଚକ୍ ଚକ୍ କରୁଛି । ସଡ଼କକୁ ଦେଖିଲେ ମନରେ ସମ୍ଭ୍ରମ ଆସେ !

ଏ ଅଞ୍ଚଳରେ ଏମ୍. ଏଲ୍. ଏ. ନୀଳମଣି ବାବୁ ଓ ସରପଞ୍ଚ ଯଦୁ ଷଡ଼ଙ୍ଗୀ କଥା କଥାକେ ଏଇ ସଡ଼କର ଉଦାହରଣ ଦେଇ ଯୋଜନାରେ ଦେଶର ଯେଉଁ ବିରାଟ ଅଗ୍ରଗତି ହୋଇଛି, ତାହା ଅବିଶ୍ୱାସୀମାନଙ୍କ ଆଖିରେ ଆଙ୍ଗୁଠି ଗେଞ୍ଜି ଦେଖାଇ ଦେଇଥାନ୍ତି ।

ସିଦ କାନଗୋଇଙ୍କ ଭାବନାର ଖିଅ ହଠାତ୍ ଛିଣ୍ଡିଗଲା । ଫିରଫିଗ୍ ଆଡ଼ୁ ଗୋଟାଏ ଧାନବୋଝେଇ ଟ୍ରକ୍ ଧୂଳିର ଘଣ୍ଟିଆଭୂତ ଉଡ଼ାଇ ହଣପୁର ବଜାର ଆଡ଼େ ଛୁଟିଗଲା । ବିପରୀତ ଆଡ଼ୁ ଆସୁଥିବା ସେ ସାଇକେଲଚଢ଼ାଳୀ ଟୋକାଟା ବାଁ କଡ଼କୁ ଡ଼ୁଳିପଡ଼ି ନଥିଲେ ଟ୍ରକ୍ ଚାପରେ ଯାଇଥିଲା ତ ଆଉ କ'ଣ ! ବାଁ କଡ଼କୁ ଗାଡ଼ିଡ଼ଳେ ଖସିପଡ଼ି ନଲିପ୍ୟାଣ୍ଟର ପିଚ୍ଛରୁ ଏଇ ଧୂଳି ଝାଡ଼ିହୋଇ ଉଠୁଛି । ଓଃ···ଜୀବନଟା ଆଜ ଆଉଟା ଦୁଧପରି ଖାଲି ଉତୁରି ଉଠୁଛି !

ଏଇ ଉତୁରିବା କାଳେ ପ୍ରଗତି !

ସାଇକେଲଚଢ଼ାଳୀ ସେଇ ଟୋକା ଆଡ଼େ ଚାହିଁ ସିଦ କାନଗୋଇଙ୍କ ମନେପଡ଼ିଲା, ଗ୍ରହ୍ମ ଗ୍ରହ୍ମ ଉନକୋଡ଼ି ଆଠ ବର୍ଷ ସାଇକଲ୍ ଚକ ପରି କୁଆଡ଼େ ଗଡ଼ି-ଗଲାମ ସତେ ! ଅଥଚ ସାଇକଲ ଚଢ଼ିବାଟା ଜୀବନରେ ସେ ଆଉ ଆସ୍ୱାଦ କରିପାରିଲେ ନାହିଁ !

ଗ୍ରହ୍ମ ଗ୍ରହ୍ମ ଦୁଇ ଆଡ଼ୁ ଦୁଇ ପଞ୍ଝା ସାଇକଲ ଦୁଇ ଆଡ଼େ ଗଡ଼ି ଚାଲିଗଲା । ସାଇକଲ ଚଢ଼ାଳୀଙ୍କ ଭିତରେ ଅଛନ୍ତି, ଆଠମାଇଲ ଦୂରରେ ସହରତଳି ଲୁଗା କାର-ଖାନାର ଶ୍ରମିକ, ହଣପୁର ଉଚ୍ଚ ବିଦ୍ୟାଳୟର ଛାତ୍ର, ସହରରୁ ଗାଁ ଫେରନ୍ତା ବାବୁ, ପୁଣି ନାନା କିସମର ବେପାରୀ । ଆଗରେ କାହାର ଲୁଗା ଗଣ୍ଠିରି ତ ପଛରେ କାହା କାରିୟର୍ ଉପରେ ପଣିବା ବୋଝ ।

କାଣ୍ଡିସାହିର ଜଗୁଆ ମଧ୍ୟ ଗୋଟାଏ ସାଇକଲ ପଛରେ ଗଦାଏ ନଡ଼ା ବାନ୍ଧି, ପାଦଠାରୁ ଜଙ୍ଘ କୋଡ଼ଗାତ ପର୍ଯ୍ୟନ୍ତ ଦେହ ଫୁଲେଇଲା କରି, ସେଇ ସାଇକଲ ପଟୁଆର ଭିତରେ ଗାଁ ଆଡ଼କୁ ମାଡ଼ିଗଲା ।

ସିଦ କାନଗୋଇ ଅସହାୟ ଆତ୍ମପ୍ରତ୍ୟୟହୀନ ଦୃଷ୍ଟିରେ ଚଷମାର ମୋଟା ଲେନ୍‌ସ କାଚ ଡ଼ଳୁ ଗ୍ରହିଆଡ଼କୁ ଚାହିଁଲେ । ଦୁଇଅଟା ପୁଣି ହଠାତ୍ ଓଲଟ ପାଲଟ

ହୋଇ ତାଙ୍କୁ ଅଡ଼ୁଆ ସୁତାକାଣ୍ଡି ପରି ଲାଗିଲା । ସେଇଥିରେ ସେ ଯେମିତି କେଉଁଠି ଛନ୍ଦ ହୋଇ ପଡ଼ିଲେ ।

ସଡ଼କ ପୁଣି କାଉଁଳିଆ ଖରାରେ ଝିମେଇ ପଡ଼ିଲା । ସଡ଼କ କଡ଼ରେ ଯାଇଥିବା ଟେଲିଗ୍ରାଫ ତାରରେ ପବନ ବାଜି ସାଇଁ ସାଇଁ କରି ଉଠିଲା । ଗୋଟିଏ କଜଳପାତି ଟେଲିଗ୍ରାଫ ତାର ଉପରକୁ ଉଡ଼ି ଆସି କେଇଥର ଗୀତ ଦେଇ ପୁଣି ଲାଙ୍ଗୁଡ଼ ନଚାଇ କେଉଁଆଡ଼େ ଉଡ଼ି ପଳାଇଲା ।

ସିଧ କାନଗୋଇଙ୍କର ହଠାତ୍ ମନେ ହେଲା, ଏଇ ହରିପୁର ସିଟ୍ ସଡ଼କ ଯେପରି ତାଙ୍କର ଶତ୍ରୁ ; ଏଇ ସଡ଼କ ଯେପରି ତାଙ୍କର ସଂସାର ଭିତରକୁ ଦୁର୍ଯୋଗ ଓ ଦୁର୍ଭାଗ୍ୟ, ଅପମାନ ଓ ଲୋକହସା, ବିପର୍ଯ୍ୟୟ ଓ ବ୍ୟର୍ଥତା ସବୁ ବାଟ କଢ଼ାଇ ଆଣିଛି । ଏଇ ସଡ଼କରେ ତାଙ୍କର ପୁଅ ଟୁଙ୍ଗା ବା ନରହରି, ପାଞ୍ଚଥର ମାଟ୍ରିକ୍ ଫେଲ ହେବା ପରେ, ଗାଁ ଛାଡ଼ି, ଘର ଛାଡ଼ି, ଟ୍ରକ-ଡ୍ରାଇଭର ହୋଇ ଦିନେ ପଳାଇଲା । ଏଇ ସଡ଼କରେ ପୁଣି ଦିନେ ପଳାଇଲା ଅଭିଆଡ଼ୀ ଝିଅ ପାର୍ବତୀ, କୁରାକଲର ଫିଟର ମିସ୍ତ୍ରୀ ଗୋପାଳ ଓଝା ସାଙ୍ଗରେ । ଆଃ···ସେ କି ଲାଜ ଅପମାନର କଥା, ସିଧ କାନଗୋଇଙ୍କ ଅଭିଆଡ଼ୀ ଝିଅ ପାର୍ବତୀ ଶେଷକୁ ପାପଗର୍ଭ ଭଙ୍ଗାଇ ଅବାଟରେ ଏମିତି ଗୋଡ଼ କାଢ଼ିଲା !

ସଡ଼କ ତଳେ ଛଅଁଶ୍ରରେ ସିଧ କାନଗୋଇଙ୍କ କଳା ବାଛୁରୀଟା ପଘାରେ ବନ୍ଧାହୋଇ ଘାସ ଚରୁଥିଲା । ସିଧ କାନଗୋଇ ପୋଲ ଉପରୁ ଉଠି, ପଘାଖୁଣ୍ଟିଟି ଓପାଡ଼ି ସଡ଼କ କଡ଼ରେ ଆଉ ଗୋଟାଏ କଅଁଳିଆ ଘାସ ଜାଗା ଦେଖି ପୋତିଦେଲେ । ତା ପରେ ଖୁଣ୍ଟ ପାଖରେ ପଡ଼ିଥିବା ଖୁରୁପୀ ଧରି ଦୂବଘାସ ଚାଞ୍ଛିବା ପାଇଁ ବସିଲେ । ଗୋ-ସେବା ପାଇଁ ଘାସ ଚାଞ୍ଛିବା ତାଙ୍କର ଗୋଟିଏ ନୈମିତ୍ତିକ କର୍ମ । ୬୮ ବର୍ଷ ବୟସରେ ଜୀବନ-ସନ୍ଧ୍ୟାରେ ସେ ଆଜି ମଣିଷ ଅପେକ୍ଷା ପଶୁମାନଙ୍କ ଉପରେ ଅଧିକ ନିର୍ଭରଶୀଳ । ଏହି ପଶୁକୁଳ ହିଁ ତାଙ୍କର ବନ୍ଧୁ; "ଅରଣ୍ୟେ ଅଜଗର ପ୍ରାୟ" କର୍ମ ଆଦର୍ଶ ପଡ଼ି ରହିଛନ୍ତି ! ବିନା କାରଣରେ ଅନ୍ତତଃ ମଣିଷଙ୍କ ପରି ସେମାନେ ଅନ୍ୟ ମଣିଷଙ୍କୁ ଭୁଷା ମାରନ୍ତି ନାହିଁ !

ଘାସ ଚାଞ୍ଛୁ ଚାଞ୍ଛୁ ହରିପୁର ସଡ଼କର ଇତିହାସ ସିଧ କାନଗୋଇଙ୍କର ପୁଣି ମନେ ପଡ଼ିଗଲା । ଏଇ ସଡ଼କ ଯୋଗୁ ତ କମ୍ ଘଟଣା ଘଟିନାହିଁ ! ପ୍ରଥମ ନିର୍ବାଚନରେ ମାଲବାବୁ ଜିତିଥିଲେ ଏଇ ସଡ଼କ ପାଇଁ । ଭୋଟରେ ଜିତିଲେ ହରିପୁର କଞ୍ଚା ସଡ଼କକୁ ପକ୍କା କରିଦେବେ, ଏଇ ଥିଲା ତାଙ୍କର ପ୍ରତିଶ୍ରୁତି । ମାତ୍ର ପ୍ରଥମ ଭୋଟ-ପରେ ପାଞ୍ଚବର୍ଷ କଟି ଦ୍ୱିତୀୟ ଭୋଟ ଆସିଲା, ଅଥଚ ସଡ଼କରେ ମାଟି ଟୋକେଇଏ ସୁଦ୍ଧା ପଡ଼ିପାରିଲା ନାହିଁ । ଏଇ ସଡ଼କ ପାଇଁ ପୁଣି କେତେ ସଭା ନ ହେଲା !

ମାଜିଷ୍ଟ୍ରେଟଙ୍କଠାରୁ ମନ୍ତ୍ରୀଙ୍କ ପର୍ଯ୍ୟନ୍ତ, ଉଃ ପ୍ରାଃ ସ୍କୁଲର ପୁରସ୍କାର-ବିତରଣୀ ସଭାଠାରୁ ମନ୍ତ୍ରୀଙ୍କ ଗସ୍ତସଭା ପର୍ଯ୍ୟନ୍ତ ଯେତେବେଳେ ସଭା ହୋଇଛି, ସବୁଥିରେ ସଡ଼କ ପାଇଁ କେତେ ମାନପତ୍ର ଲେଖି ସିଦ୍ଧ କାନଗୋଇ ସେ ସବୁ ପଢ଼ି ନାହାନ୍ତି !

ସେଥର ବଢ଼ିବଢ଼ିଲ ବେଳେ ଶୁକୁନଈ ବଢ଼ିରେ ଏ ଅଞ୍ଚଳରେ ବହୁ ଗାଁ କ୍ଷତିଗ୍ରସ୍ତ ହୋଇଥିଲା । ମନ୍ତ୍ରୀ ଆସିଥିଲେ କ୍ଷତିଗ୍ରସ୍ତ ଲୋକମାନଙ୍କର ଅବସ୍ଥା ଦେଖିବା ପାଇଁ । ଗୋପାଳପୁର ଉଃ ପ୍ରାଃ ସ୍କୁଲ ହତାରେ ଯେଉଁ ସଭା ହୋଇଥିଲା, ସେଥିରେ ମନ୍ତ୍ରୀଙ୍କ ଉଦ୍ଦେଶ୍ୟରେ ମାନପତ୍ର ପଢ଼ିଥିଲେ ସିଦ୍ଧ କାନଗୋଇ···'ହେ ଦେଶବନ୍ଦ୍ୟ, ବରେଣ୍ୟ, ମାତୃଭୂମିର ମୁଖୋଜ୍ଜ୍ୱଳକାରୀ, ପ୍ରଜାବତ୍ସଳ ମହାମାନ୍ୟ ମନ୍ତ୍ରୀବର ! ଆପଣଙ୍କ ପଦରଜ ପଡ଼ି ଆମ୍ଭମାନଙ୍କର ଏହି ଜନପଦ ଆଜି ପବିତ୍ରିତ ହୋଇଅଛି । ଆମ୍ଭେ ଆପଣଙ୍କୁ କିପରି ଭାବରେ ଅର୍ଚ୍ଚନା କରିବୁ ଜାଣୁନାହିଁ ।' ଇତ୍ୟାଦି······

ମନ୍ତ୍ରୀ ମନ୍ଦ ମନ୍ଦ ହସି ମୁଣ୍ଡ ଟୁଙ୍ଗାରୁଥିଲେ । ତାଙ୍କ ପାଖରେ ମିଳୁବାବୁ ଏମ୍. ଏଲ୍. ଏ. ଚଉକି ଉପରେ ଅସ୍ୱସ୍ତିରେ ଏକଡ଼ ସେକଡ଼ ହେଉଥିଲେ । ତାଙ୍କ ସମ୍ପର୍କରେ ପଦେ ହେଲେ ସୁଦ୍ଧା ମାନପତ୍ରରେ ଲେଖା ରହିବା ତ ଉଚିତ୍ ଥିଲା !

ଏ ପର୍ଯ୍ୟନ୍ତ ସିଦ୍ଧ କାନଗୋଇ ସ୍ୱାଭାବିକ କଣ୍ଠରେ ମାନପତ୍ର ପଢ଼ୁଥିଲେ । ମାତ୍ର ମାନପତ୍ରରେ ଯେଉଁଠି ହରିପୁର ସଡ଼କ ପ୍ରସଙ୍ଗ ଆସିଗଲା, ସେ ଗଳାଖଙ୍କାରି କଣ୍ଠ ସ୍ୱର ଚଢ଼ା ପର୍ଦ୍ଦାକୁ ଉଠାଇ ପଢ଼ିଲେ···ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ଓ ଅନୁତପ୍ତ ଯେ ଆମ୍ଭ ଅଞ୍ଚଳକୁ ଶୁଭାଗମନ ପାଇଁ ଆପଣଙ୍କୁ ଅଶେଷ ଯନ୍ତ୍ରଣା ଭୋଗ କରିବା ପାଇଁ ପଡ଼ିଲା ଓ ଆପଣଙ୍କ ବାଷ୍ପୀୟ ଶକଟଟି, ଆପାଦକଣ୍ଠୀ କର୍ଦ୍ଦମ ମଧ୍ୟରେ ଆସିବା ଫଳରେ ତାହାର ମସୃଣ ଅଙ୍ଗ କର୍ଦ୍ଦମାକ୍ତ ହୋଇଗଲା । ମାତ୍ର ମହାଭାଗ, ଆପଣଙ୍କ ଆଗମନର ପଥ ଭବିଷ୍ୟତରେ ଯେପରି ନିର୍ମଳ ଓ ନିର୍ଜଞ୍ଜାଳ ହୁଏ, ସେଥିପାଇଁ ଏହି ସଡ଼କଟି ଶୀଘ୍ର ପକ୍କା କରାଇବାର ହୁକୁମ ସାଦରହୋଇ ଆମ୍ଭମାନଙ୍କୁ ଚିର କୃତାର୍ଥ କରିବେ ।' ଏହା ପରକୁ ଥିଲା ଉଃ ପ୍ରାଃ ସ୍କୁଲକୁ ଏମ: ଇ: ସ୍କୁଲରେ ପରିଣତ କରିବା ପାଇଁ ମଧ୍ୟ ଦାବୀ ଓ ଆଉରି ନାନା ପ୍ରସଙ୍ଗ ।

ଏହିପରି ନାନା ମାନପତ୍ର ପଢ଼ୁ ପଢ଼ୁ ଦ୍ୱିତୀୟ ନିର୍ବାଚନ ଆସିଗଲା । ମାତ୍ର ହରିପୁର ସଡ଼କ 'ଆପାଦକଣ୍ଠୀ କର୍ଦ୍ଦମ'ରୁ ଗଭୀରତର ହେଲା ସିନା, ସେଥିରେ ଟୋକେଇଏ ମାଟି ସୁଦ୍ଧା ପଡ଼ିପାରିଲା ନାହିଁ । ସେଥିପାଇଁ ଦ୍ୱିତୀୟ ନିର୍ବାଚନରେ ଏଇ ସଡ଼କ ହେଲା ମିଳୁବାବୁଙ୍କ କାଳ । ବରଗଛ ମାର୍କା ଦଳର ଜଗବନ୍ଧୁ ଢିଆଡ଼ୀର ଏହି ସଡ଼କ ଆଡେ ଆଙ୍ଗୁଠି ଦେଖାଇ କଂଗ୍ରେସପ୍ରାର୍ଥୀ ମିଳୁବାବୁଙ୍କ ବିରୁଦ୍ଧରେ ନିର୍ବାଚନ ଅଭିଯାନ ଆରମ୍ଭ କରିଦେଲେ । ଯୋଗକୁ ପୁଣି ଭୋଟ ମାସେ ଅଛି; ହରିପୁର ସଡ଼କରେ ନେଉଳପୁରର ମହାଜନ ଧୋବେଇ ସାହୁଙ୍କ ଶଗଡ଼ ଅକ୍ଷାର ବୁଡିରେ

ହରିପୁର ହାଟରୁ ଫେରୁଥିବାବେଳେ, ଶୁକୁନଈ ପୋଲ ଉପରେ ଓଲଟି ପଡ଼ିବାରୁ ବଳଦଟା ପଘାରେ ମରି ଯାଇଥିଲା । ଶଗଡ଼ିଆ ମଧ୍ୟ ଜଖମ ହୋଇ ଗ୍ରାମମାସ କାଳ ଡାକ୍ତରଖାନାରେ ପଡ଼ି ପଡ଼ି ଅସୁସ୍ଥ ଥିଲାରୁ ବଞ୍ଚିଲା । ଏହି ଘଟଣା ବା ଦୁର୍ଘଟଣା ପରେ ଢଆଡ଼ୀଙ୍କୁ ଆଉ ପ୍ରଚାର କରିବାକୁ ପଡ଼ିଲା ନାହିଁ । 'ଯୋଜନା ନାଁରେ ସହରରେ ସଡ଼କମାନ ତିଆରି ହେଉଛି ଯେ, ତା ଉପରେ ମଣିଷ ଖାଲି ଗଡ଼ୁଛି ଖାଇବ···ଆଉ ଆମ ସଡ଼କକୁ ଦେଖ ସିଦ ପଣ୍ଡିତଙ୍କ ଭାଷାରେ 'ଆପାଦକଣ୍ଠୀ କର୍ଦ୍ଦମ', ବର୍ତ୍ତମାନ ଆପାଦବକ୍ଷ ହେବାକୁ ବସିଲାଣି । ସଡ଼କ ତ ନୁହେଁ । ଖାତ ଝଣା ! ବଳଦ ମଣିଷ ତା ଭିତରେ ପଡ଼ି ମରୁଛନ୍ତି ! ଆମେ ପଥକର ଦେଉନୁ କହୋ ? ଝଣା, ପାଣିକର ଦେଉନୁ କ ? ସ୍ୱାଧୀନତା ପାଇଁ ଜୀବନ ତୁଚ୍ଛ କରି ଆମେ କଣ ଲଢ଼ିଥିଲୁ ଏଇଥିପାଇଁ ? (ଦୋ ଅକ୍ଷର ସମ୍ବୋଧନ କରି) କହୁଥିଲେ, ଭୋଟ ଦିଅ, ସଡ଼କ କରିଦେବୁ ! ବୁଝ ବୁଝ ଏ ଦଗାଦିଆ, ଧପ୍‌ପାବାଜ ଦଳଙ୍କ କଥା ବୁଝ ଏବେ !

ଏ ସବୁ ପରେ ନାଳୁବାବୁ ଅନ୍ତର୍ଜାତିକ ବୈଦେଶିକ ନୀତିଠାରୁ ଯୋଜନା ଅର୍ଥନୀତି ପର୍ଯ୍ୟନ୍ତ ଯେତେ ଯାହା ବୁଝାଇଲେ, ଆଉ ବୁଝୁଚି କିଏ ?

ସିଦ କାନଗୋଇ ସେତେବେଳେ ଶତସିଂହର ପରାକ୍ରମରେ ଲମ୍ଫଝମ୍ଫ ଦେଇ ଢଆଡ଼ୀଙ୍କ ପ୍ରଚାରକ ହୋଇଥିଲେ । ଏଇ ସଡ଼କ ପାଇଁ ନାଳୁବାବୁ ନିର୍ବାଚନରେ ହାରିଲେ ମାତ୍ର ଢଆଡ଼ୀ ପାଞ୍ଚବର୍ଷ ଭୋଗ କଟିଲା । ହରିପୁର ସଡ଼କର ଭାଗ୍ୟ କିନ୍ତୁ ଆଉ ଫେରିଲା ନାହିଁ । ବୈଶାଖ ଜ୍ୟେଷ୍ଠ ମାସ ଦୁଇଟା ଛାଡ଼ିଦେଲେ; ବର୍ଷଯାକ ହରିପୁର ସଡ଼କ କର୍ଦ୍ଦମପଙ୍କର ଶତଶତ କ୍ଷତ ମେଲି କମେ ଧାନବିଲ ସହିତ ମିଶିଯିବା ପାଇଁ ଲାଗିଲା !

ନାଳବାବୁଙ୍କ ଲୋକେ ଦେଖେଇ ଶିଖେଇ କାହ୍ନକୁ ବାଡ଼କୁ କହିବା ପରି କହିଦେଲେ; ଢଆଡ଼ୀଙ୍କୁ ପଚାରୁନା, କୋଉଦିନ ତାଙ୍କ ବରଗଛତଳିଆ ଦଳ ଏ ସଡ଼କକୁ ପକ୍‌କା କରିଦେବେ ? ପୁଣି ତ ଭୋଟ ବେଳ ଆସିଯାଉଛି ! ବରଗଛ ତଳିଆ ଆକ୍ଷେପରେ ଢଆଡ଼ୀଙ୍କ ଦଳ ପାଇକ କଚ୍ଛ ଭିଡ଼ି ମାଡ଼ ଫୌଜଦାରୀ ପାଇଁ ତିଆରି ! କଣ ? ଆମେ ବରଗଛ ତଳିଆ ? ଜମ୍ବୁବାବୁ କହି ପଠାଇଛନ୍ତି ସଡ଼କ ନହେଲେ ଅନଶନ କରିବେ ! ପ୍ରାଣ ହାରି ଦେବେ ! ଦେଖିବ ବୁଢ଼ା ଅସ୍ତ୍ର ଧର !

କିନ୍ତୁ ଜଗବନ୍ଧୁବାବୁଙ୍କ ଅନଶନ ଆଉ ହେଲାନାହିଁ । ସିଦ ପଣ୍ଡିତଙ୍କ ପାଖକୁ ଲୋକ ଆସିଲେ ପରାମର୍ଶ ପାଇଁ, ଏଥିକୁ ଉପାୟ କଣ ? ନାଳୁବାବୁଙ୍କୁ ସଡ଼କ କଥା କହିବାକୁ ତ ଲାଜ ଲାଗୁଛି ! ସିଦ ପଣ୍ଡିତେ ଖାଲି କହିଦେଲେ, ଦେଖ କୋଉପାଣି କୋଉଆଡ଼େ ଯାଉଛି ! ନିର୍ବାଚନ ଅଳ୍ପଦିନ ଅଛି, ହଠାତ୍ ହାତୀ ପରି ବୁଲ୍‌ଡୋଜର ଟ୍ରକ ହରିପୁର-ସଡ଼କର କାଦୁଅ ପଙ୍କ ନ ମାନି, କଳାଗୋଡ଼ି, ପଥର ପ୍ରଭୃତି ଗଦା

କରିବାକୁ ଲଗିଲେ । ହୈ ହୈ କାଣ୍ଡ—ଶହ ଶହ କୁଲି, ଗଣ୍ଡା ଗଣ୍ଡା ଟ୍ରକ, ଇଂଜିନିୟର୍, ଠିକାଦାର···ଆଉ ସମସ୍ତଙ୍କ ପୁରୋଭାଗରେ ନନ୍ଦବାବୁ । ଅବଶେଷରେ ନନ୍ଦବାବୁଙ୍କ ଚେଷ୍ଟାରେ ହରିପୁର ସଡ଼କ ଯେ ପକ୍‌କା ହେବାକୁ ଯାଉଛି; ସେଥିରେ କାହାରି ଆଉ ସନ୍ଦେହ ରହିଲ ନାହିଁ । ମାସ ଗୋଟାକରେ ହରିପୁର ସଡ଼କ ପିଚୁ ହୋଇଗଲ । ତା ପରକୁ ଗୋପାଳପୁର ଉ: ପ୍ରା: ସ୍କୁଲ ଏମ୍. ଇ. ହୋଇଗଲା । କିନ୍ତୁ ଏମ୍: ଇ: ସ୍କୁଲ ହେବା ମାତ୍ରେ ସିଦ୍ଧ ପଣ୍ଡିତେ ସେଠାରୁ ବିଦାୟ ନେଇ ଆସିଲେ । ଏବେ କଥା ପଡ଼ିଛି, ହାଇସ୍କୁଲ ହେବ । ନନ୍ଦବାବୁ ପୁଣି ଏମ: ଏଲ: ଏ: ହେଲେଣି ।

ସବୁ ସେ ଦିନର କଥା ପରି ଲଗୁଛି; କିନ୍ତୁ ଏଇ ପିଚୁ ସଡ଼କ ମଧ୍ୟ ସିଦ୍ଧ କାନଗୋଇଙ୍କ ସଂସାରରେ ଆଣିଲ ଦିନେ ଦୁର୍ଭାଗ୍ୟର ଦୁର୍ଭାଳ ।

ସିଦ୍ଧ କାନଗୋଇ ଗୋଟାଏ ଲମ୍ବା ଦୀର୍ଘଶ୍ୱାସ ପକାଇ ମନକୁ ମନ କହି-ଉଠିଲେ···ହଁ, ସବୁ ହେଲ କର୍ମ ! ଭାଗବତ ପଖ ପଦ କହୁଛି, 'କର୍ମର ମୂଳେ ଏ ଜଗତ ।' ମଣିଷ ଯିନା କର୍ମ କରିବ, ଫଳ ଉପରେ ତାର ଅଧିକାର କାହିଁ ? ସେଦିନ ତାଙ୍କ ପିଣ୍ଡାରେ ଏଇ ତତ୍ତ୍ୱ ପଡ଼ିଥିଲ । ଗୋପୀ ପଡ଼ଙ୍ଗୀ, ଚେମ ମହାନ୍ତି, ହରି ସ୍ୱାଇଁ ପ୍ରଭୃତି ଗାଁର ଯେଉଁ କେତେ ଜଣ ଭାଗବତପ୍ରେମୀ ବୁଢ଼ା ସେଠାରେ ଦୋଷଡ଼ା ଖଣ୍ଡେ ଖଣ୍ଡେ ପାଦରୁ ମୁଣ୍ଡ ପର୍ଯ୍ୟନ୍ତ ଢାଙ୍କି ବସିଥିଲେ, ସେମାନେ ମୁଣ୍ଡ ଟୁଙ୍ଗାଇ ଟୁଙ୍ଗାଇ ସେହି ତତ୍ତ୍ୱ ସମର୍ଥନ କରୁଥିଲେ । ସିଦ୍ଧ କାନଗୋଇ କୁଳନନ୍ଦନ ଟୁଙ୍ଗା ପଞ୍ଚମଥର ମାଟ୍ରିକ୍ ପରୀକ୍ଷା ଦେବାପାଇଁ, ଦାଣ୍ଡଘରେ ବସି ପାଠ ପ୍ରସ୍ତୁତ କରୁଥିଲ । ସେ ପିଣ୍ଡାକୁ ଆସି କହି ଉଠିଲ···ମଣିଷ ଗଛ ଲଗାଇଲ, ଫଳ ଫଳିଲ, ସେ ଫଳ ଉପରେ ଅଧିକାର ହେବ ମାଙ୍କଡ଼ର ? ନା କଣ ?' ଟୁଙ୍ଗାର ସ୍ୱଭାବ ଏହିପରି ହୁରୁମା । ଗୁରୁଜନ, ମାନ୍ୟଜନ ଭୟର ତା ପାଖରେ ନାହିଁ; ଯେତେବେଳେ ଯେଉଁ କଥା ମୁହଁକୁ ଆସିଲ । ସିଦ୍ଧ କାନଗୋଇଙ୍କ ପ୍ରୌଢ଼ ବୟସରେ ଟୁଙ୍ଗାବୋଇର ଅସଂଖ୍ୟ ମନାସ ପରେ ଟୁଙ୍ଗା କାନଗୋଇଙ୍କ କୁଳ ଓ କୋଳ ଉଜ୍ଜ୍ୱଳ କରିଥିବାରୁ, ଉ: ପ୍ରା: ସ୍କୁଲର ଗ୍ରୁଡସମାଜରେ 'ବାଘ' ନାମରେ ପରିଚିତ । ସିଦ୍ଧ ପଣ୍ଡିତେ ଟୁଙ୍ଗାର ସବୁ ହୁରୁମାପଣିଆ ମୁହଁ ବୁଜି ସହନ୍ତି, ପାଟି ଫିଟାନ୍ତି ନାହିଁ । ପାଟି ଫିଟାଇଲେ, ଘରଣୀ ଆଡ଼ୁ ଦୈହିକ ଆକ୍ରମଣର ଆଶଙ୍କା ଅତୀତରେ ଅଭିଜ୍ଞତାରୁ ଦୃଢ଼ତର ହୋଇଛି ।

ବୁଢ଼ାମାନେ ଟୁଙ୍ଗା କଥାରେ ଗୁମ୍ ମାରି ଦଣ୍ଡେ ବସିଗଲେ । ପିଣ୍ଡା ତଳର ଅନ୍ଧାର ଆଉ ଝିଙ୍କାରିମାନଙ୍କର ଏକଟଣା ଝିଁ ଝିଁ ଝିଲ୍ଲୀରବ ମଧ୍ୟରେ ଟୁଙ୍ଗାର ପରିହାସ ଅଥଳ ପାଣିରେ ଗୋଟିଏ ଗ୍ରେଟିଆ ଗୋଡ଼ପରି କେଉଁଆଡ଼େ ବୁଡ଼ିଗଲ । ସିଦ୍ଧ କାନଗୋଇ ମନେ ମନେ ଭାବିଲେ, ଟୁଙ୍ଗାର ଆକ୍ଷେପ ଆପାତ ଦୃଷ୍ଟିରେ ସତ୍ୟ

ନଷ୍ଟସ୍ଥ । ଏକାଳ ଲୁଟିଖିଆମାନଙ୍କର କାଳ । କର୍ମ କରିବେ ଜଣେ, କିନ୍ତୁ ସେହି କର୍ମରେ ତାର ଫଳ ଭୋଗ କରିବେ ଅନ୍ୟମାନେ, ପିତା ଉପରୁ ଗୋଧ ମାଙ୍କଡ଼ ଲଉଡ଼ାଏ, କଖାରୁଟାଏ ଟୁଣ୍ଡାଇ ନେବାପରି । ତା'ହେଲେ 'କର୍ମର ମୂଳେ ଏ ଜଗତ' କଥାଟା ଠିକ୍ ହେଲା ଆଉ କୁଆଡ଼ୁ । ଫଳ ଯଦି ମାଙ୍କଡ଼ ଖାଇଲା, ସେ ଫଳ ଉପରେ ମଣିଷର ଅଧିକାର ନାହିଁ, ତା'ହେଲେ ମଣିଷ ନିଜ କର୍ମଫଳ ଭୋଗିବ କିପରି ?

ପ୍ରେମ ମହାନ୍ତି ଏହାର ସମାଧାନ ଦେଇ କହିଲେ···'ମାଙ୍କଡ଼ର କର୍ମରେ ଥିଲା ସେ ଫଳ ଖାଇଲା; ତା ବୋଲି ମଣିଷ କର୍ମ କରିବ ନାହିଁ ? ଫଳ ନ ଖାଇବା ଯଦି କର୍ମରେ ଅଛି, ତମେ ଆମେ ହାଇଁପାଇଁ ହେଲେ ସେ ଫଳ ଭୁକ୍ତି ପାଇବା ?'

ଗୃହରେ ଗୋଟାଏ ହିଁଟିପିଟି ସତ୍ ସତ୍ କରି ଉଠିଲା । ସିଦ୍ଧ କାନଗୋଇ ପ୍ରଭୃତି ଏକା ସାଙ୍ଗରେ କହି ଉଠିଲେ, 'ସତ୍ ସତ୍' ! ଗୋଟାଏ ଜଟିଳ ସମସ୍ୟାର ସମାଧାନ ଆପେ ଆପେ ମିଳିଗଲା । ଭାଗବତ ପଦ ଉପରେ ପୁଣି ପଢ଼ିଆସ୍ତ ଫେରି ଆସିଲା ।

ଏହାପରେ ଗୀତ, ଅନ୍ଧାର, ତାସ୍, ଦାନ୍ତ ବଉଳଗଛ ଦେହରେ ମାଡ଼ିଥିବା ମଧୁମାଳତୀ ବାସନା ପିଣ୍ଡା ଉପରେ ମିଶ୍ରି ମିଶ୍ରି ଆଲୁଅ, ଭାଗବତ ପଦ, ଆଉ ମଣିଷ ସବୁ ମିଶି ଖଣ୍ଡେ ଘନଭୂତ ଶାନ୍ତିରେ ପରିଣତ ହୋଇ ପଡ଼ିଲେ । ଏହା ଭିତରେ, ଆଜି ଦିନର ବ୍ୟଥାଟି ଆଉ ବାଧିବ ନାହିଁ, ଆସନ୍ତା କାଲିର ବଞ୍ଚନା ମଧ୍ୟ ଆଉ କାଟିବ ନାହିଁ । ପ୍ରେମ ମହାନ୍ତି ହାତମୁଠା ମଧ୍ୟରେ ନିଭିଆସିଥିବା ଚିଲମ ନଳୀଟି ଦୁଇଗାଲ ଠାକିସ୍ତ କରି ଓଠରେ ଲଗାଇଲେ ।

ଟୁଙ୍ଗା କିନ୍ତୁ ଏ ସରଳ ସତ୍ୟଟି ବୁଝିଥିଲେ ଆଜି କ'ଣ ହା-ହୁତାଶ କରି ଟ୍ରକ୍‌ଡ୍ରାଇଭରି କରୁଥାନ୍ତା ? ରୋଜଗାର ସବୁ ମଦ ମାଇକିନାରେ ଉଡ଼ାଉଥାନ୍ତା ? ···ସିଦ୍ଧ କାନଗୋଇ ସେଇ କଥା ମନେ ମନେ ଗୁଣି ହେଉଥିଲେ ।

ହାୟରେ···କାନଗୋଇ ବଂଶର କୁଳପ୍ରଦୀପ ଟୁଙ୍ଗା ଶେଷକୁ ଟ୍ରକ୍ ଡ୍ରାଇଭର ହେଲା ! ସିଦ୍ଧ କାନଗୋଇଙ୍କ ବଂଶ ପଣ୍ଡିତ ବଂଶ ! ଏ ବଂଶରେ ସିନା ଧନ ନ ଥିଲା, କିନ୍ତୁ ବିଦ୍ୟା ଆଉ ମାନ ଥିଲା ପ୍ରଚୁର । ଘରେ ପେଡ଼ି ପେଡ଼ି ପୋଥି । ସିଦ୍ଧ କାନଗୋଇଙ୍କ ବାପେ ଗୋପୀନାଥ କାନଗୋଇଙ୍କୁ ଏ ଅଞ୍ଚଳଖଣ୍ଡରେ ନ ଜାଣେ କିଏ ? ଟୋଲ ପଣ୍ଡିତ ଥିଲେ ଇଚ୍ଛାପୁର ଅଧିକାରୀଙ୍କ ମଠରେ । ଗାଦି ଗାଦି ପୋଥି ଉଦ୍ଧାରି ଯାଇଛନ୍ତି; ସେଥିରେ ମଧ୍ୟ ଠାଏ ଲେଖିଯାଇଛନ୍ତି 'ହରି ହେ ଗଣ୍ଡେଇ କଷ୍ଟ'···ପୋଥି ଲେଖି ଲେଖି ଯେଉଁଠି ଗଣ୍ଡେଇ ସରି ଯାଇଛି । ତଥାପି ଏଇ ପୋଥି ସବୁ ବିତରଣ ହୋଇ ନଗଲେ ସେ ଅଞ୍ଚଳରେ ଭାଗବତ ମେଳଣ ବସେନାହିଁ । ଟୁଙ୍ଗା ସେଇ ବଂଶର

ହେଲେ କ'ଣ ହେବ, ବିଦ୍ୟା ସହିତ ତାର ଅହିନକୁଳ ସମ୍ପର୍କ । ଥରଥର ହୋଇ ଚାରିଥର ମାଟ୍ରିକ ଫେଲ୍ ହେଲା । ଶେଷଥର ପରୀକ୍ଷାକେନ୍ଦ୍ରକୁ ଗଲାବେଳେ ଅଣ୍ଟାରେ ଖୋଷି ନେଇଥିଲା ପଟେ ଦାଢ଼ୁଆ ଛୁରୀ, ପଢ଼ାବହିର ଛିଣ୍ଡା ପୃଷ୍ଠାସବୁ, କପି କରିବା ପାଇଁ ।

ପରୀକ୍ଷାରେ ଏ ଛୁରୀ କଣ ହେବ ଟୁଙ୍ଗା ?'...ପିଦ କାନଗୋଇ ପଚାରିଥିଲେ ।

ଟୁଙ୍ଗା ଦାନ୍ତ କଡ଼ମଡ଼ କରି ଜବାବ ଦେଇଥିଲା, 'କପି ଧରିଲେ ଆଜି ମାଷ୍ଟରର ଦିନେ କି ମୋର ଦିନେ !'

ଦାଢ଼ୁଆ ଛୁରୀ ଆଉ କପି କାଗଜ ସତ୍ତ୍ୱେ, ପଞ୍ଚମଥର ମଧ୍ୟ ଟୁଙ୍ଗା ମାଟ୍ରିକ୍ ପରୀକ୍ଷାର ପାଚେରୀ ଡେଇଁପାରିଲା ନାହିଁ !

ପିଦ କାନଗୋଇ ମନକୁ ମନ ନିଜକୁ ସାନ୍ତ୍ୱନା ଦେଲେ...ଟୁଙ୍ଗା ପିଲା କର୍ମ କରିବ, ଅଣ୍ଟାରେ ଛୁରୀ ଖୋଷି ପରୀକ୍ଷା ଦେବାକୁ ଯିବ, ହେଲେ ଫଳ ଉପରେ ତା'ର ଅଧିକାର ନାହିଁ...ଠିକ୍ ଅଛି !

ପିଦ କାନଗୋଇ ଟୁଙ୍ଗାକୁ ସେଇକଥା ବୁଝାଇ କହିଲେ...'କର୍ମରେ ଯେତେ-କାଳ ଥିଲା, ପାଠପଢ଼ି ପରୀକ୍ଷା ଦେଲୁ, ଏଥର ପଢ଼ିବା ଗୁଡ଼ ପଢ଼ାଅ ! ଗାଁ ନିଃ ପ୍ରାଃ ସ୍କୁଲକୁ ମିନ୍ତୁବାବୁ ଗୋଟାଏ ନୂଆ ଷ୍ଟାଇପେଣ୍ଡ୍ ଦେଇଛନ୍ତି ! ସେଇଠି ମାଷ୍ଟର ହୋଇ ବସ ! ଘରପୁଅ ଘରେ ରହିବ ! ବିଦେଶକୁ ଯିବା ଆମର ଦରକାର ନାହିଁ !'

ଟୁଙ୍ଗା ମୁହଁରୁ ଭଣଭଣ ମଦଗନ୍ଧ ବାହାରୁଥିଲା । ହରିପୁର ରୋଡ଼ରେ ପୀତେଇ ହାଟ ଛକରେ ପହିଲା ଜେନା ଯେଉଁ ଚା' ଦୋକାନ ଖୋଲିଛି, ସେଠାରେ ଏବେ ଚାଉଳି ମଦ ବିକ୍ରୀ ହେଲାଣି । ବଡ଼ସଡ଼କର ଟ୍ରକ ଡ୍ରାଇଭରମାନେ ସେଠାକୁ ଆସି ଚାଉଳି ମଦ ପିଅନ୍ତି; ମାଉଲମୀ କରନ୍ତି । ହାଟପଦାର କୁଡ଼ିଆମାନଙ୍କରେ ଗିଲଟି ଚୁଡ଼ି ଖଡ଼ୁ ମଧ୍ୟ ଥରେ ଥରେ ରାତିରେ ଝଣଝାଣ ହେବା ଖୁବ୍ ଶୁଣାଗଲାଣି । ସେଦିନ ରାତିରେ ପୀତେଇ ଗାଁରେ ଜ୍ଞେବନୀ ରାଉତ ଘରେ ତ୍ରିନାଥ ମେଳାରୁ ପିଦ କାନଗୋଇ ଆଉ ତାଙ୍କ ଭାଗବତଥିଆ ପଞ୍ଚା ମେଳା ଶେଷରେ ହାଟପଦା ଭିତରେ ପଶି ହରିପୁର-ରୋଡ଼ ଉପରକୁ ଉଠୁଥିଲେ, ନଗୁଟିଆ ହାଟପଦାରେ ଚୁଡ଼ି ଖଡ଼ୁ ଝଣଝାଣ ଶୁଣି, ପିତାଶୁଣୀ, ଚିରକୁଣୀ ହୋଇଥିବେ ଭାବି, ହାଉଳି ଖାଇ ସେମାନେ ପହିଲା ଜେନା ଦୋକାନ ଆଡ଼କୁ ଧାଇଁଲେ । ପହିଲା ଜେନା ଦୋକାନ ପିଣ୍ଡାରେ ଯେଉଁ କେତେଜଣ ଅଚିହ୍ନା ଲୋକ ବସିଥିଲେ, ସେମାନେ ପିଦ କାନଗୋଇଙ୍କ ଦଳର ଗୁନିଆଁ ଦେଖି, ହସି ହସି ବେସମ୍ଭାଳ । ପହିଲା ଜେନା ମଧ୍ୟ ସେମାନଙ୍କ ସହିତ ହସ ମିଳେଇ କହିଲା...'ମଉସା, ପିତାଶୁଣୀମାନଙ୍କ ଦୃଷ୍ଟି ତୁମମାନଙ୍କ ଉପରେ ପଡ଼ି ନାହିଁ ତ !'

ପରେ କିନ୍ତୁ ପିତାଶୁଣୀମାନଙ୍କର ଉଦନ୍ତ ସିନା ଜଣା ପଡ଼ିଲା । କୌଣସି କୌଣସି ଗୃହସ୍ଥ ଘରର ଝିଅ ବୋହୂ ଏବେ ସ୍ୱାଧରେ ପିତାଶୁଣୀ ହୋଇ ବାହାରୁଛନ୍ତି । ଟୁଙ୍ଗା ମଧ୍ୟ ପହଲା ଜେନା ଦୋକାନରେ କେତେଥର ଦେଖାଦେଲଣି ! ସେଥିପାଇଁ ଟୁଙ୍ଗା ମୁହଁରୁ ମଧ୍ୟ ଦନେ ଦନେ ସ୍ୱଉଲୀ ମଦର ଖଟା ଦୁର୍ଗନ୍ଧ ବାହାରିଥାଏ ।

ଗାଁ ନୂ: ପ୍ରା: ସ୍କୁଲରେ ମାଷ୍ଟର ହେବା ପରାମର୍ଶ ଶୁଣି ଟୁଙ୍ଗା ଗୋଟାଏ ଆମ୍ବିଳଆ ହାକୁଟି ମାରି, ଚିତ୍କାର କରି ଉଠିଲା…'ମୁଁ ଶଳା ଏଲ୍. ପି. ମାଷ୍ଟର ହେବି, ଷାଠିଏ ଟଙ୍କା ଦରମାରେ ? ମୁଁ ବଡ଼ ଲୋକ ହେବି, ହଜାର ହଜାର ଟଙ୍କା କମେଇବି !'

ସିଦ କାନଗୋଇ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ କହିଲେ…'ଆରେ ଦୁନିଆରେ ଟଙ୍କା କମେଇ ସିନା ଧନୀଲୋକ ହୁଅନ୍ତି, ବଡ଼ଲୋକ ହେବାର ବାଟ ସିଏ ନୁହେଁ ! ବଡ଼ଲୋକ କୋଟିକରେ ଜଣେ ସିନା ।'

ଟୁଙ୍ଗା ଚିତ୍କାର ଉଠିଲା…'ଯାଃ, ମୁଁ ଶଳା ସେଇ ଧନୀଲୋକ ହେବି ! କୈଳାଶ ଅଷ୍ଟମ ଶ୍ରେଣୀ ପାଠ ପଢ଼ି ମାଟିଆ ଠିକାଦାର ପାଖରେ 'ପେଟୀ' ହେଉ ହେଉ, ଏବେ 'ଏ' କ୍ଲାସ ଠିକାଦାର । ଦୁଆରେ ଗୁରଟା ଟ୍ରକ ହାତୀ ପରି ବନ୍ଧା ହୋଇଛି । ମୁଁ ସେଇ ପେଟୀ ହେବି !'

କିନ୍ତୁ ଟୁଙ୍ଗା ପେଟୀ ହେଉ ହେଉ ହେଲା ଟ୍ରକ୍ ଡ୍ରାଇଭର । ଥରେ ଥରେ ସ୍ୱାଧରେ ମାତାଲ ହୋଇ ଘରକୁ ଫେରେ । ତା ବୋଉ ପାଖରେ ଖୁବ୍ ଗୁଡ଼ାଏ ଅକାରଣରେ କାନ୍ଦେ, ବାନ୍ତି ଉଚ୍ଛାଳ କରେ, ପିଲାବେଳେ ଯେମିତ ବେକ ଭାଙ୍ଗି ନଘୋଡ଼ ନଦରେ ଶୋଇ ପଡ଼ୁଥିଲା, ସେଇପରି ଶୋଇପଡ଼େ । କିନ୍ତୁ ସ୍ୱାଧ ପାହାନ୍ତାରୁ ଟୁଙ୍ଗା ପୁଣି ଉଭାନ୍ । ଟୁଙ୍ଗାବୋଉ ଗହଣାଟାଏ, ନୋହିଲେ କଂସା ଲୋଟାଟାର ପତ୍ତା ଆଉ ପାଏନାହିଁ ।

ଟୁଙ୍ଗାବୋଉ ସେ ଦନମାନଙ୍କରେ ଗୁଡ଼ାଏ ବାହୁନେ; ମୁଣ୍ଡ ପିଟେ, ସିଦ କାନଗୋଇଙ୍କୁ ଗୁଡ଼ାଏ ଗାଳିଦଏ…ଏପରି ଅପଦାର୍ଥର ହାତ ଧରିବା ଆଗରୁ ମରଣ ହେବା ଉଚିତ୍ ଥିଲା ବୋଲି ଗୁଡ଼ାଏ ହା ହୁତାଶ କରେ । ସିଦ କାନଗୋଇ ସେଥିରେ କିନ୍ତୁ ଆଦୌ ବିଚଳିତ ହୁଅନ୍ତି ନାହିଁ ।

ଟୁଙ୍ଗାବୋଉ ମାଇପି ଲୋକ, କିଛି ବୁଝିପାରୁ ନାହିଁ । ମନସ୍ତାପ କରୁଚି । ଥିଲେ ତ ସେଇ ଟୁଙ୍ଗା ଭୋଗ କରିଥାନ୍ତା ! ସେଇ ଟୁଙ୍ଗା ଏବେ ଭୋଗକଲା ତ ! ଆଉ କଣ ? ସେଥିକୁ ଏତେ କାନ୍ଦ ବୋବାଳ କାହିଁକି ? ଆମେ କଣ ସାଙ୍ଗରେ ଏଗୁଡ଼ା ମଶାଣିକୁ ନିଅନ୍ତେ ?

ସିଦ କାନଗୋଇ ନିତାନ୍ତ ଅନାସକ୍ତ ଭାବରେ ଗୋଟିଏ ହାତରେ ବାଛୁଣ୍ଡି

ପଘା ଧରି, ଆଉ ହାତରେ ଟୋକେଇଟିଏ ଆଉ ଖୁରୁପୀ ଖଣ୍ଡେ କାଖେଇ ଗୋ-ସେବା ପାଇଁ ବାହାରି ଯାନ୍ତି ।

ତାଙ୍କ ଗୋ-ସେବାର କ୍ଷେତ୍ର ଶୁକୁନଈ ପୋଲ ପାଖରେ ସଡ଼କ ତଳେ, ଛନଛନିଆ ସେଇ ଘାସ ପଡ଼ିଆ । ଦିନେ ସେଇଠାରେ ସିଦ୍ଧ କାନଗୋଇଙ୍କୁ ଘାସ ତାଛୁଥିବା ଦେଖି ଟୁଙ୍ଗା ତାଙ୍କୁ ମାରେ କି ନମାରେ ! ଛି-ଛି ଶେଷକୁ ଘାସ ତାଛି-ବାକୁ ଥିଲ ! —ତମର ତ ଜୀବନରେ ଉଚ୍ଚାକାଂକ୍ଷା ନାହିଁ, ବଡ଼ ହେବାର ଅଭିଳାଷ ନାହିଁ । ତମରିମାନଙ୍କ ଯୋଗୁ ଏ ଦେଶର କିଛି ଉନ୍ନତି ହୋଇ ପାରିଲ ନାହିଁ ।

ସିଦ୍ଧ କାନଗୋଇ ଟୁଙ୍ଗା କଥା ନ ଶୁଣିବା ପରି କଣ୍ଠରେ କହିଲେ···'ଯା, ଯା ଘରକୁ ଯା, ତୋ ପାଇଁ ବୋଉ କାନ୍ଦକାଟି ଅସ୍ଥିର !'

ଟୁଙ୍ଗା କିନ୍ତୁ ପହିଲି ଜେନା ଦୋକାନ ଆଡ଼େ ସାଇକେଲ ଛୁଟାଇ ଦେଲା ।

ମାତ୍ର ଟୁଙ୍ଗା କଥାଟା ତାଙ୍କ ମନରୁ ଗଲ ନାହିଁ । ସତେ ତ ଜୀବନରେ ଉଚ୍ଚାକାଂକ୍ଷାଟା କଣ ହେବା ଉଚିତ୍ ? ସିଦ୍ଧ କାନଗୋଇ ସ୍ଥିର କରି ପାରିଲେ ନାହିଁ । କେତେଦିନ ପରେ ଏଇ ପୋଲ ଉପରେ ରଙ୍ଗରଙ୍ଗିଆ ମୁହଁସଞ୍ଜବେଳେ ଦିନେ ସିଦ୍ଧ କାନଗୋଇଙ୍କ ଭାଗବତ ଦଳ ଏକାଠି ହୋଇଥିଲେ ।

ଟୁଙ୍ଗାର ରୁଢ଼ କଥାରେ ସିଦ୍ଧ କାନଗୋଇଙ୍କ ମନରେ ଆଘାତ ହୋଇଥିଲ । ଭାଗବତ ବନ୍ଧୁମାନଙ୍କ ଆଗରେ ସେ ଦୁଃଖ ଫେଡ଼ି ନ କହିଲେ ଦୁଃଖଭାର ମନରୁ ଯିବ ନାହିଁ । କିନ୍ତୁ ଜୀବନରେ ଉଚ୍ଚାକାଂକ୍ଷାଟା କଣ ହେବା ଉଚିତ ? ସେମାନେ ମଧ୍ୟ ତାହାର ସଦୁତ୍ତର ଦେଇପାରିଲେ ନାହିଁ ।

ଗାଁ ମୁଣ୍ଡର ଏଇ ସିମେଣ୍ଟ ପୋଲ ଉପରେ ବୈଠକୀ, ତ୍ରିନାଥ ମେଳା, କିଛି ଶାସ୍ତ୍ରଚର୍ଚ୍ଚା, ଚିଲମେ ଗଞ୍ଜେଇ ଆଉ ଦୁଇଓଳି ଦୁଇମୁଠି ଶାକାନ୍ନ, ଏତିକି ତ ଯଥେଷ୍ଟ ···ନା କଣ କହୁଚ ଚେମାଇ ? ଗୋପୀ ଷଡ଼ଙ୍ଗୀ ଗଞ୍ଜେଇ ଚିଲମ୍‌ଟିକୁ ବନ୍ଧୁକ ନଳୀ ପରି ସଫା କରୁ କରୁ ପଚାରିଲେ । ଚେମ ମହାନ୍ତିଙ୍କୁ ହାଇ ପରେ ହାଇ ଆସୁଥିଲା । ସେ କିଛି ଉତ୍ତର ନ ଦେଇ ନୁଡ଼ାଏ ଆଙ୍ଗୁଠି ଫୁଟାଇ କେବଳ ରାମ୍ ରାମ୍ କହି ହେବାରେ ଲଗିଲେ । ମାତ୍ର ହରି ସ୍ୱାଇଁଙ୍କ ମନକୁ ଏ ଉତ୍ତର ପାଇଲା ନାହିଁ । ସେ କହିଲେ···'ଟୁଙ୍ଗା ପିଲା ହେଲେ କଣ ହେଲ ? ଓ୍ୱାଜିବ କଥା କହୁଛି । ଦେଶରେ ବଡ଼ଠାରୁ ଶ୍ରେଷ୍ଠ ଯାଏ ସମସ୍ତେ କହୁଛନ୍ତି, ଯୋଜନା କରି ଦେଶକୁ ବଢ଼ାଅ, ଆଗାଅ ···ଆଉ ତମେ ଘାସ ତାଛିଲେ ଦେଶ ବଢ଼ିବ କିପରି ହୋ ?

ସିଦ୍ଧ କାନଗୋଇ ତାଚ୍ଛଲ୍ୟପୂର୍ଣ୍ଣ କଣ୍ଠରେ ଉତ୍ତର ଦେଲେ···'ତାହାଲେ କ'ଣ ଠିକାଦାର, ଟ୍ରକ୍ ଡ୍ରାଇଭର ହେଲେ ଦେଶ ବଢ଼ିବ ? ପହିଲି ଜେନା ପରି ଗୁଡ଼ଲୀ ମଦ ଦୋକାନରେ ବସିଲେ ଦେଶ ଆଗେଇବ ? ଯୋଜନା ତ ତମର ଏଇ ସଡ଼କ, ନା

ଆଉ କଣ ? କହୁ ହେଉଛି, ମୁଁ କହୁଚଉଚ ଯୋଜନା ସଡ଼କ ଦଅଣ ବୁଦ୍ଧେଁ, ଯୋଜନା ହେଲା ମଣିଷ ଦଅଣ । ସଡ଼କ ହେଲା, ସେଥିରେ ତମର ଅମର କ'ଣ ଗଲା ହୋ ? ସହରଆ ବେପାରୀମାନଙ୍କର ବଣିଜ ବଢ଼ିଲା, ଠିକାଦାରର ଲାଭହେଲା, ମଟରଗାଡ଼ି, ସାଇକଲବାଲାଙ୍କ ସୁବିଧା ହେଲା । କହୁ ଏଇ ସଡ଼କ ମଧ୍ୟ ଆଣିଦେଲା, ବିନା କର୍ମରେ ଫଳ ଭୋଗର ନିଶା, ସ୍ୱଉଳୀ ମଦ ଆଉ ସସ୍ତା ନ ପଡ଼ୁଣୁ ପହିଲା କେନା ଦୋକାନ ପଛରେ ବ୍ୟଭିଚାର ! ଏଇ ତ ହେଲା ତମର ଯୋଜନା, ନା ଆଉ କଣ ?'

ସିଦ କାନଗୋଇ କଥାଟା କହିପକାଇ ହଠାତ୍ ଥମକି ରହିଗଲେ ।

ପହିଲା କେନା ଦୋକାନ ପାଖରେ ତାଙ୍କ ଅଛିଆଡ଼ୀ ଝିଅ ପାବଣୀକୁ ମଧ୍ୟ ଗାଁ ଲୋକ କୁଆଡ଼େ ଥରେ ଅଧେ ଦେଖି ସାଣଲେଣି । ଏ ଖବର ଶୁଣି ଘାସ ତାଞ୍ଛୁ ତାଞ୍ଛୁ ସିଦ କାନଗୋଇ ମନେ ମନେ ଭାବୁଥିଲେ, ମା ଧରଣୀ ଦ୍ୱିଧା ହୋଇଯା ! ଏ କଥା ପୁଣି ଶୁଣିବାକୁ ଥିଲା ! ହଉ, ଇଏ ବ ପାବଣୀର କର୍ମ କଥା ! ଝିଅଟାର ବୟସ ବଢ଼ି ବଢ଼ି ଗ୍ଭଲଛୁ । ପାହ ମିଳୁ ନାହାନ୍ତି । ପାହ ମିଳିଲେ ଜାତକ ଶୁଦ୍ଧ ନାହିଁ । ଜାତକ ଶୁଦ୍ଧଲେ ଯୌତୁକ ସମ୍ବଲ ମିଳୁ ନାହିଁ ।

ସେଦିନ ମୁହଁସଞ୍ଜବେଳେ ପାବଣୀ ଖଣ୍ଡେ ଫିଲକ୍ ଶାଢ଼ୀ ପିନ୍ଧି, ପାଦରେ ଅଲତା ନାଇ, ପାନ ଚୋବାଇ ଚୋବାଇ ବାହାରିଥିଲା, ହାଟପଦାରେ ଯେଉଁ ସର୍କସ ପଡ଼ିଛି ଦେଖିବା ପାଇଁ ।

ସିଦ କାନଗୋଇ ଦାଣ୍ଡରେ ଗୋରୁ ପିଆଉଥିଲେ । ପାତାଳ କୁହୁଡ଼ି ଗ୍ଭଲ-ମାନଙ୍କରୁ ଉଠୁଥିବା ଘଷିଧୂଆଁ ଆଉ କଣ୍ଟି ଫୁଲର ଗନ୍ଧ ସହିତ ମିଶି ଗାଁ ଉପରେ ଖେଳେଇ ଯାଉଥିଲା । ସବୁଆଡ଼େ ଶାନ୍ତ ଆଉ ସ୍ତବ୍ଧତାର ଚଟ । ହଠାତ୍ ଘରଆଡ଼ୁ ଫଟା କଂସା ପରି ଟୁଙ୍ଗା ବୋଉର ଚିତ୍କାର ଶୁଭିଲା···'ଏ ମୁହଁ ଫଳୁଟାରେ ଲୋ ଏକୁଟିଆ ଝିଅଟା ଭେଶ ହୋଇ ସର୍କସ ଦେଖିବାକୁ ଗିଲୁ ?'

ପାବଣୀ ସେହିପରି କଣ୍ଠରେ ଜବାବ ଦେଲା···'ସାଙ୍ଗରେ ଆଉ ଗୋଟାଏ ଆଣି ଦଉନୁ ! ଇଏ ମନା କରୁଛୁ ? ଆଉ କଣ ମୁ ବୁଢ଼ୀ ହେଲେ ଯାଇଁ ଦଲୁ ?'

କଲେ ପାନଛେପ ପକାଇ ପାବଣୀ ଚଟୀ ଘୋଷାଡ଼ି ଘୋଷାଡ଼ି ଗାଁ ଦାଣ୍ଡରେ ବାହାରିଗଲା । ସମ୍ପର୍କରେ ସେ ନାତ୍ତି-କର୍ମୀ, ସେବକା । ସିଦ କାନଗୋଇ ମୁଣ୍ଡ ଆଉଁସି ତଳକୁ ନୁଆଇଁ କୁନ୍ଥେଇ ଗୋଳେଇବାରେ ଲାଗିଲେ ।

ଟୁଙ୍ଗାବୋଉ କାନ୍ଦଣୀ ଲାଗିଲା ପରି ସିଦ କାନଗୋଇଙ୍କ ପାଖକୁ ଦଉଡ଼ି ଆସି ଚିତ୍କାର କଲେ···'କାନରେ ପଥର ପକାଇ ଏଠି ଥୁଣ୍ଟା ପରି ବସିଥା'ରେ ଅଲପେଇଦିଆ; ଝିଅ ତେଣେ ଖାନକୀ ହୋଇ ଗାଁ ଦାଣ୍ଡରେ ଯାଉ !'

ପାଖରେ ଖଣ୍ଡେ ଦଉଡ଼ି ପଡ଼ିଥିଲା; ଝୁଙ୍କାବୋଉ ସେଇ ଦଉଡ଼ି ଖଣ୍ଡ ଉଠାଇ ସିଦ କାନଗୋଇଙ୍କ ପିଠିରେ ପାହାର ଲଛି ଦେବା ଅସମ୍ଭବ ନୁହେଁ। ସିଦ କାନଗୋଇ ସାବଧାନରେ ସେ ଦଉଡ଼ି ଖଣ୍ଡ ଅପସୃତ କରି କହିଲେ···'ଯା ଯା, ଖଞ୍ଜା ଭିତରକୁ ଯା। ଘର ଲାଜ ଘରେ ରହୁ। ଦାଣ୍ଡ ଲୋକ ଶୁଣିଲେ ଆଉରି ହସିବେ !'

ପାର୍ବତୀ ଦନେ ବେଗରେ ଏଇ ସଡ଼କରେ ଅକୁଳରେ ଚାଲିଗଲା !

କିନ୍ତୁ ଏସବୁ ଏପରି ନ ଥିଲା ତ ! କିଆ ଗୋହିରି, ମଶାଣି ଦଣ୍ଡା, ଭୂତଆମ୍ବ ବଣ ଆଉ ବାଉଁଶ ଜଙ୍ଗଲଘେରା ଏହି ଗାଁମାନଙ୍କର କୋଣେ କୋଣେ, ଦାରିଦ୍ର୍ୟ, ଶୋଷଣ, ଅଜ୍ଞତା ଭରି ରହିଥିଲା ସତ; ମାତ୍ର ତାରି ଭିତରେ ଥିଲା ମଧ୍ୟ ଏକ ସମ୍ବେଦନଶୀଳ ଜୀବନବୋଧ, ଧର୍ମବିଶ୍ୱାସର ଭିତ୍ତିରେ କର୍ମ ଅକର୍ମର ଧାରଣା, ଜୀବ ପ୍ରତି ଦୟା ଓ ସହାନୁଭୂତି, ପୁଣି ଶତ ଦାରିଦ୍ର୍ୟ ମଧ୍ୟରେ ସ୍ୱଚ୍ଛ ଶୁଭ୍ର, ଅମଳିନ ଜୀବନର ଭାବନା। ଆଜି ସେ ସବୁ କିଆଗୋହିରି, ଗ୍ରୁସ୍ଥାନବଡ଼ ଆମ୍ବତୋଟା, ଭୂତଆମ୍ବ ବଣ ଅବଶ୍ୟ ନାହିଁ। ତା' ସ୍ଥାନରେ ଆସିଛି ପିଚୁଢଳା ସଡ଼କ, ସିମେଣ୍ଟ ଯୋଡ଼େଇ ପୋଲ ଆଉ ଟେଲିଗ୍ରାଫ ତାରଖୁଣ୍ଟି ! ମାତ୍ର ସେଥି ସଙ୍ଗେ ସଙ୍ଗେ ସେଇ ସଡ଼କରେ ମଧ୍ୟ ବିଦାୟ ନେଇ ଯାଉଛି, ଶାନ୍ତ ଓ ସେଥିପାଇଁ ଯାହା ଅପରିହାର୍ଯ୍ୟ···ନିଷ୍ପାପ ଜୀବନବୋଧ !

ଆଉ ଟିକକୁ ଧାନ ଗହୀର ସେପଟେ ତାଳବଣୀ ପାହାଡ଼ରେ ସୂର୍ଯ୍ୟ ବୁଡ଼ିଯିବେ। ପବନଟା ଦେହକୁ ଶୀତୁଆ ଲାଗିଲାଣି। କୁହୁଡ଼ିର ଗୋଟାଏ ପର୍ଦ୍ଦା ଚାରିଆଡ଼େ ନଇଁ ଆସିଲାଣି। ଟ୍ରକ୍ ଗୋଟାଏ ଆଉ ଦୁଇଟା ଟ୍ୟାକ୍ସୀ, ସଡ଼କରେ ଘୁଡ଼ାଏ ଧୂଳି ଉଡ଼ାଇ ଆଗପଛ ହୋଇ ଚାଲିଗଲେ। ପହିଲି ଜେନା ଦୋକାନ ପିଣ୍ଡାରେ ଏବେ ଗ୍ରାହକଙ୍କ ଗହଳି ବଢ଼ିବ। ସାଇକଲ୍ ଗୁଡ଼ାଏ ମଧ୍ୟ ସାଇଁ ସାଇଁ ଶବ୍ଦ କରି ସେଇଆଡ଼େ ଚାଲିଥିଲେ।

ମୋଟା ଲେନ୍ସର ଚଷମା କାଚ ତଳୁ ଦୁଇଟି ଶେତା ନିଷ୍ପ୍ରଭ ଆଖିମେଲି ଶୂନ୍ୟଦୃଷ୍ଟିରେ ପ୍ରଗତି ଓ ଯୋଜନାର ସେହି ପଟୁଆର ଆଡ଼େ ସିଦ କାନଗୋଇ ଚାହିଁ ରହିଥିଲେ। ହଠାତ୍ ସେ ଯେପରି ଗାଁ ଲେଉଟାଣି ବାଟ ଭୁଲି, କେଉଁ ଅଚିହ୍ନା ସଡ଼କ ଧାରରେ ବାଟ ପଚାରିବା ପାଇଁ ଠିଆ ହୋଇ ଯାଇଥିଲେ। କାନଗୋଇ ସାହି ଦାଣ୍ଡର ନଡ଼ିଆ ବାଉଙ୍ଗାମାନଙ୍କରେ ଅସ୍ତସୂର୍ଯ୍ୟ ଯେପରି ମୁଠା ମୁଠା ଅବିର ବୋଳି ଦେଇ ଯାଉଥିଲା।

ପାଖରେ ଗୋଟାଏ ସାଇକଲ ବ୍ରେକ୍ କଷି ଠିଆ ହେବାରୁ ସିଦ କାନଗୋଇଙ୍କ ଚେତା ଫେରିଲା। ସାଇକଲ ଚଢ଼ାଳୀ ତାଙ୍କ ଗାଁର ବସନ୍ତ, ଝୁଙ୍କା ସାଙ୍ଗରେ ପାଠ

ପଢୁଥିଲା । ସେ ମଧ୍ୟ ମାଟ୍ରିକ୍ ଫେଲ୍ ହୋଇ ଗୋଟାଏ ବ୍ୟବସାୟ ଫାନ୍ଦୁଛି··· ଗିଟମେଣ୍ଟ ପର୍ମିଟର କଳାପୋଡେଇ । ସେଥିପାଇଁ ସବୁଦିନେ ଗିବାଆସିବା ତା'ର ଲାଗି ରହୁଥାଏ ।

ବସନ୍ତ ଓଠରୁ ସିଗାରେଟ ଖଣ୍ଡ ତଳେ ଫିଙ୍ଗି ଦେଇ କହିଲା···'ମଉସା, ଟୁଙ୍ଗାଇକୁ ଶଳା ପୁଲିସ ଧରି ନେଇଛନ୍ତି । ତୁମେ ଯାଅ ଜାମିନରେ ଅଣିବ ।'

ଟୁଙ୍ଗାକୁ ପୁଲିସ ଧରିନେଲା । ଜାମିନରେ ସେ ପୁଣି ଅଣିବେ କଣ ଓ କପର ? ସିଦ କାନଗୋଇ କିଛି ବୁଝିପାରିଲେ ନାହିଁ । ମୋଟା ଲେନସ୍‌ର କାଚ ତଳେ ତାଙ୍କର ଆଖି ଦୁଇଟି ମାଛର ଗୋଲ୍ ଗୋଲ୍ ଆଖି ପରି ବଡ଼ ହୋଇ ଉଠିଲା ।

ବସନ୍ତ କହିଲା···'ଟୁଙ୍ଗାଇ ଟ୍ରକ୍ ଚଲାଉ ଚଲାଉ ଟ୍ରକ୍ ଘୃପାରେ ଗୋଟିଏ ବୁଢାକୁ ମାରି ଟ୍ରକ ନେଇ ଚ୍ଛୁ' ମାରୁଥିଲା । ପୁଲିସ ତାକୁ ଗିରଫ କରିଛି ।'

ବସନ୍ତ ସାଇକଲ୍ ଛୁଟାଇଦେଲା ।

ପୁଣି ଗୁଡ଼ାଏ ଟ୍ରକ୍ ସାଇକେଲ ଆଉ ଟ୍ୟାକ୍‌ସୀ ରାସ୍ତା ଉପରେ ଧୂଳିର ଝଡ଼ ଉଡ଼ାଇ ଚାଲିଗଲେ । ଟୁଙ୍ଗା ଶେଷକୁ ମଣିଷ ମାରିଲା ?

ଅନେକ ଗଭୀରରୁ ବାହାରି ଆସୁଥିବା ଗୋଟାଏ ଦୀର୍ଘଶ୍ୱାସ ବାହାରି ଆସୁଆସୁ ହଠାତ୍ କେଉଁଠି ଯେପରି ଅଟକି ରହିଗଲା ।

ସିଦ କାନଗୋଇ ଘାସ ଟୋକେଇଟି କାଖତଳେ ଧରି ବଲ୍ ଘୁଲା ଭିତରକୁ ଗଲେ ।

ବାଛୁରୀଟା ଖୁଣ୍ଟରୁ ଫିଟାଇ ନେବାକୁ କିନ୍ତୁ ସେ ଭୁଲି ଯାଇଥିଲେ ।

ବାଛୁରୀଟା ଝୁଣ୍ଟରେ ବନ୍ଧା ରହି ହମ୍ବାରଡ଼ି ପକାଇଥିଲା; କିନ୍ତୁ ବାଛୁରୀର ହମ୍ବାରଡ଼ି ସିଦ କାନଗୋଇ ଯେପରି ଶୁଣିପାରୁ ନ ଥିଲେ ।



# ସାହୀ-ଖାନ୍ଦାନ୍

'ଆରେ ଓ ବୃଦ୍ଧୁ ମିଆଁ'...କଣ୍ଠସ୍ୱର ମୃଦୁ, କ୍ଷୀଣ—ନବାବୀ ମୋଲାୟେମ୍ ତଥାପି ଲିଭିନାହିଁ ସେଥିରୁ । ଅପରନ୍ତୁ ୭୭ ବର୍ଷ ବୟସରେ ଆଉରି କ୍ଷୀଣ, ଆଉରି କରୁଣ ହୋଇ ଉଠିଛି । ନବାବ୍ ରସୁଲ୍ ମିର୍ଜା କଥା କହିବାବେଳେ, ଗୁମୁରି ଉଠେ ଯେପରି ଗୋଟାଏ ବିଳାପ । ଗୋଟାଏ ବେଦନାର୍ତ୍ତ ସ୍ୱର ।

ବୃଦ୍ଧୁ ମିଆଁ କଲୁ ସତୁରି ବର୍ଷ ବୟସରେ ବଡ଼ବୋଲା । ଜୋର୍ ଗଳାରେ ନ ଡାକିଲେ ଶୁଭେ ନାହିଁ । ନବାବ ରସୁଲ ମିର୍ଜାଙ୍କ ଖାସ୍ ଖାନ୍‌ସମା ଥିଲା ସେ । ସୁଲତାନ୍‌ପୁରରେ ସେତେବେଳେ ନବାବ ସାହେବଙ୍କ ଥିଲା ଜାଗିର, ଏକଦା ବିସ୍ତୀର୍ଣ୍ଣ ଭୂସମ୍ପତ୍ତିର ଏକ ଭଗ୍ନାଂଶ । ମାତ୍ର ଏବେ ସେସବୁ ଛିଣ୍ଡାକନାରେ କର୍ପୂର ଗନ୍ଧ ପରି । ତଥାପି ବୃଦ୍ଧୁମିଆଁ ନବାବ ରସୁଲ୍ ମୀର୍ଜାଙ୍କ ପରିବାରରେ ରହିଯାଇଛି । ଯିବ ବା କୁଆଡ଼େ ? ସାହୀ-ଖାନ୍‌ଦାନରେ ଖାନ୍‌ସମା ହୋଇ ରହିବା ତ କମ୍ ଗୌରବର କଥା ନୁହେଁ । ଆଲ୍ଲାଙ୍କ ମେହେର୍‌ବାନିରୁ ରୁଟି ଟୁକ୍‌ରାଏ ଇ ଯଥେଷ୍ଟ । ଅମନାବାଦ୍ ଗଳି ଧାରାରେ ଥରେ ଥରେ ଗ୍ରେଷ୍ଟେଲ୍ଲର ଚା' ଦୋକାନରେ ବସି ଆଡ଼୍‌ଡ଼ା ଜମାଇବାବେଳେ ଖଣ୍ଡେ ଖଣ୍ଡିଆ ବଡ଼ରେ ଶେଷଟାଣ ଦେଇ, ବୃଦ୍ଧୁ ମିଆଁ ହଠାତ୍ ଫେରିଯାଏ, ନବାବ୍ ଲକ୍ଷ୍ନଉର ସେ ସ୍ୱର୍ଣ୍ଣଯୁଗକୁ...ତା'ର ଅବ୍‌ବାଜାନ୍ କୁଆଡ଼େ ଥିଲେ ଖୋଦ୍ ନବାବ୍ ଓ୍ୱାଜିଦ୍ ଅଲ୍ଲୀ ସା'ଙ୍କ ଖାନ୍‌ସମା । ସେମାନଙ୍କର ମଧ୍ୟ ଥିଲା ଜାଗିର । ମାତ୍ର କୋମ୍ପାନୀ ସରକାର ସେସବୁ ଖାସ୍ କରିନେଲା । ବୃଦ୍ଧୁ ମିଆଁର କୁହୁଡ଼ିଆ ସ୍ମୃତିରେ ମନେ ପଡ଼େନାହିଁ ।

ସକାଳ ଖରା ଅଗଣା ମଝି ନିମଗଛ ଚଢ଼ାକୁ ଉଠି ଗଲାଣି । ଆଜି ମାସର ପହିଲା । ନବାବ୍ ରସୁଲ୍ ମୀର୍ଜାଙ୍କୁ ହୁସାନାବାଦ୍‌ରେ ଓ୍ୱାସିକାରୁ ଦପ୍ତରକୁ ଯିବାପାଇଁ ପଡ଼ିବ ମାସୋହାରା ପେନ୍‌ସନ ପାଇଁ—ତେରଟଙ୍କା ସାତଅଣା ଛ' ପାହୁଲା ! ସେଇ କୋମ୍ପାନୀ ଅମଳରୁ ଖଞ୍ଜା ହୋଇଛି ! ନବାବ ସାହେବଙ୍କ ଓ୍ୱାସିକା ଭାଗ ଭାଗ ହୋଇ ରହିଛି ବର୍ତ୍ତମାନ, ତେରଟଙ୍କା ସାତଅଣା ଛ' ପାହିରେ ! ତାଙ୍କର ବା ଆଉ କେତେଦିନ ? ତାଙ୍କ ଅନ୍ତେ ଏଇ ଓ୍ୱାସିକା ପୁଣି ଭାଗ ଭାଗ ହେବ, ଛଅପୁଅଙ୍କ ଭିତରେ । ଓ୍ୱାସିକା ଦପ୍ତରର ମୁନ୍‌ସୀ କହୁଥିଲା, ଜଣକା ଭାଗ ପଡ଼ିବ ଦୁଇଟଙ୍କା ତେଇଶି ପଇସା !

ନବାବ୍ ରସୁଲ ମୀର୍ଜାଙ୍କ କୁଞ୍ଚିତ ଓଠରେ ଫୁଟି ଉଠିଲ, ନିଜକୁ ପରିହାସ କରିବା ପରି ପ୍ରିୟହାସର ଗୋଟାଏ କ୍ଷୀଣ ରେଖା । ବୋଧହୁଏ ନବାବ-ଜାଦାମାନଙ୍କର ଦସ୍ତୁରିସ୍ତା ପ୍ରତି ଉପହାସ । କିନ୍ତୁ ଦସ୍ତୁରିସ୍ତା କେଉଁଥିପାଇଁ ? ପରମୁହୂର୍ତ୍ତରେ ନବାବ ରସୁଲ ମୀର୍ଜାଙ୍କ କୁଞ୍ଚିତ; ଲୋଳିତ ମୁହଁର ରେଖାସବୁ କଠୋର ହୋଇ ଉଠିଲା ! ହେଉନା ପଛେ ଓ୍ୱାସିକା ତିନିଟଙ୍କା ତେଇଶି ପଇସା ! —ସେମାନେ ତ ଅହଙ୍କାର କରି ପାରିବେ—ସାହ୍ମ ଖାନ୍‌ଦାନ ବୋଲି ! ଏଇ ଓ୍ୱାସିକା ତ ସେମାନଙ୍କର ସାହ୍ମ ଖାନ୍‌ଦାନ ସହିତ ସମ୍ପର୍କର ସୂତ୍ର । ତା ନ ହେଲେ ଏ ଟଙ୍କା ବା କିଣ ?

ଲକ୍ଷ୍ନୌର ସ୍ୱର୍ଣ୍ଣଯୁଗର ନବାବ୍ ସୁଜାଉଦ୍ଦୌଲାଙ୍କ ବେଗମ୍—ବହୁ ବେଗମ୍‌ଙ୍କ ଉଦ୍ଦେଶ୍ୟରେ ଶତ ପ୍ରଣାମ ଜଣାଇଲେ ନବାବ ରସୁଲ ମୀର୍ଜା । ବହୁ ବେଗମ ଦୂରଦୃଷ୍ଟିରେ ହିନେ ଦେଖିଥିଲେ ନବାବୀ ଅମଲର ପତନ । ସେଥିପାଇଁ ପ୍ରଚୁର ଅର୍ଥ-ଭଣ୍ଡାର ସୃଷ୍ଟି କରି ଯାଇଥିଲେ ସେ···ଯେପରି ତାଙ୍କର ବଂଶଧରମାନଙ୍କୁ ହିନେ ହାତ ପତାଇବା ପାଇଁ ନ ପଡ଼େ । କିନ୍ତୁ ବହୁ ବେଗମ୍ କିଣ କଳନା କରିଥିଲେ ପରିବାର ସଂଖ୍ୟାବୃଦ୍ଧିର ଗଣିତରେ, ହିନେ ନବାବ୍ ରସୁଲ ମୀର୍ଜାଙ୍କ ପରି ନବାବଜାଦାମାନଙ୍କର ଓ୍ୱାସିକା ଆସି ପହଞ୍ଚିବ ମାସକୁ ତେରଟଙ୍କା ସାତଅଣା ଛ' ପାହ ? ନସୀବ୍ ! ନସୀବ୍ !

ହୁସାନାବାଦ୍‌ରେ ଓ୍ୱାସିକା ଦପ୍ତର୍—ଅମିନାବାଦ୍‌ରୁ ତିନିମାଇଲ ବାଟ । ରସିଦ ଖାଁ ଆଉ ଟିକିଏ ତା'ର ଝାଲରଲଗା ଏକ୍‌କାଗାଡ଼ି ଆଣି ଟମ୍‌ଟମ୍ ବଜାଇବ । ଶୀଘ୍ର ଶୀଘ୍ର ବେଳସୁଁ ନଗଲେ ଦେଖା ହେବ ନାହିଁ, ଅନେକ ନବାବଜାଦାଙ୍କ ସହିତ —ଯେଉଁମାନେ ନବାବ ରସୁଲ ମୀର୍ଜାଙ୍କ ବନ୍ଧୁ ! ବିଶେଷତଃ ପ୍ରିନ୍‌ସ ଆଖ୍‌ତାର ମୀର୍ଜା, ମହମ୍ମଦ ଅଲି ବାହାଦୁର୍—ଶେର୍‌ଓ୍ୱାନିର ଧଡ଼ିଛିଣ୍ଡା ଅଚ୍‌କନର ଆସ୍ତିକାଳ ପୁରି ଆସିଲ ବୋଧହୁଏ, ପାଦରେ ପାକୁଆ ଜାଇଦାର୍ ଜୋତା, ମୁଣ୍ଡରେ ଜାଇଦାର୍ ଟୋପି, ଫିକା ଆଖିତଳ ଫୁଲିଗଲଣି, ମୁହଁ ଶୋଷା, ତଥାପି ପାନ ମସଲାର ଖୁସ୍‌ବୁରୁ ସମସ୍ତେ ଭୁଟନ୍ତି, ଇଏ ନବାବ ଓ୍ୱାଜିଦ୍ ଅଲ୍ଲୀସା'ଙ୍କ ଖାନ୍ଦାନ୍ । ଏମାନଙ୍କ ସହିତ ଓ୍ୱାସିକା ଦପ୍ତରରେ ମାସକରେ ଏଇ ହିନଟି ମିଶିବା ବେଳ—ନବାବ ରସୁଲ ମୀର୍ଜାଙ୍କର ମନେହୁଏ, ସେମାନେ ଶୁଖିଲ ଉଡ଼ା ପତ୍ର କୁହନ୍ତି ! ସେମାନେ ହିନେଥିଲେ ଲକ୍ଷ୍ନୌର ନବାବ । ଇମାମ୍‌ବାଡ଼ା ତିଆରି କରିଥିଲେ ସେମାନଙ୍କ ପୂର୍ବଜମାନେ, ଯଦ୍ୟପି ଆଜି ସେମାନଙ୍କର ନୀଖନୋଇ ଇଟାରେ ତିଆରି ପୁରୁଣା ଇମାରତ୍‌ମାନ ଭୁଶୁଡ଼ି ପଡ଼ିଲଣି । କେଉଁଠି ବା ଦାନ୍ତ ଦେଖାଇ ଠିଆ ହୋଇଛି ଭୁଶୁଡ଼ିବା ପୂର୍ବରୁ ।

ବୁଢ଼ି ମିଆଁ ଏକ ଲମ୍ବରେ ଗୋଟାଏ ପେଶାଓ୍ୱାଝ ଲଟେଇ କୁକୁଡ଼ାର ଅଣ୍ଡାକୁ ପାତଳା ଛୁରିରେ ତାଛିଛି । ଅନେକ ଲଟେଇ, ଅନେକ ଖୁମାଖୁମି ପରେ ତାର

ଅଣ୍ଟା ଦହଡ଼ା ହୋଇଗଲାଣି । କୁକୁଡ଼ାର ପାଦ ନଖଗୁଡ଼ା ତୀକ୍ଷ୍ଣ ହୋଇ କ୍ଷୁର ଧାର ପରି ହେଲଣି । ସେ ଜାଣେ ଓ୍ୱାଯିକା ପାଇବା ଦିନ ନବାବ୍ ସାହେବ ବାହାରିବେ କୁକୁଡ଼ା ଲଢ଼େଇରେ । ହାସ୍ୟ ନସୀବ୍ ! ନବାବ୍‌ମାନେ କୁକୁଡ଼ା, ପାରା ଆଉ ବଟେର ଲଢ଼େଇରେ ଯେତେଟା ମାତିଲେ, ସେତିକି ଯଦି ମାତିଥାନ୍ତେ ଫଉଜ ତାଲିମ୍‌ରେ, ତା'ହେଲେ ହିନ୍ଦୁସ୍ଥାନର ଇତିହାସ ହୁଏତ ଅଲଗା ହୋଇଥାନ୍ତା । ଇଷ୍ଟ-ଇଣ୍ଡିଆ-କୋମ୍ପାନୀ ଦଖଲ କରି ନଥାନ୍ତା ଅବଧ ଏତେ ସହଜରେ ।

ନିମଗଛ ତଳେ ସ୍ୱର୍‌ପାଇ ଉପରୁ, ଦୁଇ ହାତରେ ତାଳି ପିଟି, ରସୁଲ ମୀର୍ଜା ଏଥର ଗଲା ପର୍ଦ୍ଦା ଉଚ୍ଚ କରି ଡାକିଲେ···'ବୁଦ୍ଧୁ ମିଆଁ ।'

ବୁଦ୍ଧୁ ମିଆଁ କୁକୁଡ଼ା ଅଣ୍ଟାକୁ ଘୃଣ୍ଟି_ ଲୁଣ୍ଠି ପରି ମୁନିଆ କରି ସାରିଥିଲା । ଆଜି ହେବ ରସୁଲ୍ ଖାଁ କୁକୁଡ଼ା ସହିତ ଲଢ଼େଇ । ନବାବ ସାହେବ, ଏଇ କିୟାମତ୍ ଖାଁଟା ସାଙ୍ଗରେ ମୁରଗାବାଜୀ କରନ୍ତି କାହିଁକି କେଜାଣି ? ସାହି ଖାନ୍ଦାନ୍‌ରେ ଏବେ ବି ତ ଅନେକ ଅଛନ୍ତି—ମୁରଗାବାଜୀ ଯେଉଁମାନଙ୍କର ନିଶା । ରସୁଲ୍ ଖାଁର ଖାନ୍ଦାନ ବି କ'ଣ ? ତା' ଅଜା ଥିଲା ନବାବୀ ଖାନ୍ଦାନରେ କୋଚୁଆନ୍ । ଏକ୍‌କାରୁ ଆରମ୍ଭ କରି ସେ ଏବେ ଗୋଟାଏ ତିନିଚକିଆ ସ୍କୁଟର କଲଣି । ସ୍କୁଟରରୁ ଉପାର୍ଜନ ମନ୍ଦ ନୁହେଁ । ତା'ବୋଲି ନବାବ ରସୁଲ ମୀର୍ଜାଙ୍କ କୁକୁଡ଼ା କିୟାମତ୍ ମିଆଁ କୁକୁଡ଼ା ସାଙ୍ଗରେ ଲଢ଼ିବ ? ଅନେକ ଲଢ଼େଇରେ ହାରି ନବାବ୍ ରସୁଲ ମୀର୍ଜାଙ୍କ ଜିଦ୍, କିନ୍ତୁ କିୟାମତ୍ ଖାଁକୁ ସେ ଆଜି ଦେଖାଇଦେବେ ତାଙ୍କ ପେଶାଓ୍ୱାରୀ ମୁର୍ଗାର କିୟାମତ ।

କିନ୍ତୁ କିୟାମତ୍ ମିଆଁ ତା କୁକୁଡ଼ାକୁ ପ୍ରତିଦିନ ଦୁଇଓଳି ନିଜ ହାତରେ ଯେ ଘିଅଭଜା ଗହମଦାନା ଖୁଆଏ, ସେ ଖବର କ'ଣ ରଖିଛନ୍ତି ନବାବ ସାହେବ ? ନବାବ୍‌ଙ୍କ ଲଢ଼େଇ କୁକୁଡ଼ା, ପାରା ଆଉ ବଟେରମାନେ ଦିନେ ଯେ ଘିଅଭଜା ଦାନା ଖାଉ ନଥିଲେ ନୁହେଁ । ଏବେ ଖାଣ୍ଟି ଲୁଆଘିଅ ଖୋଦ୍ ନବାବ୍‌ଙ୍କ ପାଇଁ ସ୍ୱପ୍ନ । ତଥାପି ଦିନେ ଦିନେ ବୁଦ୍ଧୁ ମିଆଁ ସୁବିଧା ପାଇଲେ, ଘିଅ ଲେସି ଏଇ କୁକୁଡ଼ାକୁ କେଇ ଚୁମୁକ୍ ପିଆଏ ! ···ତେବେ ବୁଢ଼ା ହୋଇଗଲଣି ପେଶାଓ୍ୱାରୀ ଗଞ୍ଜାଟା । ଅତୀତରେ କେଉଁ ଲଢ଼େଇରେ କାହା ଖୁମ୍ପାରେ ଆଖି ଗୋଟାଏ ମଧ୍ୟ କଣା । ଯେତେ ଘିଅ ପିଆଇଲେ କ'ଣ ହେବ ?

କିନ୍ତୁ କୁକୁଡ଼ାଟା ଯେପରି ମାନିବା ପାଇଁ ପ୍ରସ୍ତୁତ ନୁହେଁ ତା'ର ବୈକଲ୍ୟ । ବୁଦ୍ଧୁମିଆଁ ହାତରୁ ମୁକ୍ତି ପାଇ ସେ ଚକ୍ ଚକ୍ ହୋଇ, ନୀଳ, ହଳଦିଆ, କଳା ପକ୍ଷ ଆଡ଼ମ୍ବରରେ ବିସ୍ତାର କରି, ଚକ୍‌କର କାଟି ବୁଲିଲଣି, ମୁର୍ଗୀ ସନ୍ଧାନରେ ।

'ଆସ୍ସା ହଜୁର'···କୁଜା, ଧନୁ ପରି ବଙ୍କା ମୂର୍ତ୍ତିଟିଏ ଠିଆ ହେଲା ନିମଗଛ ମୂଳେ, ନବାବ୍ ରସୁଲ ମୀର୍ଜାଙ୍କ ସ୍ୱରପାଇ ପାଖରେ ।

'ନବାବ୍‌ଜାଦାକୋ ସଲାମ୍ ପେଶ୍ କରୋ ।'···ହୁକାରେ ନିଆଁ ନଥିଲା ।

ରସୁଲ ମିର୍ଜାଙ୍କ ଜ୍ୟେଷ୍ଠ ନନ୍ଦନ, ନବାବ୍‌ଜାଦା ନୁରୁଲ୍ ମିର୍ଜା, ଦୁଇ ଅକ୍ଷିରେ ସୁର୍ମା ପିନ୍ଧି, କାନରେ ଅତରଭିଜା ତୁଳା ଟିକିଏ ଗୁଞ୍ଜି, ଦୁଇ ଖିଲ ପାନ ଚୋବାଇ ଚୋବାଇ, ଅଇନାରେ ଚେହେରାଟାକୁ ଆଉ ଥରେ ଦେଖି ନେଉଥିଲେ ତାଙ୍କ "ମାଷ୍ଟର ଟେଲର" ଦୋକାନକୁ ବାହାରିବା ପୂର୍ବରୁ । ଅମିନାବାଦ୍‌ରେ ଗୋଟାଏ ଦର୍ଜି ଦୋକାନ ଖୋଲିଛନ୍ତି ସେ, ଅବଶ୍ୟ ରସୁଲ ମିର୍ଜାଙ୍କ ପ୍ରତିବାଦ, ପ୍ରତିରୋଧ ସତ୍ତ୍ୱେ । ନବାବଜାଦା ହୋଇ ପୁଣି ଦର୍ଜି ଦୋକାନ ଖୋଲିବ ?···'ଅବ୍ବାଜାନ୍, ସେ ନବାବୀ ଅମଲ ଗଲାଣି । ଓ୍ୱାସିକା, ମାସକୁ ତିନିଟଙ୍କା କେତେଅଣି ପଇସା ଆଉ ଘରଭଡ଼ାରୁ କ'ଣ ମୁଁ ବଞ୍ଚିବି ? ଭଡ଼ାଟିଆମାନେ ମଧ୍ୟ ଅନେକ କାଳର, କିଏ ମାସକୁ ତିଏ ପାଞ୍ଚଟଙ୍କା ତ କିଏ ସାତଟଙ୍କା । ହୁଁ···ସେତିକ ବି ଖୁବ୍ । ଘରଗୁଡ଼ାକ ତ ଭଙ୍ଗା । ତିବାର ଗୁଡ଼ାକ ଦାନ୍ତପାଟି ମେଲି ଅପେକ୍ଷା କରି ରହିଛନ୍ତି, କୋଉ ମୁହୂର୍ତ୍ତରେ, କେତେବେଳେ ଯେ ତଳେ ପଡ଼ିବେ, କିଏ ଜାଣେ ?'

ବୃଦ୍ଧ ମିଆଁଙ୍କୁ ଦରଜା ପାଖରେ ଦେଖି, ନବାବ୍‌ଜାଦାଙ୍କ ପ୍ରସନ୍ନ ମୁହଁଟା କୁଞ୍ଚିତ ହୋଇ ଉଠିଲା । ପାଣ୍ଡୁଛଡ଼ା ଅଇନା ପାଖରେ ଝୁଲୁଥିଲା ଗୋଟାଏ କ୍ୟାଲେଣ୍ଡର··· ପନ୍ଦର ଆଜି । ନବାବ୍ ସାହେବ କାହିଁକି ସଲାମ୍ ପଠାଉଛନ୍ତି, ବୁଝିବା ପାଇଁ ବାକି ରହିଲା ନାହିଁ ତାଙ୍କର । ହୁସେନାବାଦ୍ ଓ୍ୱାକିଆ ଦପ୍ତରକୁ ଆଜି ଯିବେ ନବାବ୍ ରସୁଲ ମିର୍ଜା···ଲେଖାପୋଖାରେ ବନ୍ଧୁ ବେଗମ୍‌ଙ୍କର କେଉଁ ଶତ୍ରେଦାର୍—ମାସୋ-ହାରା ଓ୍ୱାସିକା ପେନ୍‌ସନ୍ ପାଇଁ, ତେରଟଙ୍କା ସାତଅଣା ଛଅପାହି । ଏଥିପାଇଁ ଖର୍ଚ୍ଚ ହେବ କମ୍ସେ ପନ୍ଦରଟଙ୍କା ! କୁଲଫିଓ୍ୱାଲା ଅବ୍‌ଦୁଲ ମଲିକ ମଟ୍‌କାରେ କୁଲ୍‌ଫି ଭର୍ତ୍ତି କରି ଆଣିଥିବ, ନବାବମାନଙ୍କ ପାଇଁ । କୁଲଫି ସେମାନଙ୍କର ଖାଁଇ ପ୍ରସ୍ତ, ଅବଦୁଲର କୁଲଫି ପୁଣି ଖାଣ ସାନ୍‌ଦାର !

'ଓ୍ୱାଲେକୁମ୍···ସଲାମ୍'···ତା'ର କୁର୍ଣ୍ଣିସରେ ସେଇ ନବାବୀ ଅମଲର କାୟଦା ।'

ଦୁଇପ୍ଲେଟ କୁଲଫିରେ ଉଡ଼ିଯିବ ଦଶଟଙ୍କା !

ଏଇ ଯେ ରିକ୍‌ସାରେ ଚଢ଼ି ଆସୁଛନ୍ତି ପ୍ରିନ୍‌ସ ଆଖ୍‌ତାର ମିର୍ଜା···'କୁଲ୍‌ଫି ହୋ ଯାୟ ହଜୁର !'

କୁଲଫି ଆଉ ପାନରେ ଉଡ଼ିଯିବ ଓ୍ୱାସିକାର ଅଧେ ଟଙ୍କା । ତା'ପରେ ଅଛୁ ତପସ୍ୱୀମାନଙ୍କ ବକ୍‌ସିସ୍ । ଥରେ ଥରେ ଫେରନ୍ତି ଏକ୍‌କା ଭଡ଼ା ଦେବାପାଇଁ ସୁଦ୍ଧା ନବାବ୍ ସାହେବଙ୍କ ପକେଟ୍‌ରେ ପଇସା ନଥାଏ । ଓ୍ୱାସିକା ଦପ୍ତରରୁ ଫେରି ଶୂନ୍ୟଗର୍ଭ ଶେର୍‌ଓ୍ୱାନୀଟା ପଲଙ୍କ ଉପରେ ଫିଙ୍ଗି ଦେଇ, ସେ ମୋଲାୟେମ୍ କଣ୍ଠରେ ଡାକନ୍ତି··· 'ବନ୍ଧୁ' ।

ନୂରୁଲ୍‌ର ସ୍ତ୍ରୀ ମମ୍‌ତାଜ୍ ଏ ମୋଲାୟେମ୍ ଭାବର ଅର୍ଥ ମଧ୍ୟ ବୁଝିପାରେ । ବୋର୍ଖା ତଳେ ତା'ର ମୁହଁର ଭଙ୍ଗୀ କୁଞ୍ଚିତ ହୋଇ ଉଠେ । ନୂରୁଲ୍‌ର ତକିଆ ତଳ ସେ ଉଣ୍ଡାଳେ, ଏକ୍‌କା ଭଡ଼ା ମେଣ୍ଟାଇବା ପାଇଁ ।···ଏଇ ଘରୁ ଖାଇ ଘୋଡ଼ା ଆଗରେ ଡେଇଁବା କଥା । ଓ୍ୱାସିକାଟା ସରକାରକୁ ବିକୀ କରିଦେଲେ ହୁଅନ୍ତା ନାହିଁ ? ଘରେ ଦାନା ନାହିଁ ! କିନ୍ତୁ ନବାବ୍ ସାହେବଙ୍କ ଜିଦ୍ ।

ମମତାଜର ମିଜାଜ୍ ପରମୁହୂର୍ତ୍ତରେ ପୁଣି ବଦଳିଯାଏ । ଦୟା, ସହାନୁଭୂତି ଆସେ ଏଇ ବୃଦ୍ଧଙ୍କ ପ୍ରତି, ଯିଏ ବଞ୍ଚି ରହିଛନ୍ତି, ଗୋଟାଏ ଗତାୟୁ ଅତୀତକୁ ଆଶ୍ରୟ କରି । ବେଶ୍ ବୁଝିପାରେ ମମତାଜ, ଏଇ ଅନ୍ଧ ଆକର୍ଷଣ । ଯିଏ ବି ପୁଣି ଜାଫ୍‌ରୁଲ ମୀର୍ଜା ବେଗମ୍‌ଙ୍କ ଖାନ୍ଦାନ୍‌ର ଝିଅ···ସେମାନେ ମଧ୍ୟ ସାହି ଖାନ୍ଦାନ୍ । ଜାଫରୁଲ ମୀର୍ଜା ଅବଶ୍ୟ ତାଙ୍କ ଓ୍ୱାସିକା ବିକୀ କରି, ସେଇ ନଗଦ ଟଙ୍କାରେ ଖୋଲିଥିଲେ ଗୋଟାଏ ଜୋତା ଦୋକାନ !

ଛେପ ଢୋକି ଢୋକି ମମତାଜ୍ କହେ; ସିଏ, ଅର୍ଥାତ୍ ତା'ର ସ୍ୱାମୀ ନୂରୁଲ୍ ମୀର୍ଜା କହୁଥିଲେ, 'ଏଇ ଓ୍ୱାସିକାରୁ କି ଫାଇଦା ମିଳିବ ? ତେରଟଙ୍କା ସାତଅଣା ଛ' ପାଇ ମାସୋହାରା ଓ୍ୱାସିକା ପାଇଁ ପନ୍ଦର ଟଙ୍କା ଖର୍ଚ୍ଚ ?'

ନବାବ ସାହେବ ଉତ୍ତର ଦିଅନ୍ତି ନାହିଁ, ନୀରବ ରହନ୍ତି । ନବାବଜାଦା ହେଲେ ବି ନୂରୁଲ୍ ମିଆଁ ଦର୍ଜି···ସେ କୁଆଡ଼ୁ ବୁଝିବ ସାହି ଖାନ୍ଦାନ୍‌ର ଇଜ୍ଜତ୍ ? ଏଇ ଓ୍ୱାସିକା ତ ଆମର ପରିଚୟ—ଆମେ ସାହି ଖାନ୍ଦାନ୍ ! ସେଥିପାଇଁ କୁଲ୍‌ଫି ଓ୍ୱାଲା, ଓ୍ୱାସିକା ଦପ୍ତରର ମାଜିଷ୍ଟ୍ରେଟ୍, କରାଣୀ, ଚପରାଶୀ ସମସ୍ତେ ସଲାମ୍ କରନ୍ତି । କିନ୍ତୁ ଓ୍ୱାସିକା ଗଲେ ନୂରୁଲ୍ ମିଆଁ ଦର୍ଜିକୁ ଚହ୍ନିବ କିଏ ? ପଚାରିବ କିଏ ? କ'ଣ ରହିବ ତା'ର ପରିଚୟ ?

—'ଆବ୍‌ବାଜାନ୍, ଦିନକାଳ ବଦଳି ଗଲାଣି । ଅନେକ ସାହି ଖାନ୍ଦାନ୍ ସେମାନଙ୍କ ଓ୍ୱାସିକା ସରକାରଙ୍କୁ ବିକୀ କରି, ନଗଦ ଟଙ୍କା ଆଣି ବ୍ୟବସାୟରେ ଲଗାଇଲେଣି ।'

ଏହାର ଇଙ୍ଗିତ ବୁଝିବାରେ, ରସୁଲ ମୀର୍ଜାଙ୍କର ମଧ୍ୟ ଅସୁବିଧା ହୁଏନାହିଁ । ବୁଢ଼ାମିଆଁ ଲେପ୍ଟକୋର୍ଟ୍ର ଶେରଓ୍ୱାନୀରେ ମୋଟର ବୋତାମଗୁଡ଼ା ଆଣ୍ଠି ବାନ୍ଧେଲେ, ବେକ ଏପାଖ ସେପାଖ କରି ରସୁଲ ମୀର୍ଜା ଉତ୍ତର ଦିଅନ୍ତି···'ଦିନକାଳ ବଦଳି ନାହିଁ ବାବୁ । ବଦଳିଛି ଇନ୍‌ସାନ, ମୂଲ୍ୟବୋଧ ! ଠିକ୍ ଅଛି ସେଇ ଦିନକାଳ !'

ବାପ ପୁଅଙ୍କ ମଝିରେ କେତେଥର ଝଗଡ଼ା ମଧ୍ୟ ହୋଇଗଲାଣି, ଏଇ ଓ୍ୱାସିକା ବିକୀ ପାଇଁ । ନୂରୁଲ୍‌ର ମତଲବ ଏକାଥରେ କିଛି ନଗଦ ଟଙ୍କା ମିଳିଗଲେ, ସେ ତା'ର ଦର୍ଜି ଦୋକାନ ପାଖରେ ଖୋଲନ୍ତା ଗୋଟାଏ ଶିକ୍-କବାବ୍ ଦୋକାନ ! ରେସ୍ତୋରାଁ ।

ବୁଦ୍ଧୁ ମିଆଁ ଆଉ ଅପେକ୍ଷା କରି ନ ପାରି କହିଲା···'ନବାବ ସାହେବ ସଲାମ୍ ପଠାଇଛନ୍ତି ।'

ଏ ସଲାମ୍‌ର ଅର୍ଥ ବୁଝେ ନୁବ୍ବୁଲ୍ । ମୁଣ୍ଡରେ ଟୋପିଟାର ଗୋଟାଏ ରଖିବା କୋଣ ଅଇନାରେ ପରଖ କରୁ କରୁ ସେ କହିଲା···'ବଡ଼ୁ ବେଗମ୍‌ଙ୍କ ପାଖରେ ଅଛୁ ଟଙ୍କା !'

ଏକ୍‌କାବାଲା ସେତେବେଳକୁ ବାହାରେ ଟମ୍ ଟମ୍ କଲଣି ।

ନବାବ ସାହେବ ଶେଷ ମୁହୂର୍ତ୍ତରେ ଛଡ଼ିଟା ଖୋଜ ପାଉନାହାନ୍ତି···ବୁଦ୍ଧୁ ! ବୁଦ୍ଧୁ ମିଆଁ ! ମେରେ ଛଡ଼ି··· ।

ଅପରାହ୍ଣରେ ଓ୍ୱାସିକା ଦପ୍ତରରୁ ଫେରି ସଦର ଦରଜା ପାଖରୁ ଗଡ଼ କଣି ଫେରଥିବା ପରି କଣ୍ଠରେ ନବାବ୍ ରସୁଲ ମିର୍ଜା ଡାକଲେ···'ଓ ବୁଦ୍ଧୁ ! ବୁଦ୍ଧୁ ମିଆଁ !'

ମାସକର ଗୋଟାଏ ବଡ଼ ଦାୟିତ୍ୱ ଛୁଣ୍ଡିଲା ଆଜ ! ଓ୍ୱାସିକା—ରେଜିଷ୍ଟର୍‌ରେ ଥର ଥର କମ୍ପିତ ହାତରେ ନବାବ ସାହେବ ଦସ୍ତଖତ ଦେଇ, ଗଣି ଗଣି ତେରଟଙ୍କା ସାତଅଣା ଛଅ ପାହି ଓ୍ୱାସିକା ଆଣିଲେ । ଏ ନସ୍ୱା ପଇସାର ହିସାବ ବୁଝିପାରନ୍ତି ନାହିଁ ନବାବ ସାହେବ । କରାଣୀ ତାଙ୍କୁ ଧରାଇ ଦେଲା ତେର ଟଙ୍କା ସତରକଣି ପଇସା । କନ୍ତୁ ସତରକଣି ପଇସା କଣ ସାତଅଣା ଛଅ ପାହି ? —କରାଣୀ ବୁଝାଇଦେଲା ଆପଣଙ୍କ ହିସାବ୍ ଠିକ୍ ଅଛି ।

'ମୋତେ ସାତଅଣା ଛଅ ପାହି ନ ଦେଇ ସବୁଥର ଏ ସତରକଣ ପଇସା ଦଅ କାହିଁକ ?'

'ଅଣା ପାହିର ଦନ ଗଲଣି ନବାବ୍ ସାହେବ !'

'ପଇସାର ତ ଦନ ଅଛି ! ଆଚ୍ଛା ମଲଚଆ ନୋଟ୍‌ଗୁଡ଼ା ବଦଳାଇ ଦଅ !'

ନବାବ ସାହେବ ଖର୍‌ଖରିଆ ନୂଆ ନୋଟ୍ ନ ହେଲେ ଛୁଅଁନ୍ତି ନାହିଁ । ତାଙ୍କର ସନ୍ଦେହ ହୁଏ, କରାଣୀ ଯେପରି ତାଙ୍କୁ ଗୁଡ଼ାଏ ଛିଣ୍ଡା ମଇଲା କାଗଜ ଧରାଇ ଠକ ଦେଉଚ । ସେ ଦେଖିଚନ୍ତି ମହାରାଣୀ ମାର୍କା ଟଙ୍କା । ଠନ୍ ଠନ୍ ଆଓ୍ୱାଜ କରେ ।

'ସେଇପରି ନୋଟ ଅସୁଛି ଖଜଣାଖାନାରୁ ।'

ବୃଥା ବାକ୍ୟ ବ୍ୟୟ କରି ଲାଭ ନାହିଁ, ଏଇ ଖଜାଞ୍ଚୀ, ମୁନ୍‌ସୀମାନଙ୍କ ସାଙ୍ଗରେ । ଏଇ ଆସୁଛନ୍ତି, ନବାବ ଫିରୋଜ ଅଲ୍ଲୀ ! କନ୍ତୁ ଏ କ'ଣ ତାହାଙ୍କ କାଖତଳେ ତାଙ୍କର ଗୋଟାଏ ଛଡ଼ି ?

'ମିଜାଜ୍ ଶରିଫ···ଓ୍ୱାଲେକମ୍···ସଲାମ୍ ।'

'ସଲମ୍ ଓ୍ୱାଲେକମ୍···ଦେଖୁନାହିଁ କାଖଡଲେ ବର୍ ! ପାହ୍ୱାଚରେ ଗୋଡ଼ ଖସିଗଲ ।'

'ଠିକ୍ ହୋଇଯିବ ! କୁଲ୍ଫୀ ଏକ ପ୍ଲେଟ ହୋ ଯାସ୍ସ !'

'ଅପତ୍ରି କ'ଣ ?'

ଏଇ ଓ୍ୱାସିକାଦାର୍ ନବାବଜାଦାମାନେ ନ ଥିଲେ, ତା'ର କୁଲଫୀ ବେପାରଟା କେତେ ମାନ୍ଦା ପଡ଼ି ନ ଯା'ନ୍ତା, ବେଳେ ବେଳେ ଭାବେ କୁଲଫୀଓ୍ୱାଲା ଅବଦୁଲ ମଲକ; ଲୁଙ୍ଗୀ କାନରେ ମୁହଁ ପୋଛୁ ପୋଛୁ ।

ବୃଦ୍ଧ ମିଆଁ ନବାବ ରସୁଲ ମୀର୍ଜାଙ୍କ ପାଦରୁ ଜୋତା ଫିଟାଇ ଛୁଣ୍ଡା ଚଟି ହଳେ ପୂରାଇ ଦେଲ । ମୁଣ୍ଡରୁ ଟୋପି କାଢ଼ି ପଲଙ୍କ ଉପରେ ଯତ୍ନରେ ରଖିଲେ ନବାବ ସାହେବ । ତା'ପରେ ଶେରଓ୍ୱାନୀଟା ଫିଙ୍ଗିଦେଲେ ପଲଙ୍କ ଉପରେ । ପକେଟ ଉଣ୍ଡାଳି ଦେଖିଲେ, ତଥାପି ବଳିଛି ଦୁଇଟଙ୍କା ଆଉ ସେଇ ସଇତାଳି ନୟା ପଇସା ।

ବୁଢ଼ାର କ'ଣ ଭାଗ ନାହିଁ ଏଇ ଓ୍ୱସିକାରେ ?···ବଣମୁହ ବୃଦ୍ଧ ପ୍ରତି ନବାବ ସାହେବଙ୍କ ମନଟା କୋମଳ ହୋଇ ଉଠିଥିଲ ।

ସେ ଗୋଟାଏ ନୋଟ୍ ଆଉ ସେଇ ନୟା ପଇସାତକ ବୃଦ୍ଧ ମିଆଁର ଶିରାଳ ହାତରେ ଧରାଇ ଦେଇ କହିଲେ···'ଲେ ମିଆଁ ଗୁସ୍ସ ପାନି କରେଗେ ।'

ଏଇ ଟଙ୍କାଏ କେତେ ପଇସାରେ ବୃଦ୍ଧ ମିଆଁ ମହାଖୁସି । କପାଳରେ ହାତ ଛୁଇଁ ସେ କହିଲ···'ହଜୁର୍ ମେହେର୍‌ବାନ୍ !'

ଆଜି କରାମତ୍ ମିଆଁ ସହିତ କୁକୁଡ଼ା ଲଢ଼େଇ । ପ୍ରତି ମାସରେ ଓ୍ୱାସିକା ପାଇବା ଦିନ, କୁକୁଡ଼ା ଲଢ଼େଇ ନବାବ୍ ରସୁଲ ମିର୍ଜାଙ୍କର ଗୋଟାଏ ରୁଟିନ୍ ।

ସେ କହିଲେ···'ଆଜି ମୁର୍‌ଗାବାଜି । ସିରାଜ୍‌କୁ ତିଆର ରଖ ।' ତା'ପରେ କଣ୍ଠସ୍ୱର ନୁଆଇଁ ଷଡ଼ଯନ୍ତ୍ର କରୁଥିବା ପରି କଣ୍ଠରେ ପଚାରିଲେ···'ସିରାଜ ପାଇଁ ଦୁଇ ଛଟୁକ୍ ଘିଅ ଯୋଗାଡ଼ ହୋଇ ପାରନ୍ତା ନାହିଁ ? ଆଜି ଯେତେବେଳେ ଲଢ଼େଇ !'

ନବାବ୍ ରସୁଲ ମୀର୍ଜାଙ୍କ ବହୁ ପିଆର୍‌ର ସେଇ ପେଶାଓ୍ୱାରି ମୁର୍‌ଗା—ସିରାଜ୍ ।

କରାମତ୍ ମିଆଁ ଅଗଣାରେ ହାତେ ଗହ୍ୱରର ଗୋଟାଏ ଗାତ । ତା'ରି ଭିତରେ ହେବ କୁକୁଡ଼ା ଲଢ଼େଇ । ମୀର୍ଜା ସାହେବଙ୍କ ପଛେ ପଛେ ବୃଦ୍ଧ ମିଆଁ କାଖେଇ ଆଣିଚି ସିରାଜ୍‌କୁ । ବୃଦ୍ଧ ମିଆଁ କାଖତଳେ ଡେଣା ଝାଡ଼ି ସିରାଜ କଃ କଃ ହେଉଛି···ଯୁଦ୍ଧଂ ଦେହି ଆହ୍ୱାନ । ବୃଦ୍ଧ ମିଆଁ ତାକୁ ଉଦ୍ଦୀପନା ଦେଉଛି··· 'ଲଡ଼ୋ, ଲଡ଼ୋ ବେଟା !'

କରାମତ୍ ତା'ର ଗଞ୍ଜାକୁ ଗୋଟି ଗୋଟି ଗହମ ଦାନା ଖୁଆଉଥିଲା ଲଢ଼େଇ ପୂର୍ବରୁ । ପିନ୍ଧାରେ ତହମତ୍ (ଲୁଙ୍ଗୀ) ଆଉ ଚକନ୍‌କର କୁର୍ତ୍ତା ।

ମୀର୍ଜା ସାହେବ ଅଗଣାକୁ ଆସି ହୁଙ୍କାର ଦେଲେ···'କରାମତ୍ ମିଆଁ !'

—'ପଧାରସେ ହଜୁର୍ ।'

ଗୁହ୍ଁ ଗୁହ୍ଁ କୁକୁଡ଼ା ଲଢ଼େଇ ଗୁଣପଟେ ଜମିଗଲେଣି ଦେଖଣାହାରୀଙ୍କ ଦଳ, ନାନା ଅବସ୍ଥାର, ନାନା ବୟସର । ଆଗେ ତ ଗୋରା ସାହେବମାନେ ସୁଦ୍ଧା ମାରୁଥିଲେ ମୁରଗାବାଜୀରେ । ଏବେ ସେ ଗୋରାମାନେ ଗଲେଣି; ରେସିଡେନ୍‌ସି ଉଠିବା ଦନୁ ।

କନ୍ତୁ ଏ କ'ଣ ? ନବାବ ସାହେବଙ୍କ ପେଶର୍ଓ୍ୱାଗ୍ଧ ମୁର୍‌ଗା ଢଲେ ହେଲେ ଚକ୍କୁ ନାହିଁ ଯେ ! କରାମତ୍ ମିଆଁର ଗଞ୍ଜା ତାଙ୍କୁ ଇତମଧରେ ଦାରଦର୍ପରେ ଦୁଇଥର ଖୁମ୍ପା ମାଇ ସାଇଲଣି । ବୋଧହୁଏ ତାର ଗୋଟାଏ କଣା ଆଖିରେ ସିରାଜ ଠିକ୍ ଦେଖିପାରୁ ନାହିଁ; କାହାର ଏଇ ଅହେତୁକ ଆସ୍ପର୍ଦ୍ଧା ? କଏ ତା'ର ବେଆଦବ୍ ପ୍ରତଦ୍ୱନ୍ଦ୍ୱୀ, ଯିଏ ବନା କାରଣରେ ତାଙ୍କୁ ଦୁଇ ସ୍ରେଟ ଖୁମ୍ପା ମାଇ ସାଇଲଣି ?

ଏଥର ମୁଣ୍ଡ ବଙ୍କାଇ ଠିକ୍ ଦେଖିପାରୁଛ ତାର ପ୍ରତଦ୍ୱନ୍ଦ୍ୱୀକୁ ।

'ଲଡ଼ୋ ଲଡ଼ୋ ସିରାଜ'··· ବୃଦ୍ଧ ମିଆଁ ବୟସରେ ଅନେକ ବର୍ଷ ପଛେଇ ଯାଇଁ, ଦୁଇ ହାତରେ ତାଳ ପିଟୁଛ, ସିରାଜ୍‌ର ଶିଥିଳ ଧମନୀରେ ଯୁଦ୍ଧର ଉତ୍ତେଜନା ସୃଷ୍ଟି ପାଇଁ ।

ଏକଚକ୍ଷୁ ସିରାଜ୍ ତାର ଇନ୍ଦ୍ରଧନୁରଙ୍ଗୀ ଗଳା ଫୁଲାଇ, ଦୃଷ୍ଟି ହାଣିଲା କରାମତ୍ ମିଆଁର ଗଞ୍ଜା ଉପରେ । ସେଥିରୁ ଝରୁଥିଲା ଯେପରି ନିଆଁର ଫୁଲ୍‌କା । ସିରାଜ ଲମ୍ଫ ଦେଲା କରାମତ୍ ମିଆଁ ଗଞ୍ଜା ଉପରକୁ । ମାତ୍ର କେଇସ୍ରେଟ ଖୁମ୍ପା ଆମ୍ପୁଡ଼ା ପରେ ହଟି ଆସିଲା ପଛକୁ । ତାର ବେକତଳୁ ଧାର ଧାର ହୋଇ ନଗିଡ଼ି ପଡୁଥିଲା କଳା ରକ୍ତଧାର । ନବାବ ସାହେବଙ୍କ ମୁଣ୍ଡକୁ କନ୍ତୁ ରକ୍ତ ଚଢ଼ୁଥିଲା । ଏଇ କରାମତ୍ ମିଆଁର ଗଞ୍ଜା ପୁଣି ହରାଇ ଦେବ ତାଙ୍କ ପେଶର୍ଓ୍ୱାଗ୍ଧ ସିରାଜକୁ ? ସେ ଦୁଇ ହାତରେ ତାଳ ପିଟି ଚଳ୍କାର କରୁଥିଲେ···'ଲଡ଼ୋ, ଲଡ଼ୋ, ବେଟା ସିରାଜ ।'

ସିରାଜ ସେଇ ଗୋଟାଏ ଆଖିରେ ଲକ୍ଷ୍ୟସ୍ଥଳ ସ୍ଥିର କରି ଦୁଇ ସାମ୍‌ନା ପାଦର ନଖଗୁଡ଼ାକୁ ମେଲାଇ ପୁଣି ଲମ୍ଫ ଦେଲା କରାମତ୍ ମିଆଁର ଗଞ୍ଜା ଉପରକୁ ।

ତା'ପରେ ଲଢ଼େଇ ଗାତ ଭିତରେ ଗୁଡ଼ାଏ ରଙ୍ଗୀନ ପର, ତଳ ଉପର ହୋଇ ଉଡ଼ି ବୁଲିଲା, ଘୂର୍ଣ୍ଣି ପରି ।···ସିରାଜ୍‌ର ଏ ଯେପରି ଆଖର୍ ଲଢ଼େଇ ।

ଦେଖଣାହାରୀମାନେ ହଠାତ୍ ଚଳ୍କାର କରି ଉଠିଲେ···'ପାନି । ପାନି ।'

ଏହାର ଅର୍ଥ ଲଢ଼େଇରେ ବର୍ତ୍ତମାନ ବରଣ ପଡ଼ୁ ।

ସିରାଜ୍ ଉପରେ ମାଡ଼ି ବସିଛି କରାମତ୍‌ର ଗଞ୍ଜା । ସିରାଜ୍ ଧକୋଉଛି । ବରଂ କିଛି ସମୟ ବିଶ୍ରାମ ପରେ, ପୁଣି ଆରମ୍ଭ ହେବ ଲଢ଼େଇ । ନୋହିଲେ ଲଢ଼େଇ ବନ୍ଦ୍ ।

ଏହା ହିଁ ରେଓ୍ବାଜ ।

କିନ୍ତୁ କରାମତ୍ ସେଥିପାଇଁ ପ୍ରସ୍ତୁତ ନ ଥିଲା । ସେ ପାଗଲ ପରି ଚିତ୍କାର କରୁଥିଲା···'ମାରୋ ! ମାରୋ !'

ଅନ୍ୟ ଅକ୍ଷତ ଆଖିଟିର ଡୋଳା ଲେଉଟାଇ ସିରାଜ ସେତେବେଳକୁ ଖତମ୍ ହୋଇ ସାରିଥିଲା ।

'ଏ କିନ୍ତୁ ଠିକ୍ କଲ ନାହିଁ କରାମତ୍ ମିଆଁ ! ପାନି ପାନି ଡାକିଲେ, ତମର ବନ୍ଦ କରିବା ଉଚିତ ଥିଲା ।'

'ଏ ଠିକ୍ ଲଢ଼େଇ ହେଲା ନାହିଁ କରାମତ୍ ମିଆଁ ! ଇଏ ରେଓ୍ବାଜ୍ ନୁହେଁ ।'

···ବହୁ କଣ୍ଠରେ ଏକ ପ୍ରତିବାଦ ।

ରେଓ୍ବାଜ ହେଉ ବା ନ ହେଉ । ମୁର୍‌ଗାବାଜୀରେ ଆଜି ତାର କୁକୁଡ଼ା ବିଜୟୀ । ବଜାର୍‌ରେ ଏ ମୁର୍‌ଗାର ଦାମ ଏହା ପରେ ନିଶ୍ଚୟ ବଢ଼ିବ । ମୁର୍‌ଗା-ବାଜ୍‌ମାନେ ପଚାଶ ବଦଳରେ ପଚିଶ ଟଙ୍କା ଦେଇ ତାର ମୁର୍‌ଗାକୁ ଖରିଦ କରିବା ପାଇଁ କୁଣ୍ଠିତ ହେବେ ନାହିଁ ନିଶ୍ଚୟ । କରାମତ୍‌ର ମୁହଁରେ ସଫଳତାର ହସ ।

ବୁଦ୍ଧୁମିଆଁ ନୁହେଁ ଖୋଦ୍ ମୀର୍ଜା ସାହେବ ନୀରବରେ, ନିଃଶବ୍ଦରେ ସିରାଜ୍‌କୁ ତଳୁ ଉଠାଇ ଧରି ଫେରି ଆସିଲେ ଘରକୁ ! ବୁଦ୍ଧୁ ମିଆଁର କଣ୍ଠରେ ସାନ୍ତ୍ୱନା ଦେବା ପାଇଁ ସୁଦ୍ଧା ଭାଷା ନାହିଁ । ସେମାନଙ୍କ ପଛେ ପଛେ ନବାବ ସାହେବଙ୍କ ସଦର ଦରଜା ପର୍ଯ୍ୟନ୍ତ ଆସିଲେ କେତେଜଣ ପଡ଼ୋଶୀ । ସମସ୍ତଙ୍କ ମୁହଁରେ କିନ୍ତୁ ସେଇ ଏକ କଥା······ଏଟା ଠିକ୍ କଲା ନାହିଁ କରାମତ୍ । ଇଏ ତ ମୁର୍‌ଗାବାଜୀର ରେଓ୍ବାଜ ନୁହେଁ ।

ଅଗଣାର ନିମ୍ବଗଛ ଚୂଡ଼ାରେ, ଶେଷ ଅପରାହ୍ଣର ମେଞ୍ଚାଏ ନାଲିଆ ଆଲୁଅ । ବଡ଼ ବିଷଣ୍ଣ । ବଡ଼ କରୁଣ । ଭିତରକୁ ଯିବା ପାଇଁ ନବାବ୍ ମୀର୍ଜାଙ୍କର ମନ ଡାକୁ ନ ଥିଲା ।

ସେ ପାଖ ମସ୍‌ଜିଦ୍ ଆଡ଼େ ଚାଲିଗଲେ, ସନ୍ଧ୍ୟା ନମାଜ୍ ପାଇଁ । ନବାବ ମୀର୍ଜାଙ୍କ ମନଟା ବଡ଼ ଉଦାସ ।

ସନ୍ଧ୍ୟାର ଅନେକ କ୍ଷଣ ପରେ, ନିଃଶବ୍ଦରେ ଗ୍ରସ୍ତ ପରି ଘର ଅଗଣା ଭିତରକୁ ପଶିଲେ ନବାବ ରସୁଲ ମିର୍ଜା । ଆଜି ସେ ପ୍ରକୃତରେ ପରାଜିତ । ଓ୍ୱାରେନ୍ ହେଷ୍ଟିଙ୍ଗ୍ସ ହାତରେ ପରାସ୍ତ ହୋଇ ଅବଧ୍‌ର କୌଣସି ନବାବ କେବେ ହୁଏତ ପରାଜୟର ଏପରି ଗ୍ଲାନି ଅନୁଭବ କରି ନ ଥିବେ !

ନବାବ ରସୁଲ୍ ମିର୍ଜା ଅଗଣାରେ ଗୋଟାଏ ତେଲ୍ ଚିକିଟା ଆରାମ୍‌ଚୌକି ଉପରେ ଦେହ ଢାଳି ଡାକଲେ···'ବୁନ୍ଦୁ ମିଆଁ ।'

ବୁନ୍ଦୁ ମିଆଁ ଆଜି କାଲୁ ପୁତ୍ରଶୋକରେ ମୁହ୍ୟମାନ ପରି ଗୋଟାଏ ଘର୍‌ପାଇ ଉପରେ କୁଣ୍ଡଳୀ ମୋଡ଼ି ପଡ଼ିଛି···ମମ୍‌ତାଜ୍ କେତେଥର ଡାକି ଗଲଣି । ତଥାପି ତାର ସାଡ଼ାଶବ୍ଦ ନାହିଁ ।

'ବୁନ୍ଦୁ ମିଆଁ···ହୁକା ।'

ହୁକା ଫୁଙ୍କି ଫୁଙ୍କି ଆଣିଲା କାଲୁ ବନ୍ଦୁ ମମତାଜ୍ । ହୁକାର ରଡ଼ ନିଆଁରେ ତା'ର କପାଳର ଗୋଟିଏ ଅଂଶ ଦେଖାଯାଉଛି ଇନ୍ଦ୍‌ର ଗ୍ରହ୍ ପରି । ରୋଷା ଘରୁ ଝାସି ଆସୁଛି ମାଂସର ବାସନା । ବୁନ୍ଦୁ ମିଆଁ ଯେ ଲୁଚାଇ ଲୁଚାଇ ସିରାଜକୁ ଗୁଆଘିଅ ପିଆଏ; ସେଥିପାଇଁ ଆଉ ଶୋଚନା ନାହିଁ ମମତାଜ୍‌ର । ସିରାଜ୍‌ର ମାଂସରେ ଘିଅର ଖୁସ୍‌ବୁ ରୋଷ୍ଟଟା ଭଲ ଉତୁରିବ ନିଶ୍ଚୟ । ମାଂସରେ ଗୁଆ ଘିଅର ଖୁସ୍‌ବୁ !

ଓ୍ୱାସିକା ମିଳିବା ଦିନ ନବାବ ରସୁଲ୍ ମିର୍ଜାଙ୍କ ପରିବାରରେ ହୁଏ ଗୋଟାଏ ଗ୍ରେଟକାଟର ପାରିବାରିକ ଭୋଜି । ସିରାଜ୍ ଆଜି ସେଥିପାଇଁ ଯୋଗାଉଛି ଲୋଭନୀୟ ଉପାଦାନ ।

ମମତାଜ୍ କହିଲା ···'ଅବ୍‌ବାଜାନ୍ !'

ନବାବ ସାହେବ ନୀରବ ।

'ଆଜି ମୁର୍ଗାରୋଷ୍ଟ କରୁଛି । ଆପଣ ପସନ୍ଦ କରିବେ ରୁମାଲି ରୋଟୀ ନା ପରୋଟା ?'

ସିରାଜର ମୃତ୍ୟୁରେ ମମ୍‌ତାଜ୍ ଆଜି ଯେପରି ଉତ୍ସବମୟୀ······ଗୋଟାଏ ଜଞ୍ଜାଳ ଗଲା ।

ନବାବ ମିର୍ଜା ହୁକାନଳୀଟା ଉଠାଇ ଧରି କହିଲେ···'ନା, ବନ୍ଦୁ, ମୋତେ ବୋଖାର୍, ଡାକ୍ତର ଜବର ମିଆଁ ପାଖରେ ଦେଖାଇ ଆସିଲି, ୧୦୨ ଡିଗ୍ରୀ । ରାତିଟା ଓପାସ ରହିଲେ ସକାଳକୁ ଦେହ ତାଜା ହୋଇଯିବ ।'

ମମ୍‌ତାଜ ଚାଲି ଯାଉଥିଲା ।

ପଛରୁ ପୁଣି ଡାକଲେ ନବାବ ମିର୍ଜା ।

'ନୁରୁଲ୍ ମୀର୍ଜା ଫେରିଲେଣି ?'

'ନା···କିଣ କିଛି ଖାସ୍ କଥା ଅଛି ?'

'ଓ୍ବାଯିକା ସରକାରକୁ ବନ୍ଦୀ କରିଦେବ ମୁଁ । କାଲି ଯେପରି ଦରଖାସ୍ତ ପେଶ୍ ହୁଏ, ମାଜିଷ୍ଟ୍ରେଟ ପାଖରେ ।'

'ଓ୍ବାଯିକା ବନ୍ଦୀ କରିଦେବ ?' ···ବିଶ୍ୱାସ କରି ପାରୁ ନ ଥିଲା ମମ୍‌ତାଜ୍ । ଏଇ ଓ୍ବାଯିକା ବନ୍ଦୀ ଯେନ, ଘରେ ଏତେ କଥା କଟାକଟି । ଏତେ କନ୍ଦଳ । 'ହଁ ବନ୍ଧୁ, ଦିନକାଳ ବଦଳି ଗଲାଣି ।···ଓ୍ବାଯିକାର ବା କି ଦାମ୍ ଅଛି ଆଜି ?' ଗୋଟାଏ ଦିନରେ ଏପରି ଦୁଇଟା ଶୁଭ ସମ୍ବାଦ ଆଶା କରି ନ ଥିଲା ମମତାଜ୍ । ସେ ଚାଲିଗଲା ଚଞ୍ଚଳ ପାଦରେ···ରୋଷେଇଟା ବେଶି ସିଝିଗଲେ ମୁସ୍କିଲ । ହୁକାରେ ସ୍ୱାଦ ନ ଥିଲା । ଏ ହୁକାକୁ ବୁଦ୍ଧୁ ମିଆଁ ତିଆରି କରି ନାହିଁ ନିଶ୍ଚୟ ! 'ବୁଦ୍ଧୁ । ଓ ବୁଦ୍ଧୁ !'

ନଇଁ ନଇଁ ବୁଦ୍ଧୁ ଆସି ବସିଲା ନବାବ ରସୁଲ ମୀର୍ଜାଙ୍କ ପାଦ ପାଖରେ । ଦୁହେଁ ନୀରବ । କିଏ କିପରି କଥା ଆରମ୍ଭ କରିବେ ବୁଝିପାରୁ ନ ଥିଲେ । 'ଦିନକାଳ ବଦଳି ଗଲାଣି, ନା ବୁଦ୍ଧୁ ? ···ବୁଦ୍ଧୁଠାରୁ ନବାବ ମୀର୍ଜା ଯେପରି ଖୋଜୁଥିଲେ ଆଶ୍ୱାସନା ।

'ଦିନକାଳ ବଦଳି ନାହିଁ ହଜୁର୍ ! ବଦଳିଛି ଇନ୍‌ସାନ । ନଇଲେ କରିମତ୍ ମିଆଁ······'

ଅସମାପ୍ତ ରହିଗଲା ବୁଦ୍ଧୁର କଥା । କିନ୍ତୁ ତାହା ବୁଝିବାରେ ନବାବ ମୀର୍ଜାଙ୍କର କୌଣସି ଅସୁବିଧା ରହିଲା ନାହିଁ । *



* ଲକ୍ଷ୍ନୌର ପେନସନ୍‌ଧାରୀ ନବାବ-ପରିବାରମାନଙ୍କର ସାମ୍ପ୍ରତିକ ପରିସ୍ଥିତିର ପୃଷ୍ଠଭୂମିରେ ଏହି ଗଳ୍ପଟି ଲିଖିତ, ମାତ୍ର ଏଥିରେ କୌଣସି ଜୀବିତ ବା ମୃତ-ବ୍ୟକ୍ତିଙ୍କ ପ୍ରତି କୌଣସି ଇଙ୍ଗିତ କେହି ଯେପରି ଲକ୍ଷ୍ୟ ନ କରନ୍ତି । —ଲେଖକ

# ଓଃ ! କାଲକାଟା !!

"...We need set about complete destruction, but not in word : in deeds. Everything you have boorowed from others will go up in smoke. What remains will be essential to you. Do you agree ?"

**Jean-Paul Sartre** (*"Troubled Sleep"*)

—'ଗ୍ଲୁରୁ ! ଷ୍ଟପ୍ ! ଲଙ୍କ୍ ଏକାଥରେ—!'

ରାସ୍ତା କଡ଼ର ନସ୍ତେଲା ରେସ୍ତୁରାଁ ଭିତରେ ବସିଥିବା ସେଇ ତିନି ଜଣଙ୍କ ମଧ୍ୟରୁ ଗାଲମୁଚ୍ଛ କଳାଟା ଯାହାର ସବୁଠାରୁ ଲମ୍ବା, ଅଳ୍ପ ପୂର୍ବେ କଲେଜ ଅଡ଼େ ଏକାକିନୀ ଯାଉଥିବା ସେଇ ହିପିଟି ଆଡ଼େ ଚାହିଁ, ସେ ଚିତ୍କାର କରି ଉଠିଥିଲା, ପାତାଳପୁରୀର ସାନ୍ଧ୍ୟ ଭାଷାରେ···

'ଗ୍ଲୁରୁ ! ଷ୍ଟପ୍ ! ଲଙ୍କ୍ ଏକାଥରେ !'

ରେସ୍ତୁରାଁ ଆଡେ ଶଙ୍କିତ ଦୃଷ୍ଟିରେ ଚାହିଁ, ହିପିଟି ପାଦର ଗତି ଚଞ୍ଚଳ କରି ଦେଇଥିଲା ।

ମସ୍ତାନ୍ ଏମାନେ ! ଏମାନଙ୍କ ସମ୍ପର୍କରେ ଅନେକ ଭୟଙ୍କର କଥା ସେଇ ହିପିଟି ଶୁଣିଛି, ଖବର କାଗଜରେ ମଧ୍ୟ ପଢ଼ିଛି । ଖବର କାଗଜରେ ଆଜିକାଲି ଏଇ ସବୁ ତ ସମ୍ବାଦ ! ଏକମାତ୍ର ସମ୍ବାଦ !

ହାତକଟା ବ୍ଲାଉଜ୍ ଭିତରୁ ଦୁଇଟା ଅନାବୃତ ବାହୁ, ନାଭିଠାରୁ ସ୍ତନମୂଳ ପର୍ଯ୍ୟନ୍ତ ଅଧିଏ ଉଲଙ୍ଗ ଦେହ, ପ୍ରବଳ ଉତ୍ତେଜନାରେ ସୁକାନ୍ତର ସ୍ତିମିତ ସ୍ନାୟୁକେନ୍ଦ୍ରଗୁଡ଼ାକ ଚମକାଇ ଦେଇଥିଲା । ଜୀବନର ଛନ୍ଦ ଆଜି ଏପରି ସ୍ତିମିତ, ତାକୁ ତାଉ ଦେଇ ଉଠାଇବା ପାଇଁ ହେଲେ ଦରକାର ସେକ୍ସ ଆଉ ବିପ୍ଲବ !! କିନ୍ତୁ ଏ ରିଆକ୍ସନାଷ୍ଟ, କ୍ଲାସ୍-ଏନିମିର୍ ଦଳ, ଏ ଦୁଇଟାଯାକ ପ୍ରତି ଆଜି ଖଡ୍ଗହସ୍ତ ।

ହିପିଟି ଉଦ୍ଦେଶ୍ୟରେ ସୁକାନ୍ତ ଗୋଟାଏ ତାତ୍ପର୍ଯ୍ୟପୂର୍ଣ୍ଣ ହୁଇସିଲ୍ ଦେଲା । ଏପରି ହୁଇସିଲ୍‌କୁ ଗୁରୁ କହେ ଜଙ୍ଗଲରେ ଜାନୁଆର୍‌ମାନଙ୍କର 'ମେଟିଙ୍ଗ୍ କଲ୍' ।

କନ୍ଧୁ ମଣିଷ ଆଉ ଜାନୁଆର୍ ମାନଙ୍କ ଭିତରେ ଆଜି ତଫାତ୍‌ଟା ବା କେତେ ? ସବୁ ମହାନଗରୀ ତ ଆଜି ଆଦିମ ମହାରଣ୍ୟ !

ଘୁରୁ ଦୁଇ ଆଖିରେ କଳା ଗଗଲ୍‌ସ ଆଣ୍ଟି ଗୋଟାଏ ଛୁରୀରେ ନଖ କାଟୁଥିଲା ଗମ୍ଭୀର ଭାବରେ । ଏଇ ନିଶ୍ଚୟ ଗୋଟାଏ ଝଡ଼ର ପୂର୍ବ-ସୂଚନା ! ଘୁରୁ ଛୁରୀଟାକୁ ବନ୍ଦ କରି ପକେଟ ଭିତରେ ରଖି ସାମନା ରାସ୍ତା ଆଡ଼େ ଚାହିଁଲା । ହୁଏତ ନ ଚାହିଁ ବି ପାରିଥାଏ । ଗଗଲ୍‌ସ ଭିତରୁ ଘୁରୁ କେତେବେଳେ କୁଆଡ଼େ ଯେ ଚାହେଁ, ସିଏ ଗୋଟାଏ ମିଷ୍ଟ୍ରି । ରାସ୍ତା ସେପଟେ ପୋଷ୍ଟର ଓ ସ୍ଲୋଗାନ ମୁଦ୍ରିତ ପାଚେରୀ କଡ଼ରେ ଗୋଟାଏ ଧୂଳିଧୂସରିତ ଗଛ ମୂଳେ, ଡଷ୍ଟବିନ ଦେହରେ ନୂଆ ଲଗାଯାଇଥିବା ଗୋଟାଏ ପୋଷ୍ଟର ଘୋଷଣା କରୁଥିଲା···'ଦେଶ ଗୌରବ କଲେଜ ହଲ୍‌ରେ ସାଂସ୍କୃତିକ ଉତ୍ସବ । କେତେଟା କୁଆ ସେଇ ଡଷ୍ଟବିନ୍ ଭିତରୁ ଖୁମ୍ପା ଖୁମ୍ପି କରି ଉଚ୍ଛିଷ୍ଟ ସନ୍ଧାନ କରୁଥିଲେ । ଗୋଟିଏ ମାଟିଆ ଚଲ ଡଷ୍ଟବିନ୍ ଉପରକୁ ଉଡ଼ି ଆସିବାରୁ କୁଆଗୁଡ଼ା ଗଛ ଡାଳ ଉପରକୁ ଉଡ଼ିଗଲେ । ବସ୍ତିର ଗୋଟାଏ ବୁଲା କୁକୁର କୁଆଡ଼ୁ ଶୁଙ୍ଘି ଶୁଙ୍ଘି ଆସି ସେଇ ଡଷ୍ଟବିନ ଉପରକୁ ପଛ ଗୋଡ଼ ଟେକି ପରିସ୍ରା କରିଦେଲା ।

ଭବତୋଷ ଦାସର କାଣ୍ଡ ଏଇଟା ; କଲେଜ ୟୁନିଅନର ନିର୍ବାଚନରେ ଜିତିମାତ୍ର ପାଇଁ । ସାମାନ୍ୟ ଭାଷଣ ପରେ ସଂସ୍କୃତି···ଅର୍ଥାତ୍ ନୃତ୍ୟ ଓ ସଙ୍ଗୀତର ସୁପ୍ରଚୁର ବ୍ୟବସ୍ଥା । ପପ୍ ସଙ୍ଗୀତ ଆଉ ଟୁଇଷ୍ଟ । ମନ୍ତ୍ରୀ ଆସିବେ ଉଦ୍‌ବୋଧନ ଦେବା ପାଇଁ । ଘୁରୁ ଦାନ୍ତରେ ଦାନ୍ତ ଚପି କଡ଼ମଡ଼ କରି ଉଠିଲା, '···ଶିଆକସନାଗୀ ! ଏଷ୍ଟାବ୍ଲିସମେଣ୍ଟର କୁତ୍ତା !'

ଘୁରୁ ସ୍ୱଗତୋକ୍ତି କରିବା ପରି ମନକୁ ମନ କହିଲା···'ଆ···କେତେ ନିର୍ଶ୍ଚିନ୍ତ ନିରୁଦ୍‌ବିଗ୍ନ ଏମାନେ ! ଭୂମିକମ୍ପର କେନ୍ଦ୍ରବିନ୍ଦୁ ଉପରେ ବସି ସୁଦ୍ଧା ପପ୍ ଆଉ ଟୁଇଷ୍ଟ ପାଇଁ ଏମାନଙ୍କର ସମୟର ଅଭାବ ନାହିଁ !'

ଘୁରୁ ଅକାରଣରେ ପକେଟରୁ ପୁଣି ଛୁରୀଟାକୁ କାଢ଼ି ଆଣିଲା । ଘୁରୁ ନିଶ୍ଚୟ ଗୋଟିଏ ନୂଆ ପ୍ଲାନରେ ଅଛୁ ।

ସ୍ଥାନ—ସହରର ଗୋଟାଏ ଅନ୍ଧଗଳି । ରେସ୍ତୁରାଁର ନାମ 'ସୁଜଳା' । ଏଠାର କଫି ଆଉ ଚା' ସେଥିପାଇଁ ବୋଧହୁଏ ପାଣିଚିଆ ! ଗଳିଟା ଯେଉଁଠି ବଡ଼ ରାସ୍ତାରେ ମିଶିଛି, ସେଠି ଦେଶଗୌରବ କଲେଜ । କଲେଜ ୟୁନିଅନରୁ ଏଥର ଭବତୋଷକୁ ହଟାଇବା ପାଇଁ ପଡ଼ିବ ନିଶ୍ଚୟ ! ବାଇ ହୁକ ଅର୍ ବାଇ କ୍ରୁକ୍ । ଘୁରୁ ଆଖିରୁ କଳା ଗଗଲସଟା କାଢ଼ି ତା'ର ସାମ୍ରାଜ୍ୟ, ସୁଜଳା ରେସ୍ତୁରାଁ ଭିତରେ ଚାରିଆଡ଼କୁ ଚାହିଁଲା । ଘୁରୁ ଆଖିରେ କଳା ଗଗଲ୍‌ସ ପିନ୍ଧିଲେ ସିନା ଏପରି ମିଷ୍ଟେରିଅସ ଦିଶେ, ନୋହିଲେ ତା'ର ଆଖି ଦୁଇଟା ବାସ୍ତବିକ ବଡ଼ କରୁଣ ।

ଏଇ ସୁଜଲା ରେସ୍ତୁରାଁ ସେମାନଙ୍କର 'ପିଚୁଲସ୍ ଶପବ୍ଲକ୍ !' କଲେଜକୁ ଛାତ୍ରୀମାନଙ୍କର ଯିବା ଆସିବା ବେଳର ପଟୁଆର, ସେମାନେ ଏଇଠାରେ ବସି ଲକ୍ଷ୍ୟ କରନ୍ତି, ଟିପ୍ପଣୀ କାଟନ୍ତି, ଅଶ୍ଳୀଳ ଇଙ୍ଗିତ ଦଅନ୍ତି···ତା'ଶ ଭିତରେ ମଧ୍ୟ ଆଲୋଚନା କରନ୍ତି, ଶଭଲ୍ୟୁସନ୍, କାଉଣ୍ଟର ଶଭଲ୍ୟୁସନ୍, ଲେଫଟ୍ ଶଭଜନକନମ୍, ଚ-ଗୁଭେରା ଆଉ ଭିଏତନାମ୍ !

ଏକ ମୃତ୍ୟୁମୁଖୀ ମହାନଗରୀର ଶେଷ ଅଣଆଣ ଏମାନେ ! ସେଥିପାଇଁ ବୋଧହୁଏ ଅପ୍ରତିରୋଧ୍ୟ । ନିଷ୍ଠୁର । ଭୟଙ୍କର । ଅନୁଶାସନମୁକ୍ତ ସମାଜର ବଲ୍ଗା-ମୁକ୍ତ ଅଶ୍ୱ । କର୍ତ୍ତବ୍ୟ, ଅକର୍ତ୍ତବ୍ୟର ବନ୍ଧନ ଛିଣ୍ଡି ଛି । କର୍ମ ଅପକର୍ମର ନିୟନ୍ତ୍ରଣ ନାହିଁ । ନୀତିବାଗୀଶମାନଙ୍କର ଶଠତା ବିରୁଦ୍ଧରେ ବିଦ୍ରୋହର ପତାକା ଉଡ଼ାଇ ଏମାନେ ଚାଲିଛନ୍ତି ନୂତନ ନୀତିବାଦର ଆଲୋକିତ ନବଦିଗନ୍ତ ପଥରେ ନୁହେଁ; କିନ୍ତୁ ପୁରାତନ ନୀତିହୀନତାର ସେଇ ଅନ୍ଧ ଗଳି ଆଡ଼େ ।

ଗୁରୁ ଦଳରେ ଏବେ କଞ୍ଚାବୟସର ସେଇ ଯେଉଁ ନୂଆ ଜଣେ ମିଶିଥିଲା-ସୁକାନ୍ତର ସାନ୍ଧ୍ୟଭାଷା ସହିତ ସେ ଥିଲା ଅପରିଚିତ । ନିରୀହ କଣ୍ଠରେ ସେ ପଚାରିଲା ···'ଲିଚ୍ଛ୍ କ ବସ୍ତୁ ?' ଡବଲ୍ ସେଞ୍ଚୁରିର ଅର୍ଥ ସେଦିନ ତ ସେ ଅନେକ ବିଳମ୍ବରେ ବୁଝିଥିଲା—ହାତବୋମା !

ଗୁରୁ ଆଜ୍ଞବ୍ ଏ ଲଚକ୍କୁ (ଲଚକ୍କା କମଣଆଁ ପରି ଯିଏ ସୁକୁମାର, ମାନେ ଡେଲିକେଟ୍ ଛିଅ, ଛିଅ, ପଗ ! ଏଇ ପାତାଳପୁରୀର ପରିଭାଷାରେ) କୁଆଡୁ ଆଣି ଜୁଟେଇଛି କେଜାଣି ? ଅପଦାର୍ଥ ଏଟା ! ସେ ଦିନ ଅସଲ୍ ବକ୍ତରେ ; ଗୁରୁ କହିଲା ଦୁଇଟା ଡବଲ୍ ସେଞ୍ଚୁରି ଆଣିବା ପାଇଁ । ଏ ମୂର୍ଖ ସତକୁ ସତ ପାଉଁରୁଟି ଦୋକାନରୁ ନେଇ ଆସିଲା, ଦୁଇଟା ପାଉଁରୁଟି !

ଉବଟୋଷର ଦଳ ସହିତ ଲଢ଼େଇଟା ସେତେବେଳେ ଘମାଘୋଟ ବାଧି ଆସୁଥିଲା, ପାର୍କ ବାଟ ଦେଇ ସେଇ ପଟୁଆରଟା ଯିବାବେଳେ । ଉବଟୋଷର ଗ୍ୟାଙ୍ଗ୍ ଫିଙ୍ଗୁଥିଲେ ସୋଡ଼ା ବୋତଲ । ତା'ର ବଦ୍‌ଲା ନେବା ପାଇଁ ଗୁରୁର ସେତେ-ବେଳେ ଦରକାର ଥିଲା ଡବଲ୍ ସେଞ୍ଚୁରି ! ସେତିକବେଳେ ଏ ଲଚକ୍ ଆସି ପହଞ୍ଚି-ଗଲା ସତକୁ ସତ ଦୁଇଟା ପାଉଁରୁଟି ଧରି !

ଗୁରୁ ସେତେବେଳେ ରାଗରେ ଲଚକ୍କୁ ଖୁନ କରେ କି ନ କରେ । ଗୁରୁ ଏଥର ଛୁରୀଟା ନିଶ୍ଚୟ ଭୁଷିଦେବ ଲଚକ୍‌ର ତଳପେଟରେ । ସେଥର ଦିନା ଗୁରୁ ଛାଡ଼ିଦେଇଥିଲେ, ଦୟାରେ ! (ନା ମାୟାରେ ?) ଗୁରୁ କିନ୍ତୁ ଆଜି ନିଷ୍କରୁଣ । ଗୁରୁର ମସ୍ତାନ ଜୀବନରେ ଆଉ କେବେ ଏପରି ଦୟନୀୟ ପରାଜୟ ଘଟି ନ ଥିଲା । ଗୁରୁ ବାଁ ହାତ ପାପୁଲିରେ କପାଳରୁ ରକ୍ତ ପୋଛୁ, ସେଇ ପାଉଁରୁଟି ଓ ଲଚକ୍‌ର ନିର୍ବୋଧ ଆଖି ଦୁଇଟା ଭିତରକୁ ଚାହିଁ ଚିତ୍କାର କରି ଉଠିଲା···ଇଡିୟଟ ! ଗୁରୁ କିନ୍ତୁ ଲଚକ୍‌ର

ତଳି ପେଟରେ ଛୁରୀ ଭୁଷିଦେଲା ନାହିଁ । ତା'ର ଓଠରେ ଫୁଟିଉଠିଲା ଗୋଟିଏ ବିଷଣ୍ଣ ମଳିନ ହସ ! ବଦଳ ନେବାର ଗୋଟାଏ ଭୟଙ୍କର ନିଷ୍ଠୁର ମୁହୂର୍ତ୍ତରେ ଝୁଲୁ ସେପରି ହସିବାର ଅର୍ଥ ସୁକାନ୍ତ କିନ୍ତୁ ଆଦୌ ବୁଝିପାରି ନଥିଲା । ସେଇଟା କ'ଣ ହସିବାର ବେଳ ? ପୁଣି ଲିଚକ୍‌ର ଏପରି ନିର୍ବୋଧତାରେ ?…ସୁକାନ୍ତ ଆଜି ପର୍ଯ୍ୟନ୍ତ ସୁଦ୍ଧା ବୁଝିପାରିଲା ନାହିଁ ସେଇ ହସର ଅର୍ଥ । ଝୁଲୁ ସବୁବେଳେ ଏଇପରି ମିଷ୍ଟିରିଅସ !!!

ସେଇଦିନୁ କିନ୍ତୁ ଝୁଲୁ ଗୋଷ୍ଠୀର ପରିକଳ୍ପନା ସହିତ ପରିଚିତ ହେବା ପାଇଁ ଲିଚକ୍‌ର ଉଦ୍ୟମର ଅନ୍ତ ନ ଥିଲା । ସେଇ ଏବେ ପଚାରୁଥିଲା…ଲିଛୁ କ'ଣ ? କି ବସ୍ତୁ ?

ସୁକାନ୍ତ ଉତ୍ତର ଦେଲା…'ଷ୍ଟମ୍ବରସ୍ ଦେଖିବେ ଇଉଅଛ ! ହ୍ୟାପଃ ! ଲିଛୁ ମାନେ ଟପ୍ ! ଦେଖିଲୁ ନାହିଁ କିପରି ହାଇହିଲ ଉପରେ, ଲିଛୁ ପରି ଘୁରାଇ ଘୁରାଇ ନିତମ୍ବ ନଚାଇ ନଚାଇ ଚାଲିଗଲା ସେ ! କୁଆଡୁ ଯୋଗାଡ଼ କଲୁ ଏଇ ଜଙ୍ଗଲୀକୁ ଝୁଲୁ ? କିନ୍ତୁ ଆମ ଡିଭିଜନରେ ଏକାଥରେ ଅଚଳ । ଆମକୁ ଦରକାର ଫରଜାଖୁସ୍ ହାଲୁଆ !'

ଝୁଲୁ ସେତେବେଳେ ଉଷ୍ମବିନ ଦେହରେ ସେଇ ପୋଷ୍ଟରକୁ ଲଗାଇ ମନେ ମନେ ଝସଡ଼ା କରୁଥିଲା, ଦେଶଗୌରବ କଲେଜ ହଲ୍‌ର ସାଂସ୍କୃତିକ ଉତ୍ସବରେ ଦକ୍ଷଯଜ୍ଞ ଭଙ୍ଗର ଯୋଜନା । ସଂସ୍କୃତି ନାମରେ ପ୍ରତି ବିପ୍ଳବର ଏଇ ସବୁ ଆୟୋଜନ ପ୍ରତି ଝୁଲୁର ଅହେତୁକ କ୍ରୋଧ । ସହଜେ ପୁଣି ଭବତୋଷର ଗ୍ୟାଙ୍ଗ ଏହାର ଉଦ୍ୟୋକ୍ତା । ଇଲେକଟ୍ରିକ ଫିଉଜ ଉଡ଼ାଇ ଗୋଟାଏ ଦୁଇଟା ଡବଲରୋଷ୍ଟି ଛାଡ଼ିଦେଲେ ସଂସ୍କୃତି ଖତମ !!! ସଂସ୍କୃତି ନାମରେ ଯେଉଁମାନେ ଶତଜିହ୍ୱ—ଝୁଲୁ ଜାଣେ ତାହାକୁ ରକ୍ଷା କରିବା ପାଇଁ ସେମାନଙ୍କର କଲିଜା କେତେ ! ଏସବୁ ହୁଜୁଗ୍‌ରେ ଅବଶ୍ୟ କୌଣସି ଯୁକ୍ତି ନାହିଁ । କାର୍ଯ୍ୟକାରଣରେ ସମ୍ପର୍କ ନାହିଁ । ତଥାପି ଏଇ ହିଂସ୍ରତା ଆଉ ଧ୍ୱଂସ ମଧ୍ୟରେ ଅଛି ଯେପରି ଆଜିର ଶୂନ୍ୟଗର୍ଭ, ବ୍ୟର୍ଥ, ବଞ୍ଚିତ ଜୀବନରେ ବଞ୍ଚିବାର ଏକମାତ୍ର ଚରିତାର୍ଥତା । ନୋହିଲେ ସମସ୍ତେ ତ ଆଜି ଏଷ୍ଟାବ୍ଲିସ୍‌ମେଣ୍ଟର ଚେନ୍ ବନ୍ଧା କୁକୁର ! ଚେନ୍‌ରେ ବନ୍ଧା ରହି ଖୁବ ଭୁକ୍ ଭୁକ୍ କରିପାରନ୍ତି ସେମାନେ, ସେଇ ଟେବୁଲ ଉପରୁ ଆହରି ରୁଟି ଟୁକୁରା, ଆଉରି ଅଇଁଠା ହାଡ଼ ପାଇଁ ! କିନ୍ତୁ ଚେନ୍ ଛିଣ୍ଡାଇବା ପାଇଁ ସେମାନେ କେହି ପ୍ରସ୍ତୁତ ନୁହନ୍ତି । ଚେନ ଏକାଥରେ ଛିଡ଼ାଇ ଦେଲେ ଏଷ୍ଟାବ୍ଲିସମେଣ୍ଟର ଟେବୁଲ ଉପରୁ ସେଇ ରୁଟି ଟୁକୁରା ସୁଦ୍ଧା ମିଳିବ ନାହିଁ ଯେ ! ଅଥଚ ବିପ୍ଳବ ନାମରେ ସେମାନଙ୍କର କେତେ ଅନର୍ଗଳ ଭାଷଣ ! କେତେ ଜ୍ୱାଳାମୟୀ କବିତା ! ଭବତୋଷ ପୁଣି ଗୋଟାଏ ପୋଏଟ୍ ! ଶାଳା, ଥିଲା ପୋଏଟ୍ରୀ ଆଜି ଡବଲରୋଷ୍ଟି ।

ଝୁଲୁର ଏ ସବୁ ତାତ୍ତ୍ୱିକ ଚିନ୍ତାରେ ସୁକାନ୍ତର ପ୍ରଗଲ୍‌ଭତା ବାଧା ସୃଷ୍ଟି କରୁଥିଲା । ସେ ଚିତ୍କାର କରି ଉଠିଲା…ମାଫି ମାଗ ତାକୁ ସୁଇଟ୍‌କା ! ନୋହିଲେ

ଏକା ଲଥିରେ ତୋ ପିଟ୍ ଛିଲ କରିଦେବ ! ସେ କ'ଣ ତୋ ପରି ପରୀକ୍ଷାରେ କପି କରି କରି ରଷ୍ଟିକେଟେଡ଼ ହୋଇଥିବା ଆଣ୍ଟି-ସୋସିଆଲ ତାଲିକାରେ ଦାଗୀ, ଖୁନୀ ? ବିଶ୍ୱବିଦ୍ୟାଳୟର ଗୋଟାଏ ଦୁଇଟା ଡିଗ୍ରୀ, ଏବେ ବି ସେ ସାଇତି ରଖିଥିବ; ଏଷ୍ଟାବ୍ଲିସମେଣ୍ଟ ଭିତରକୁ ତା'ର ପ୍ରବେଶପତ୍ର ପରି । କିନ୍ତୁ ବନ୍ଧୁ ! ହାଉସ ଫୁଲ୍ । ନୋ ଭେକାନସୀ । ନୋ ଆଡ଼୍ମିସନ ।

ଗୁରୁ ଅଟ୍ଟହାସ କରି ଉଠିଲା, ନିଜର ରସିକତାରେ ।

ଗୁରୁର ରକ୍ତଚକ୍ଷୁ ଆଡ଼େ ଦୃଷ୍ଟି ଦେଇ ସୁକାନ୍ତ ନିଷ୍ପ୍ରଭ କଣ୍ଠରେ ଲଟକକୁ କହିଲା··· 'ଏକ୍ସକ୍ୟୁଜ ! ପ୍ଲିଜ !'

ଗୁରୁ ମିଥ୍ୟା କହିନାହିଁ ! ଲଟକ୍ ଥିଲା ବିଶ୍ୱବିଦ୍ୟାଳୟର କୃତିଛାତ୍ର । ତା'ର ମଧ୍ୟ ଏକଦା ଗୋଟାଏ ସାଧୁ ନାମ ଥିଲା, ଶୁଭେନ୍ଦୁ । ପରୀକ୍ଷାରେ ସେ କେବେ କପି କରି ନଥିଲା । ସେ ସ୍ୱପ୍ନ ଦେଖିଥିଲା ଶୁଚିସ୍ନାତ ଜୀବନର ! ଆଦର୍ଶ ଉପରେ ତା'ର ଥିଲା ପ୍ରଗାଢ଼ ବିଶ୍ୱାସ ! ସେ ମଧ୍ୟ ଥିଲା ଆଶାବାଦୀ ; କିନ୍ତୁ ବିଶ୍ୱବିଦ୍ୟାଳୟ ବାହାରେ ଏକ ନିଷ୍ଠୁର ପୃଥିବୀ ହାଇ ମାରୁଥିଲା···ଏମ୍ପ୍ଲୟମେଣ୍ଟ-ଏକ୍ସଚେଞ୍ଜର କ୍ୟୁ—ଇଣ୍ଟରଭ୍ୟୁ—ନୋ ଭେକାନସୀ—କ୍ୟୁ—ଇଣ୍ଟରଭ୍ୟୁ—ନୋ ଭେକାନସୀ—କ୍ୟୁ—ଇଣ୍ଟରଭ୍ୟୁ—କ୍ୟୁ—ନୋ ଭେକାନସୀ—ନୋ ! ନୋ—ଗେଟଆଉଟ୍ !

ଏଇ ନିଷ୍ଠୁର ପୃଥିବୀ ଭିତରୁ ଘର ଭିତରକୁ ଆସିଲେ, ଆଦିମ ପ୍ରାଗୈତିହାସିକ ଗହ୍ୱର ପରି ଦୁଇଟା ଅଳିନ୍ଦଭିଯ କୋଠରୀ ଭିତରେ ମଧ୍ୟ ନୋ ଭେକାନ୍ସୀ । ସେଥି-ମଧ୍ୟରୁ ଗୋଟିଏ କୋଠରୀରେ ଆଜମାରୋଗୀ ବାପ; ସିଏ ଦିନରେ ଅଫିସ କରେ, ଆଉ ରାତିରେ ଧର୍ମି ପେଲେ···ରାତିସାରା ଦୁଇଟା କ୍ଲାନ୍ତ ମୃତ୍ୟୁଗ୍ରସ୍ତ ଆଖି ମେଲି, ବିଛଣା ଉପରେ ବସିରହେ, ପିଞ୍ଜରା ଭିତରେ ଅଟକି ପଡ଼ିଥିବା ବନ୍ୟଜନ୍ତୁ ପରି ! ଶୁଭେନ୍ଦୁର ବୋଉ ସେଇ କୋଠରୀରେ ତଳେ ଶୋଇ ପଡ଼ନ୍ତି; ବିଛଣାର ପ୍ରୟୋଜନ ନ ଥାଏ । ଅନ୍ୟ କୋଠରୀରେ ଶୁଭେନ୍ଦୁ ଆଉ ତା'ର ଦୁଇ ଅବିବାହିତା ଭଉଣୀ । ଚଟାଣ ଉପରେ ଲଗାଲଗି ବିଛଣା ପକାଇବା ପାଇଁ ସୁଦ୍ଧା ସ୍ଥାନାଭାବ ! ଶୁଭେନ୍ଦୁ ତେଣୁ ରାତି କଟାଏ, ବାହାରେ ବାହାରେ । ଶୁଭେନ୍ଦୁର ବାପ ସତର୍କ ସିକାରୀ ପରି ରାତି ପାହାନ୍ତା ପାହାନ୍ତାକୁ ଶୁଭେନ୍ଦୁର ଆସିବା ସମୟଟା ଉପରେ ଲକ୍ଷ୍ୟ ରଖିଥାନ୍ତି; ଆଉ ଧର୍ମିପେଲର ବିରତି ମଧ୍ୟରେ ଅବଶୋଷ କରନ୍ତି; ଶୁଭେନ୍ଦୁଟା ନଷ୍ଟଚରିତ୍ର ହୋଇଗଲା !

ସେଦିନ କୌଣସି ଏକ ଇଣ୍ଟରଭ୍ୟୁ ପରେ, ଇଣ୍ଟରଭ୍ୟୁ କରୁଥିବା କର୍ତ୍ତାଜଣକ ନୋ—ଭେକାନ୍ସୀ ରହସ୍ୟର ସୂତ୍ର ବତାଇ କହିଲେ—'ବ୍ୟାକିଙ୍ଗ ଦରକାର ! ବ୍ୟାକିଙ୍ଗ୍ ! ବ୍ୟାକିଙ୍ଗ୍ ଅଛି ତମର ?'

—'ବ୍ୟାକିଙ୍ଗ୍ ! ମାନେ ?' ସେ ପଚାରିଥିଲା ନିର୍ବୋଧ ସରଳତାରେ; ଯେମିତି ଅଳ୍ପ ପୂର୍ବେ ସୁକାନ୍ତକୁ ସେ ପଚାରିଥିଲା, 'ଲଙ୍କୁ ଚୁଡ଼ୀ କି ବସ୍ତୁ ?'

କର୍ତ୍ତାଜଣକେ ଖଣ୍ଡେ ଅଦରକାରୀ କାଗଜ ଓ୍ୱେଷ୍ଟ ପେପର୍ ବାସ୍କେଟ ଭିତରକୁ ଫିଙ୍ଗିଦେବା ପରେ ତାଚ୍ଛଲ୍ୟରେ ଉତ୍ତର ଦେଇଥିଲେ, 'ନେତା···ମନ୍ତ୍ରୀ !··· ଅଫିସର !··· ଏଥି ମଧ୍ୟରୁ କୌଣସିଟି ଅଛ ତମର ?'

ଶୁଭେନ୍ଦୁର ସେଥିମଧ୍ୟରୁ କୌଣସିଟି ସୁଦ୍ଧା ନ ଥିଲା । ସେ ମନକୁ ମନ ଉତ୍ତର ଦେଇଥିଲା···'ବ୍ୟାକ୍‌ଟା ତ ଅଛି ନଷ୍ଟସ୍ତ । କିନ୍ତୁ ବ୍ୟାକିଙ୍ଗ ?'

ବଞ୍ଚିବା କିନ୍ତୁ ବ୍ୟାକିଙ୍ଗର ଅପେକ୍ଷା ରଖେ ନାହିଁ । ସେଥିପାଇଁ ଟଙ୍କା ଉପାର୍ଜନ କରିବାକୁ ପଡ଼ିବ । ବ୍ୟାକିଙ୍ଗଧର୍ମୀ ସମାଜରେ ଟଙ୍କା ରୋଜଗାରଟା କେଉଁ ବଡ଼ କଥା ? ହିନ୍ଦୀ ସିନେମା ଟିକେଟରେ ବ୍ଲାକମାର୍କେଟିଙ୍ଗ ସେ ଦୃଷ୍ଟିରୁ ମନ୍ଦ ନୁହେଁ । କିନ୍ତୁ ଏଥିପାଇଁ ମଧ୍ୟ ଅନ୍ୟ ବ୍ୟାକିଙ୍ଗ୍‌ର ପ୍ରୟୋଜନ ଥିଲା । ସେ ପର୍ଯ୍ୟନ୍ତ ଶୁଭେନ୍ଦୁ ତାହା ବୁଝି ନଥିଲା ।

ଥରେ ଗୋଟିଏ ସିନେମା ପାଖରେ, ଟିକେଟରେ ବ୍ଲାକ ଚଳାଇଥିବାବେଳେ, ହଠାତ୍ ଦୁଇଜଣ ତାକୁ ପ୍ରାୟ ଶୂନ୍ୟେ ଶୂନ୍ୟେ ଉଠାଇ ନେଇଥିଲେ, ସିନେମା ହଲ ପଛ ଅନ୍ଧାର ଗଳିର ଗୋଟାଏ ରେଷ୍ଟୁରାଁ ଭିତରକୁ । ସେଇଠାରେ ସେଦିନ ତା'ର ପ୍ରଥମ ସାକ୍ଷାତ ହୋଇଥିଲା ବୁଲୁ ସହିତ । ବୁଲୁ ଟେବୁଲ ଉପରେ ଯୋତାପିନ୍ଧା ଦୁଇଗୋଡ଼ ଲମ୍ବାଇ, ଖଣ୍ଡେ ଚଉକୀ ଉପରେ ପଛକୁ ମୁଣ୍ଡ ଝୁଙ୍କାଇ ବସିଥିଲା, ଗୋଟାଏ ରମ୍ ବୋତଲ ସାମ୍‌ନାରେ ।

ବୁଲୁ ଆଗରେ ସେ ଦୁଇଜଣ ତାକୁ ହାଜର କରାଇବା ମାତ୍ରେ, ବୁଲୁ ପକେଟରୁ ଗୋଟାଏ ଧାରୁଆ ଛୁରୀ କାଢ଼ି ଶୁଭେନ୍ଦୁର ତଳିପେଟରେ ଛୁରୀର ମୁନଟାକୁ ଲଗାଇ ପଚାରିଲା···'ଏଠି ଏ ମସ୍ତାନୀ କାହିଁକି ? ଏ କାହାର ଏରିଆ ମାଲୁମ୍ ଅଛି ତ ? ଲାଇସେନ୍‌ସ ନେଇଥିଲ ମୋଠାରୁ ? କେଉଁ ଗ୍ୟାଙ୍ଗର ତୁମେ ?'

ଥର ଥର କମ୍ପିତ କଣ୍ଠରେ ଶୁଭେନ୍ଦୁ ଉତ୍ତର ଦେଇଥିଲା···"ମୁଁ ଏକ ବେକାର । କେଉଁଠି ବ୍ୟାକିଙ୍ଗ୍ ନାହିଁ ମୋର ।

ପାଖ ଟେବୁଲରେ ବସି ସୁକାନ୍ତ ଗୁହିଁଥିଲା ଶୁଭେନ୍ଦୁ ଆଡ଼େ । ସେ କହିଲା··· "ବ୍ୟାକିଙ୍ଗ ନ ଥାଉ ! ବ୍ୟାକଟା ଅଛି ଠିକ ! ଇଏ ଲଚକ୍ ଅଛି ବୁଲୁ !'

ସେଇଦିନୁ ଶୁଭେନ୍ଦୁର ନାମାନ୍ତର ହେଲା, 'ଲଚକ୍ । ଲଚକ୍ ।'

ବୁଲୁର ଆଖି ଦୁଇଟା ହଠାତ୍ କୋମଳ ବସନ୍ତ ହୋଇଉଠିଲା । ଗମ୍ଭୀର ଭାବରେ ସେ ଛୁରୀଟାକୁ ବନ୍ଦ କରି, ପକେଟ ଭିତରେ ରଖି କହିଲା···'ଠିକ୍ ଅଛି । ଏଇଥର ଛାଡ଼ିଦେଲି । ଆଉ ଦିନେ ଏ ଏରିଆ କିନ୍ତୁ ଭୁଲରେ ସୁଦ୍ଧା ନ ମାଡ଼ ଯେପରି । ମୁଁ କୌଣସି ଅନପ୍ଲିଜାଣ୍ଟନେସ ଚାହେଁନା ! ଆଇ ଆମ୍ ଏ ମ୍ୟାନ୍ ଅଫ ପିସ୍ !

ଲଚକ୍ ମଧ୍ୟ କୌଣସି ଅନପ୍ଲିଜାଣ୍ଟନେସ ଚାହୁଁ ନ ଥିଲା !

ସେ କହିଲା···'ମୁଁ ଚାହେଁ କେବଳ ବଞ୍ଚିବା ପାଇଁ ପ୍ଲିଜ !' ଲଚକ୍‌ର ବଞ୍ଚିବା

ମରିବା ସେତେବେଳେ ଯେପରି ଗୁରୁ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ଥିଲା । ସିଗାରେଟ ଧୂଆଁର ଗୋଟିଏ କୁଣ୍ଡଳୀ ଛାଡ଼ି ଗୁରୁ ମନକୁ ମନ ସ୍ୱଗତୋକ୍ତି କରିବା ପରି କହିଲା… 'ଏ ପୃଥିବୀରେ ଆଜି ବଞ୍ଚିବାପାଇଁ ହେଲେ ରିଆକ୍ସନାରିମାନଙ୍କୁ ଖତମ କରିବା ପାଇଁ ପଡ଼ିବ । ପାରିବ ?'

ସେଥିପାଇଁ ଲଟକ୍ ପ୍ରସ୍ତୁତ ! କିନ୍ତୁ ରିଆକସନାରି କିଏ ? କେଉଁମାନେ ? ଲଟକର ନିର୍ବୋଧ ପ୍ରଶ୍ନ । ଗୁରୁ ଅସହିଷ୍ଣୁ କଣ୍ଠରେ ଉତ୍ତର ଦେଲା—'ଯେଉଁମାନେ ଆମର ଶତ୍ରୁ, ଶ୍ରେଣୀ-ଶତ୍ରୁ, ସେମାନେ ।'

ଲଟକ୍ କିନ୍ତୁ ତା' ନିଜର ଅଭିଜ୍ଞତାରୁ ବୁଝିଛି, ଶ୍ରେଣୀ ଓ ଶ୍ରେଣୀଶତ୍ରୁ ଗୋଟାଏ ସ୍ଳୋଗାନ । ସେଦିନ ଗୁରୁର ସେଇ ଦରବାରରେ ସେ ନିଜେ ସୁଙ୍କା ଘୋଷିତ ହୋଇଥିଲା ଶ୍ରେଣୀଶତ୍ରୁ ରୂପେ…ଯେଉଁଦିନ ଗୁରୁର ଏରିଆ ଭିତରେ ସିନେମା ଟିକେଟ୍‌ରେ ବ୍ଲାକ ଚଳାଇ ସେ ହଠାତ୍ ଧରା ପଡ଼ିଥିଲା ।

ଫାଶିଦଣ୍ଡ ଘୋଷଣା କରିବା ପରି ଗମ୍ଭୀର କଣ୍ଠରେ ଉଷ୍ଟବନ୍ ଦେହର ପୋଷ୍ଟର ଆଡ଼େ ଦୃଷ୍ଟି ଗୁରୁ ବିସ୍ଫୋରଣ କରି ଉଠିଲା…'ଶାଳା ଭବତୋଷ୍, ପହିଲା ନମ୍ବର କ୍ଲାସ ଏନିମୀ !'

ଭବତୋଷ ପ୍ରତି ଗୁରୁର ଇମ୍ପ୍ରେସନ୍‌ଟା ଯେ ଏତେ ଖରାପ, ସେ ସମ୍ପର୍କରେ ସୁକାନ୍ତର ବୋଧହୁଏ କୌଣସି ଧାରଣା ନ ଥିଲା । ଭବତୋଷ ତ ଏଇ ସେଦିନ ପର୍ଯ୍ୟନ୍ତ ଥିଲା; ସୁକାନ୍ତ ଗୋଷ୍ଠୀ ଛାତ୍ରମାନଙ୍କର ନେତା ! ଦେଶଗୌରବ କଲେଜରେ ଛାତ୍ର ରୂପେ ସେ ନେଇଛି ଯେପରି ଚିରସ୍ଥାୟୀ ପଟ୍ଟା । ସୁକାନ୍ତ ପ୍ରଥମ ବାର୍ଷିକ ଶ୍ରେଣୀରେ ଭର୍ତ୍ତି ହେବାବେଳକୁ ଭବତୋଷ ଥିଲା ପଞ୍ଚମ ବାର୍ଷିକ ଶ୍ରେଣୀର ଛାତ୍ର । ସୁକାନ୍ତ ବି. ଏ. ପରୀକ୍ଷାରେ କପି ରଷ୍ଟିକେଟେଡ୍ ହୋଇ ଦଳରେ ଆଜି ସ୍ନାତକୋତ୍ତର ମସ୍ତାନ୍ । କିନ୍ତୁ ଭବତୋଷ ତଥାପି ସେଇ ଷଷ୍ଠବାର୍ଷିକ ଶ୍ରେଣୀରେ । ଗୁରୁ ଦିନେ ଏହାର ରହସ୍ୟ ବୁଝାଇ କହିଥିଲା…'ବୁର୍ଜୋୟା ସମାଜରେ ଏଇ କଲେଜ ସବୁ ଗୋଟାଏ ଗୋଟାଏ ସିଟ୍ ଅଫ୍ ପାଓ୍ୱାର । କ୍ଷମତାର ଆସ୍ଥାନ । ତାକୁ ଅକ୍ତିଆର୍ କରିବା ପାଇଁ ତେଣୁ ଏତେ ୟୁନିଅନ୍ । ଏତେ ରାଜନୀତି ।' ଭବତୋଷ ସେଥିପାଇଁ ରହିଗଲା ଚିରନ୍ତନ ଛାତ୍ର ତାଲିକାରେ । କିନ୍ତୁ ତା ବୋଲି ଭବତୋଷ ଯେ ଗୋଟାଏ କ୍ଲାସ୍-ଏନିମୀ, ଏ ସମ୍ପର୍କରେ ସୁକାନ୍ତର ସନ୍ଦେହ ରହିଥିଲା । ସୁକାନ୍ତ ଗୋଟିଏ ଅସତର୍କ ମୁହୂର୍ତ୍ତରେ କହିଦେଲା…'ନକସାଲମାନଙ୍କ ସହିତ ଭିତର ସମ୍ପର୍କ ଅଛି ଯେ ! ସେ କ୍ଲାସ ଏନିମୀ ହେବ କିପରି ?'

ଗୁରୁ ପାଗଳ ପରି ଟେବୁଲ ଉପରେ ଗୋଟିଏ ବଜ୍ରମୁଷ୍ଟି ପିଟି କହିଲା… 'ଚୁପ୍‌କର ସୁଟ୍‌କା ! ବ୍ଲଡ଼ି ସ୍କଙ୍କ୍ ! ମୋର ସନ୍ଦେହ ହେଉଛି, ତୁ ହେଲୁଣି ପୋଲିସର ଷ୍ଟାଇ, ନୋହିଲେ ସେଇ କ୍ଲାସ-ଏନିମୀମାନଙ୍କର ଦଲାଲ ।' ଗୁରୁର ଏ ପ୍ରକାର

ବିସ୍ଫୋରଣରେ ସୁକାନ୍ତ ଜୀବନ ଆତଙ୍କରେ ପାଦଠାରୁ ମୁଣ୍ଡ ପର୍ଯ୍ୟନ୍ତ ଥରିବାକୁ ଲାଗିଲା । ଏଇ ଭବତୋଷ ଆଉ ଗୁରୁ ମଧ୍ୟରେ ଦିନେ ଥିଲା ଅଭେଦ ବନ୍ଧୁତ୍ୱ ! ଦୁହେଁ ଏକାଠି ମିଶି ଅନେକ ୱବଲୱେଟ୍ ଫିଙ୍ଗିଛନ୍ତି, ପୋଲିସ ଉପରେ, କେତେଥର ସ୍ଟ୍ରେଟକାଟର ଓକାସ୍ୱୃତରେ ମଧ୍ୟ ଦୁହେଁ ଥିଲେ ସମ୍ପୃକ୍ତ । ସେଥିପାଇଁ ସିନା, ଭବତୋଷ ସମ୍ପର୍କରେ ସୁକାନ୍ତ ସଫେଇ ଦେଇଥିଲା, ଭବତୋଷ କ୍ଲାସ୍ ଏନମୀ ନୁହେଁ !

ଲଚକ୍ ନିର୍ବୋଧ ଦୃଷ୍ଟିରେ ଥରେ ଗୁରୁ ଆଉ ଥରେ ସୁଟ୍‌କା ଆଡ଼େ ଚାହିଁ ଭାବୁଥିଲା···ଶ୍ରେଣୀଶତ୍ରୁ ଆଉ ଶ୍ରେଣୀମିତ୍ର ଭିତରେ ତଫାତ୍‌ଟା କେତେ ? ଭବତୋଷକୁ ଲଚକ୍ ମଧ୍ୟ ଜାଣେ ଉଗ୍ରବାମପନ୍ଥୀ ରୂପେ ! ତଥାପି ଆଜି ପ୍ରମତ୍ତ ହିଂସାର ବାରୁଦ ଧୂଆଁ ଭିତରେ ଶ୍ରେଣୀମିତ୍ରକୁ ଶ୍ରେଣୀଶତ୍ରୁ ଅଥବା ଶ୍ରେଣୀଶତ୍ରୁକୁ ଶ୍ରେଣୀମିତ୍ର ରୂପେ ଚହ୍ନିବାରେ ଭୁଲ୍ ହେବା ଅସମ୍ଭବ ନୁହେଁ ! ଯାହା ହାତରେ ଅଛି ଯେତେ ଧାରୁଆ ଛୁରୀ, ଯେତେ ଶକ୍ତିଶାଳୀ ହ୍ୟାଣ୍ଡଗ୍ରେନେଡ୍ ଅଥବା ପାଇପ୍‌ଗନ୍ ସେଇ ହେଲା ସେତେ ବେଶୀ ଶ୍ରେଣୀମିତ୍ର । ସିଏ ତା'ର ସପକ୍ଷରେ; ତାହାର ସ୍ଥାନ ଶ୍ରେଣୀଶତ୍ରୁ ମାନଙ୍କର ତାଲିକାରେ । ତେବେ ଭବତୋଷ ନଲୀପ୍ୟାଣ୍ଟର ଚଉଡ଼ା ବେଲ୍‌ଟ ତଳେ ତ ସବୁବେଳେ ରଖିଥାଏ ଗୋଟାଏ ଲମ୍ବା ଧାରୁଆ ଛୁରୀ ! ସେ ତାହେଲେ ଶ୍ରେଣୀଶତ୍ରୁ ହେବ କିପରି ?

ଲଚକ୍ ମୁଣ୍ଡର ଲମ୍ବା ବାଳଗୁଡ଼ାକୁ ମୁଠା ମୁଠା ଟାଣି; ତା'ଭିତରୁ ଯେପରି ଆବିଷ୍କାର କରିବା ପାଇଁ ଚାହୁଁଥିଲା, ଏଇ ବିଭ୍ରାନ୍ତିକର ପ୍ରଶ୍ନର ଉତ୍ତର ! ଲଚକ୍ କହିଲା···'ଭବତୋଷ ହୁଏତ ଠିକ୍ ଶ୍ରେଣୀଶତ୍ରୁ ନୁହେଁ ! କିନ୍ତୁ ଶ୍ରେଣୀଶତ୍ରୁ ମାନଙ୍କର ସେ ମିତ୍ର ! ତା' ନ ହେଲେ, ରାଇଟଣ୍ଟଭିଜନିଷ୍ଟ ମନ୍ତ୍ରୀଦଳର ନିର୍ବାଚନ ପ୍ରଚାରରେ ସେ କାର୍‌ପଟଦାଙ୍ଗ କରୁଥାନ୍ତା କାହିଁକି ?'

ଗୁରୁ ପ୍ରସନ୍ନ କଣ୍ଠରେ ଟିପ୍‌ପଣୀ କଲା···'ୟୁ ଆର୍ ରାଇଟ୍ ଲଚକ୍ ! ଲଚକ ସମ୍ପର୍କରେ ଏଣିକି ଧାରଣା ପରିବର୍ତ୍ତନ କରିବା ପାଇଁ ପଡ଼ିବ ଦେଖୁଛି !' ଏତେଦିନ ଗୁରୁ ଦୃଷ୍ଟିରେ ଲଚକ ରହି ଆସିଥିଲା, ଶ୍ରେଣୀ-ସଂଗ୍ରାମ-ର୍‌ରୁ ମାମୁଲି ଇଣ୍ଟଲେକ୍‌ଟୁଆଲ୍ ରୂପେ ! ଗୁରୁ ଦଳରେ ସେ ଥିଲା ଯେପରି ଗୋଟାଏ ହାଙ୍ଗର୍ ଅନ୍ ! ମାତ୍ର ଇତିମଧ୍ୟରେ ତା'ର ଏତେଟା ଉନ୍ନତି ଘଟିଥିବା, ଗୁରୁର ଆଶାତୀତ ଥିଲା ।

ଗୁରୁ କହିଲା···'ଦେଶଗୌରବ କଲେଜ୍ ହଲ୍‌ରେ ୱବଲୱେଟ୍ କାରବାରର ଦାୟିତ୍ୱ ଆଜି ତା ହେଲେ ଲଚକ୍‌ର ! କ'ଣ ରାଜି ତ ଲଚକ୍ ?' ଲଚକ୍ ଏତେ ଦିନେ ତା'ର ବିପ୍ଳବୀ ପୌରୁଷର ପରିଚୟ ଦେବାପାଇଁ ଗୋଟାଏ ସୁଯୋଗ ପାଇ ଥିବାରୁ ମନେ ମନେ ନିଜକୁ କୃତାର୍ଥ ଜ୍ଞାନ କରୁଥିଲା ।

'କିନ୍ତୁ ମୁଁ ଏକା ? ସୁଟ୍‌କା ଆସିବ ନାହିଁ ?'—ଲଚକ୍ ପଚାରିଲା ଶଙ୍କିତ କଣ୍ଠରେ ।

ଗୁରୁ ଉତ୍ତର ଦେଲ···'ଶମେମ୍ବର ; ଜଣେ ଗରିଲ ଯଥେଷ୍ଟ କ୍ଳାସ-ଏନମୀ-ମାନଙ୍କର ପୁରା ଗୋଟାଏ ଦଳକୁ କାବୁ କରିବା ପାଇଁ । ସେଇତ ଅମର ସାର୍ଥକତା ···ଓ୍ୱାନ୍ ଏଗେନଷ୍ଟ ମେନ । ଆଉ ଏଣିକି ମ୍ୟାଜରିଟିର ଓପିନିଅନ ନୁହେଁ, ମାଇନରିଟିର ଷ୍ଟାଟେଜି ଉପରେ ଛିଅାଣ ହେବ ସମାଜ ଆଉ ରାଷ୍ଟ୍ର ! ସବୁ ମ୍ୟାଜରିଟି ଆଉ ଶ୍ୟାଃ···ଘୋଡ଼ା କାରବାର । ହର୍ସ-ଟ୍ରେଡିଙ୍ଗ୍ ।'

ଲଟକ୍ ହାତକୁ ଗୁରୁ ଆଟାଚକେସ୍ଟାଏ ବଢ଼ାଇ ଦେଲ । ଲଟକ୍ ଆଟାଚଟା ଧରି ଗୋଟାଏ ଉତ୍ତେଜନାରେ ରାସ୍ତା ଉପରକୁ କୁଦି ପଡ଼ିଲା । ଆଟାଚ ଭିତରେ ଥିଲା ଦୁଇଟା ତାଜା ବୋମା, ପକେଟରେ ଧାରୁଆ ଛୁରୀ । ଲଟକ୍‌ର ମନେହେଲା, ସେ ଯେପରି ବହୁବାର ଆସ୍ୱାଦନ ପାଇଲ, ଆଜି ଏଇ ପ୍ରଥମ ଥର । ଗୋଟାଏ ଅନାସ୍ୱାଦିତ-ପୂର୍ବ ଉତ୍ତେଜନା ମଧ୍ୟରେ ତା'ର ପୌରୁଷର ଆଜି ଯେପରି ନବଜନ୍ମ ହେଲା ।

ଏମ୍ପଲୟମେଣ୍ଟ ଏକ୍ସଚେଞ୍ଜ ଆଉ ଦପ୍ତର ପରେ ଦପ୍ତର ମଧ୍ୟରେ ଘୁରି ବୁଲୁଥିବା ଶୁଭ୍ରେନ୍ଦୁ ପରି ସେ ଆଜି ନିତାନ୍ତ ଅସହାୟ ନୁହେଁ । ଏହି ସମାଜର ଜୀବନ-ନାଡ଼ିକା ଅଛି ଯେପରି ତା'ର ହାତ ମୁଠା ଭିତରେ । ହାତମୁଠା ଟାଣ କରି, ଦୁଇଟା ଡବଲବ୍ୟାରେଲ ଚଳାଇ ଦେଲେ ବାସ୍ ସବୁ ଖତମ୍ । ଆଟାଚ ଭିତରେ ବୋମା ଦୁଇଟା ତାକୁ ମନେ ପକାଇଦେଲ ଏକା ସହପାଠିନୀ ଯମୁନାର ସ୍ତନ । ଯମୁନା ଥିଲା ତାର ଗାର୍ଲଫ୍ରେଣ୍ଡ୍ । ଯମୁନା ମଧ୍ୟ ଥିଲା ଏମ୍ପଲୟମେଣ୍ଟ ଏକ୍ସଚେଞ୍ଜ କ୍ୟୁରେ ଶୁଭେନ୍ଦୁର ସହବର୍ତ୍ତିନୀ ! ସେଇ ଯମୁନାକୁ ସେଦିନ ସେ ଦେଖି ଆସିଲ, ଗୋଟାଏ ଗାଇନକ ନର୍ସିଂ ହୋମ୍‌ରେ ।

ଯମୁନା ମଳିନ ହସର ଗୋଟାଏ ରେଖା ଟାଣି କହିଥିଲା···'ଦେଖ ଝରାପ ! ଏମିତ ଟିକଏ ବେଶୀ ଯାଉଛି ।' ଯମୁନାର ଓଠ ଦୁଇଟା ଶେତା ରକ୍ତହୀନ ଦିଶୁଥିଲା । ଶୁଭେନ୍ଦୁକୁ ଫାଙ୍କି ଦେବା କଲ୍ପ ସହଜ ନଥିଲା । ସେ ବୁଝି ଆସିଛି, ଆବୋରସନ୍ ପରେ ଯମୁନା କ୍ୟୁରେଟିଙ୍ଗ କରାଇଥିଲା, ସେଇ ନର୍ସିଂହୋମ୍‌ରେ । ଯମୁନା ଆଜି ଗୋଟାଏ···ଆଜି ଗୋଟାଏ ଅଜି···ବ···ବର୍···ବେ···ବେଶ୍ୟା··· ହାରଲଟ୍ । ଅଉ ସିଏ ବା କ'ଣ ? ଗ···ର···ଗରିଲ ।

ମନୁଷ୍ୟ ସଭ୍ୟତା ଓ ସଂସ୍କୃତିର ଏହି ସଫଳତମ ମୁହୂର୍ତ୍ତରେ ସହର ସବୁ କାହିଁକି ଆଦିମ ମହାରଣ୍ୟ ହେଲ ? ଶୁଭେନ୍ଦୁ ବା କାହିଁକି ହେଲ ଆରଣ୍ୟକ ଗରିଲ ? ଆଉ ଯମୁନା ବା କାହିଁକି କ୍ୟୁରେଟିଙ୍ଗ ପାଇଁ ଛଦ୍ମ ନାମରେ ନର୍ସିଂ ହୋମ୍‌ରେ ଆଡ଼ମିସନ୍ ନେଲ ? କିଏ ଦେବ ଏସବୁ ପ୍ରଶ୍ନର ଉତ୍ତର ? ···ଶୁଭେନ୍ଦୁ ମୁଠା ମୁଠା କରି ମୁଣ୍ଡରୁ ଅଲରା ବାଳ ଟାଣି ତାରି ଭିତରୁ ଯେପରି ଏଇ ସବୁ ଉତ୍ପୀଡ଼କ ପ୍ରଶ୍ନର ଉତ୍ତର ବାହାର କରିବା ପାଇଁ ଚେଷ୍ଟା କରୁଥିଲ, ଯାଦୁକରମାନେ ଟୋପି ଭିତରୁ ଠେକୁଆ କାଢ଼ିବା ପରି ।

ଆଗ ମୋଡ଼ଟା ବାଙ୍କିଗଲେ ଦେଶଗୌରବ କଲେଜ । ପାଚେରି ସାରା ଆଲକତରାରେ···ଲାଲ ସଲାମ୍ !

ବର୍ଗୀ, ଠଗ ଓ ପିଣ୍ଡାରିମାନେ ଯେପରି ପୁଣି ଥରେ ନବଜନ୍ମ ପାଇଥିଲେ । ଜନ୍ମ ଜୀବନର ସବୁ ମୋହରେ ଯେତେବେଳେ ଆସେ ମୋହଭଙ୍ଗ, ଆଦର୍ଶବାଦ ଯେତେବେଳେ ହୁଏ ଶଠତା, ଶାସନ ହୁଏ ଲୁଣ୍ଠନର ନାମାନ୍ତର; ଯେତେବେଳେ ରକ୍ତପିପାସା ହିଂସା ଆସେ ଲୋଳଜିହ୍ୱା ଲମ୍ବାଇ, ଖୁନ୍‌ର ସଲାମୀ ଆଦାୟ ପାଇଁ ।

ଦେଶଗୌରବ କଲେଜ ହଲ୍‌ରେ ସାଂସ୍କୃତିକ ସମାରୋହ ଆରମ୍ଭ ହୋଇ-ଯାଇଥିଲା । ମନ୍ତ୍ରୀ ପୁଷ୍ପମାଳ୍ୟ ବିଭୂଷିତ ହୋଇ ମଞ୍ଚ ଉପରୁ ଭାଷଣ ଦେଉଥିଲେ, 'ସଂ—ସଂ—ସଂସ୍କୃତି, ଭାରତୀୟ ସଂସ୍କୃତିର ଅଛି ଦୀର୍ଘ ଦୁଇହଜାର, ନା ଦଶହଜାର ହୋଇପାରେ ଅଥବା ଦୀର୍ଘକାଳର ବଳିଷ୍ଠ ବ୍ୟାକ୍‌ଗ୍ରାଉଣ୍ଡ୍, ମାନେ ପରମ୍ପରା । ମୁଁ ଆଶା କରିବି ଆମର ତରୁଣ ଯୁବକମାନେ ସେଇ ସଂ—ସଂ—ସଂସ୍କୃତିର ଯୋଗ୍ୟ ଉତ୍ତରାଧିକାରୀ ହୁଅନ୍ତୁ । ଆସନ୍ତୁ, ଆମେ ଆଜି ଶପଥ ନେବା···ଲାଇଟ୍···ଲାଇଟ୍ !'

ହଲ୍‌ଟା ହଠାତ୍ ଅନ୍ଧକାର ହୋଇଯାଇଥିଲା । ହଲ୍ ବାହାରେ କଲେଜ କ୍ୟାମ୍ପସ୍‌ରେ ଆଲୁଅ ସବୁ ମଧ୍ୟ ଲିଭିଯାଇଥିଲା ।

ମନ୍ତ୍ରୀ ଚିତ୍କାର କରୁଥିଲେ···ଲାଇଟ୍ ! ଲାଇଟ୍ !

ଅନ୍ଧକାର ହଲ୍ ଭିତରେ ନାରୀକଣ୍ଠରେ ଶୁଭୁଥିଲା ଚିତ୍କାର ଆର୍ତ୍ତନାଦ ·· ଇସ୍ ! ପଶୁ ! ବର୍ବର୍ ! ସେଇ ଅନ୍ଧକାର ଭିତରେ, କେଉଁଠି କଅଣ ଘଟି ଯାଉଥିଲା, ତାହା ଜାଣିବାର ଉପାୟ ନ ଥିଲା । ହଲ୍ ବାହାରେ ହଠାତ୍ ଗୋଟାଏ ବୋମା ଫୁଟିଲା । ବାରୁଦ ଧୂଆଁରେ ହଲ୍ ଭିତରଟା ଭର୍ତ୍ତି ହୋଇଗଲା ।

ମନ୍ତ୍ରୀ ନୈରାଶ୍ୟ କ୍ରୋଧ ଓ ଆତଙ୍କର ମିଶାମିଶି କଣ୍ଠରେ ଚିତ୍କାର କରୁଥିଲେ ପୋଲିସ ! ପୋଲିସ !

ଭବତୋଷ ମନ୍ତ୍ରୀଙ୍କୁ ପେଣ୍ଡାଲର ଗୋଟାଏ ନିରାପଦ କୋଣକୁ ଘେନିଯାଇ କହିଲା···'ଏ ନିଶ୍ଚୟ ସେଇ ରାସ୍କେଲମାନଙ୍କର କାଣ୍ଡ । ସେମାନେ ଇଲେକ୍‌ଟ୍ରିକ୍ ଫିଉଜ ଉଡ଼ାଇ ଦେଇ, ବାହାରେ ଗୋଟାଏ ଦୁଇଟା ବୋମା ଫିଙ୍ଗିଛନ୍ତି, ଏଇ ସାଂସ୍କୃତିକ-ଉତ୍ସବ ଭାଙ୍ଗିବା ପାଇଁ । ପୋଲିସ କଅଣ କରିବ ? ଆପଣ ଏଇଠି ରୁହନ୍ତୁ···ମୁଁ ସବୁ ଠିକ କରିଦେଉଛି ।'

ଭବତୋଷ ପେଣ୍ଡାଲ ତଳକୁ କୁଦା ପଡ଼ିବା ମାତ୍ରେ ତା କାନରେ ସେଇ ଅନ୍ଧକାର ଭିତରେ କିଏ ଜଣେ ଫିସ୍ ଫିସ୍ କରି କହିଲା···'ଗୁରୁ ଦଳର ନୂଆ ମସ୍ତାନ ଏଠି ହଲ୍ ଭିତରେ । ଆମ ଦଳର ଜଣେ ଦୁଇଜଣଙ୍କୁ ଅନ୍ଧାରରେ ସେ ଷ୍ଟାବ୍ କରି ସାରିଲଣି ! ପଟ୍ଟନାୟକର ହାତ-ପାପୁଲି କଟିଯାଇଛି; ଛୁରୀ ଅଟକାଇବା ବେଳେ ।'

ଭବତୋଷ ଆଦେଶ ଦେଲା···'ଷ୍ଟାପ୍ କର ତାଙ୍କୁ । ଏକଜିଟ୍ ଦୁଆର ସବୁ ବନ୍ଦ କରିଦିଅ । ଯେପରି ସେ ବାଷ୍ଟାର୍ଡ ଖସି ପଳାଇ ନ ଯାଏ ।'

ସେଇ ଅନ୍ଧକାର ଅରଣ୍ୟ ଭିତରେ ମତ୍ତମୟୁର ପରି ନାଚ କୁନ୍ଦୁଥିଲା ଲଟକ୍ ଗୋଟାଏ ଆଦିମ ଉତ୍ତେଜନାରେ । ହତାଶ ଶୂନ୍ୟଗର୍ଭ ଜୀବନର ସବୁ ନିପୀଡ଼ିତ ଆକାଙ୍‌କ୍ଷା; ସବୁ ପୁଞ୍ଜୀଭୂତ ବ୍ୟର୍ଥତା, ଯେପରି ଏଇ ଆଦିମତା ମଧ୍ୟରେ ନିର୍ଗମନର ଗୋଟାଏ ପଥ ଖୋଜି ପାଇଥିଲା । ଲଟକ୍‌ର ଅନ୍ୟ ଉଦ୍ଦେଶ୍ୟ ନ ଥିଲା । ଏ ଅରଣ୍ୟ ହିଂସ୍ରତାରେ ତା ପାଇଁ ରହିଥିଲା ଗୋଟାଏ ରୋମାନ୍‌ସ, କିନ୍ତୁ ଏଇ ଅନ୍ଧକାର ବିପର୍ଯ୍ୟସ୍ତ ଓ ବିଶୃଙ୍ଖଳା, ଭବତୋଷ ଗ୍ୟାଙ୍ଗର ମସ୍ତାନମାନଙ୍କୁ ମଧ୍ୟ ଦେଇଥିଲା ସେମାନଙ୍କର ଅନ୍ଧପ୍ରବୃତ୍ତି ଚରିତାର୍ଥ କରିବା ପାଇଁ ଗୋଟାଏ ଅବକାଶ । କାହାର ସ୍ତନରୁ ଗୋଟାଏ ବ୍ରେସିୟର୍ ଛିଣ୍ଡି ପଡ଼ିଲା ଆସି ଶୁଭେନ୍ଦୁ ଉପରେ । ସେଇ ଅନ୍ଧାର ଭିତରେ, କିଏ ଜଣେ ଫିସ ଫିସ କରି କହୁଥିଲା···'ଯାଃ ! ଶାଲା, ଏଇଟା ତ ସ୍ତନ ନୁହେଁ, ଦୁଇ ବସ୍ତା ଭୁଷିମାଲ୍ ।'

କ୍ରମେ ହଲ ଭିତରଟା ନିଶୂନ ହୋଇଯାଇଥିଲା । ହଲ୍ ଭିତରେ ସୂଚୀଭେଦ୍ୟ ନୀରବତା । ମନ୍ତ୍ରୀ ମଧ୍ୟ ବହୁ ବେଳୁ ଫେରି ଯାଇଥିଲେ । ଭବତୋଷର ଦଳ ସୁଦ୍ଧା ସେଠାରେ ନ ଥିଲେ ।

ପୋଲିସ ଘେରି ଯାଇଥିଲେ ହଲ୍ ଚାରିପଟେ ।

ଫିଉଜ ମରାମତି ପରେ ଅବଶେଷରେ ଯେତେବେଳେ ହଲ୍ ଭିତରେ ଲାଇଟ୍ ଜଳିଲା, ଦେଖାଗଲା ଭିତରେ ଚଟାଣ ସାରା ଓଲଟ ପାଲଟ ଚଉକି, ଆଉ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଛି, ଗୁଡ଼ାଏ ବ୍ଲାଉଜ, ବ୍ରେସିୟର୍, ଗୋଟାଏ ଦୁଇଟା ରଙ୍ଗିନ ଶାଢ଼ୀ ଛିଣ୍ଡା ଫୁଲମାଳ, ଚଟି ଆଉ ଏଠି ସେଠି ମେଞ୍ଚା ମେଞ୍ଚା ତାଜା ରକ୍ତ···ତା'ରି ଭିତରେ ଗୋଟାଏ ଚଉକି ଉପରେ ଲେଟି ପଡ଼ିଥିଲା, ଗୋଟାଏ ରକ୍ତାକ୍ତ ଲାସ । ତଳପେଟ ଲଙ୍ଗସ ତଳେ ଗଭୀର କ୍ଷତରୁ ତଥାପି ରକ୍ତ ପିଚ୍‌କାରି ମାରୁଥିଲା ।

ଅନ୍ଧକାର କଲେଜ-କ୍ୟାମ୍ପସର ଗୋଟାଏ ଗଛମୂଳେ ଠିଆହୋଇ ଭବତୋଷ ଉତ୍ତେଜିତ ଭାବରେ ଜୋରେ ସିଗାରେଟ ଟାଣୁଥିଲା । ଗୋଟାଏ ଛାୟାମୂର୍ତ୍ତି ସେଇ ଅନ୍ଧକାର ଭିତରେ ଭବତୋଷ ପାଖକୁ ଆସିବା ମାତ୍ରେ ଭବତୋଷ ପଚାରିଲା···'କିଏ ସେଟା ?'

ଲାସର ପକେଟ୍‌ରୁ ଏମ୍ପ୍ଲୟମେଣ୍ଟ ଏକ୍‌ସଚେଞ୍ଜର ଗୋଟାଏ ରଙ୍ଗଭଙ୍ଗା କାର୍ଡ ବାହାରକୁ ଉଙ୍କି ମାରୁଥିଲା··ଶୁଭେନ୍ଦୁ ଦାସ—ଶିକ୍ଷା—ଏମ. ଏ. ଗଣିତ—ବୟସ ବାଇଶ !

·ଗୁରୁ-ଗ୍ୟାଙ୍ଗ୍‌ର ଗୋଟାଏ କ୍ଲାସ-ଏନିମୀ ।



# ରାଜଧାନୀ

ଅଗ୍ନିନାଦ କରିବା ପରି ଆଲର୍ମ ବେଲ୍‌ଟା ଚିତ୍କାର କରି ଉଠିଲା···ଉଠ, ସାତଟା ବାଜିଲା । ପୁଣି ଆରମ୍ଭ ହେଲା, ଆଉ ଗୋଟିଏ ଦିନ । ପ୍ରତି ଦିନର ଆରମ୍ଭକୁ ଉପଭୋଗ କରେ ସୁବୋଧ । ଦିନ ମାନେ ଯନ୍ତ୍ରଣା । ବିରକ୍ତିରେ ସୁବୋଧ ଆଲର୍ମ ଘଡ଼ିର ଲିଭରଟା ବନ୍ଦ କରିଦେଲା । ଆଉ ପନ୍ଦରମିନିଟ ଡେରିରେ ବାଜିଥିଲେ ହୋଇ ନଥାନ୍ତା ?

ମୋଟା ଭେଲ୍‌ଭେଟ ପର୍ଦ୍ଦା ଭେଦି ସକାଳର ଆଲୁଅ ଏପର୍ଯ୍ୟନ୍ତ ଘର ଭିତରେ ଫିଟି ନାହିଁ । ସବୁ ଗ୍ଳୁଇ ଗ୍ଳୁଇଆ···ତରଳ ଅନ୍ଧକାର ଓ ଫିକା ଆଲୁଅର ମିଶାମିଶି । ଟେବୁଲ ଉପରେ ଫ୍ଲାଓ୍ୱାର ଭେସ୍‌ରେ ଫୁଲତୋଡ଼ାଟା ଦିଶୁଛି ଚେନାଏ ମଉଳିଲା ଦୁପୁରେ । ଆଖିବୁଜା ଆଉ ଅଳସ ଭାଙ୍ଗିହେବ ନାହିଁ । ଟେବୁଲ ଲ୍ୟାମ୍ପର ସୁଇଚ୍‌ଟା ଚିପି ସୁବୋଧ କଲିଂ ବେଲ୍ ଦେଲା, ବେଡ୍‌-ଟି ଆଉ ଖବରକାଗଜ ପାଇଁ ।

ସକାଳୁ ଏ ଦୁଇଟା ନିଶାର ପ୍ରୟୋଜନ । ଟି' ଦରକାର, ସ୍ତିମିତ ସ୍ନାୟୁ କେନ୍ଦ୍ରସବୁ ଟାଆଁଇ ଦେବାପାଇଁ । ଆଉ ଖବରକାଗଜର ପ୍ରୟୋଜନ, ଗୁଡ଼ାଏ ବାଜେ କଥାରେ ଧନ୍ଦି ହେବାପାଇଁ । ଆଲୁମିନିୟମର ବୃହତ୍‌ ଦାଠାରୁ କେତେ କମ ଆଲୁମିନିୟମ ଦେଶରେ ଉତ୍ପାଦନ ହେଉଛି, ଆମେରିକାର ରାଷ୍ଟ୍ରପତି କୋଉ ଭୋଜସଭାରେ କଣ କହିଲେ, କଙ୍ଗୋରେ ଦିନକୁ କେତେ ଶିଶୁ ଅନାହାରେ ମରୁଛନ୍ତି, ପ୍ରଧାନମନ୍ତ୍ରୀ ଗତକାଲି ସକାଳେ କେତେ ସତେଜ ଦିଶୁଥିଲେ, ପଡ଼ୋଶୀ ରାଷ୍ଟ୍ର ସହିତ ସଂଘର୍ଷ ଲାଗିବାର ସମ୍ଭାବନା ବା ଆଶଙ୍କା କେତେ—ଏ ସବୁଥିରେ ତାର ବୃତ୍ତିଗତ ପ୍ରୟୋଜନ ଥାଇପାରେ, କିନ୍ତୁ ଜୀବନରେ ଏସବୁର ସ୍ଥାନ କେତେ ସାମାନ୍ୟ ! ବୃତ୍ତି ଜୀବନକୁ ଗ୍ରାସ କରେ; କିନ୍ତୁ ଜୀବନ ବୃତ୍ତିକୁ ନିୟନ୍ତ୍ରିତ କରେନାହିଁ । ମଣିଷର ଜୀବନ ଓ ତାର ବୃତ୍ତି ମଧ୍ୟରେ ଏଇ ଫରମୁଲା ଜୀବନର ବଡ଼ ଟ୍ରାଜେଡ଼ି । ମଣିଷ ତା'ର ଘରପାଖର, ପଡ଼ା-ପଡ଼ୋଶୀଙ୍କର ଖବର ଜାଣିବା ପାଇଁ ଯେତେ ବ୍ୟଗ୍ର, ନିଜ ଅନ୍ତରର ମଣିଷଟିର ଖବର ବୁଝିବା ପାଇଁ ଯଦି ସେହି ଅନୁପାତରେ ସାମାନ୍ୟ କୌତୂହଳୀ ହୁଅନ୍ତା ! ଶିଳ୍ପତି, ଦସ୍ୟୁ, ବାବା, ବ୍ରହ୍ମଗୁରୁ, କ୍ରିକେଟ ଖେଳାଳି, ସିନେମା ସୁପରଷ୍ଟାରମାନଙ୍କର କଥନ ଆଉ କରଣୀର ଇସ୍ତାହାର ହିଁ ଆଜି ସମ୍ବାଦପତ୍ର । ସେଥିରେ ଜନଜୀବନର ସଂଗ୍ରାମ ସଂଘର୍ଷ, ଆନନ୍ଦ ବିଷାଦର କାହାଣୀ ନାହିଁ । ଏଥିରେ କିନ୍ତୁ ନିଶା ଅଛି ।

ସୁବୋଧର ଇଏ ନିଜ୍ସ ପେଶା···ରାଜଧାନୀର ଗୋଟିଏ ପ୍ରଖ୍ୟାତ ଦୈନିକ ସମ୍ବାଦପତ୍ରର ସ୍ପେଶାଲ୍ କରେସ୍ପନ୍ଡେଣ୍ଟ ସେ ।

ହୋମଡ଼ା ଚ୍ଚେମଡ଼ାମାନଙ୍କ ସାମ୍ବାଦିକ ସମ୍ମିଳନୀ ଅବକାଶରେ, ଲଞ୍ଚ୍, କଫି, ଡିନର, ନିମନ୍ତ୍ରଣ ଫାଇଭ୍ ଷ୍ଟାର ହୋଟେଲମାନଙ୍କରେ ରକ୍ଷା କରି କରି ତାର ଦିନ କଟେ । ତାର ମସ୍ତିଷ୍କରେ ଯେ ଟାଇପ ରାଇଟରଟାରେ ବାଡ଼େଇଯାଏ, ତା'ର ରିପୋର୍ଟ ।

ଏସବୁ ନିମନ୍ତ୍ରଣ-ପତ୍ରକୁ ସେ ନିଜ୍ସ କହେ, ମିଲ୍-ଟିକେଟ୍, ଆଉ ନିମନ୍ତ୍ରଣ ଆସରମାନଙ୍କୁ କହେ ସୁପ୍ତ ଲଙ୍ଗରଖାନା···ଦାତବ୍ୟ ଅନ୍ନଶାଳା । ଏଇ ମିଲ୍ ଟିକେଟ ପାଇଁ ତାର ସହଯୋଗୀମାନଙ୍କ ମଧ୍ୟରେ କେତେ ଯେ ପ୍ରତିଯୋଗିତା ।

ଏବେ କେତେଟା ରାଷ୍ଟ୍ରର ଅଧିନାୟକମାନଙ୍କର ଗୋଟାଏ ଦୀର୍ଘ ସମ୍ମିଳନୀ ଆହୂତ ହେଲ, ରାଜଧାନୀରେ । ସେମାନଙ୍କ ମଧ୍ୟରୁ କିଏ କ୍ୟୁ-ଦେବାରୁ ଆପ୍ତୁଷ ଥିବାରୁ ବର୍ତ୍ତି ଯାଇଛି ତ କିଏ ସମ୍ବିଧାନକୁ ନାକଚ କରି ନିଜକୁ ଆଜୀବନ ରାଷ୍ଟ୍ରପତି ଘୋଷଣା କରି ବସିଛି ବୁନିଆଦୀ, ମାନ୍ଧାତା କାଳର ଗଣତାନ୍ତ୍ରିକ ପଦ୍ଧତିରେ, କେହି କେହି ବା ସୁତା ଖିଅକରେ କ୍ଷମତାସୀନ । ସମସ୍ତେ ସ୍ୱାଧୀନ···ଅଥଚ ମୁଣ୍ଡିଆଳ-ମାନଙ୍କର ପ୍ରଚ୍ଛନ୍ନ ସୂତ୍ରରେ···ମୃଗୀ ନସ୍ୟଏ ନରହରି ! ସମସ୍ତେ ନାଚୁଛନ୍ତି, ସେମାନଙ୍କ ଇଙ୍ଗିତରେ । ସେମାନେ ଛୁଙ୍କିଲେ ସର୍ଦ୍ଦି ହେଉଛି ଏମାନଙ୍କର ।

ରାଜଧାନୀକୁ ଅମନ୍ତ୍ରିତ ହୋଇଥିଲେ ସେମାନେ, ପୃଥିବୀରେ ଶାନ୍ତି ପ୍ରତିଷ୍ଠାର ସୂତ୍ର ବାହାର କରିବା ପାଇଁ । ଏମାନଙ୍କ ହାତରେ ଧନବଳ ନାହିଁ ! ମାରଣାସ୍ତ୍ର ହତିଆର ନାହିଁ ! କିନ୍ତୁ ସେମାନଙ୍କର ତ ଅଛି ; ମିଳିତ କଣ୍ଠସ୍ୱରର ବଜ୍ରନିର୍ଘୋଷ !

ଆମେ ମଧ୍ୟ ଶାନ୍ତିର ନାଦକାର । କିନ୍ତୁ ଅସୁବିଧା ହେଉଛି, ଶାନ୍ତିମୈତ୍ରୀର ଉଚ୍ଚାରଣ ବେଳେ ବେଳେ ମୁହଁ ପରି ଶୁଭୁଛି ।

ଅଧିନାୟକମାନଙ୍କ ମେଳାପାଇଁ ସୁବୋଧର ପ୍ରବୃତ୍ତି ନ ଥିଲା । ମିଡ଼ିଆ ସେଣ୍ଟରରେ କ୍ଲୋଜ୍‌ଡ୍‌ସର୍କିଟ ଟି. ଭି.ରେ ଅଧିନାୟକମାନଙ୍କୁ ଦେଖି, ସେମାନଙ୍କ ମୁଖନିଃସୃତ ବାଣୀ, କିଏ କ'ଣ, କୋଉ ଠାଣିରେ ପିନ୍ଧିଛି; କିଏ କ'ଣ ଖାଇବାକୁ ପସନ୍ଦ କରେ, ସେସବୁ ଲିପିବଦ୍ଧ କରିବା ଅପେକ୍ଷା ଟି.ଭି.ରେ କ୍ରିକେଟ ମ୍ୟାଚ ଦେଖିବା ବରଂ ଭଲ ।

ସମ୍ପାଦକ କହିଲେ, 'ଇଏ ଗୋଟାଏ ସିନିୟର ଆସାଇନମେଣ୍ଟ । ଏଥିପାଇଁ କେତେ ବାଡ଼ଆବାଡ଼ । ତୁମେ କୁଣ୍ଠିତ ହେଉଛ ସୁବୋଧ ?'

'ଏଥିରେ ଅଭିନବତ୍ୱ ନାହିଁ । ଅଭିନବତ୍ୱ ନଥିଲେ ମୋର ଆଗ୍ରହ ଆସେ ନାହିଁ ।'

'ହ୍ୱାଟ ଡୁ ଇଉ ମିନ୍ ?'—ସମ୍ପାଦକ ପାଇପ୍‌ରୁ କଳେ ଧୂଆଁ ଛାଡ଼ି କହିଲେ; 'ଇଏ ଆମର ଗୋଟାଏ ବଡ଼ ଆଚିଭ୍‌ମେଣ୍ଟ, ହୋଷ୍ଟ୍ ଦେଶ ହିସାବରେ ।'

'ଥାଙ୍କ୍, ଏ ଦେଶରେ ବନ୍ଧୁ ରାଜସୂୟ ଯଜ୍ଞ ହୋଇଯାଇଛି; ଇଏ ଆଉ ଗୋଟାଏ ସେହିପରି ବ୍ୟାପାର । କୋଉ ନୂଆ କଥା ?'

ସମ୍ପାଦକ କହିଲେ, 'ତୁମେ ଗୋଟାଏ ସିନିକ୍ ସୁବୋଧ, ସବୁ କଥାର ବିପରୀତ ଦିଗଟାଇ ଦେଖ ।'

ଏ ଆକ୍ଷେପ ମିଥ୍ୟା ନୁହେଁ । ସୁବୋଧ ସବୁ କଥାକୁ ସହଜ ସରଳ ଭାବରେ ଦେଖି ପାରିଥିଲେ, ଜୀବନରେ ଶାନ୍ତି, ଆନନ୍ଦ ପାଇଥାନ୍ତା । କିନ୍ତୁ ଏପରି ପରିବେଶ, ପରିସ୍ଥିତି ଭିତରେ, ତାର ଜୀବନଟା ଆରମ୍ଭରୁ ଗଢ଼ି ଉଠିଥିଲା । ସେଥିରେ ଆପାତ ରମଣୀୟ ସହଜ, ସରଳ ଚେହେରା ପରିବର୍ତ୍ତେ ସେ ଦେଖିଲା କେବଳ ତାର ବିକୃତି । ପୂର୍ବପୁରୁଷମାନଙ୍କର ପୁଞ୍ଜୀଭୂତ 'ହାଇକୋସିସ' ଯେପରି ଉତ୍ତରାଧିକାରୀ ସୂତ୍ରରେ ଆହରଣ କରିଥିଲା ସେ ତାର ରକ୍ତରେ ! ଏକ ଅବ୍ୟକ୍ତ ପାପବୋଧ !

ସୁବୋଧ ଉତ୍ତର ଦେଲା, ମୋର 'ସିନିସିଜମ' ତ ଆପଣମାନଙ୍କୁ ସବୁକଥା ସ୍ପଷ୍ଟ ନିର୍ଭୁଲ ଭାବରେ ଦେଖିବାରେ, ବୁଝିବାରେ ସହାୟକ ହୁଏ ।

ଏଇ 'ସିନିସିଜ୍‌ମ' ପାଇଁ ସୁବୋଧ ଗୋଠଛଡ଼ା ! ଗୋଠରେ ଜାକଜୁକ ହୋଇ ନିର୍ବୋଧ ଭାବରେ ରହିବାରେ, ଚରିବାରେ କେତେ ଆନନ୍ଦ ! ନିଷ୍ପାପତ୍ୱବୋଧ ! କିନ୍ତୁ ଗୋଟାଏ ନିଃସଙ୍ଗ ଗିରିଶିଖର ଉପରେ ଏକାକୀ ଠିଆହୋଇ, ଚାରିଆଡ଼ର ଦିଗନ୍ତବ୍ୟାପୀ ନିର୍ଜନତା ଭିତରକୁ ଚାହିଁ ରହିବାର, ଏଇ ଆସ୍ତି ! ଏଇ ଜ୍ୱାଳା ! ଏଇ ଯନ୍ତ୍ରଣା !

ଅଧିନାୟକମାନଙ୍କର ସମ୍ମିଳନୀ ଶେଷ ହୋଇଛି । ସୁବୋଧର ରିପୋର୍ଟିଂକୁ ତାରିଫ କରିଛନ୍ତି ସମସ୍ତେ । ଏପରିକି, ପାଲେସ୍‌ରୁ ଜଣେ ପ୍ରେସ-ଆଟାଚୀ ସାଧୁବାଦ ଜଣାଇଛନ୍ତି, ସୁବୋଧକୁ ତାର ସତେଜ ରିପୋର୍ଟିଂ ପାଇଁ !

ସମ୍ମିଳନୀ ପରେ ପୁରା ଗୋଟାଏ ସପ୍ତାହ ସୁବୋଧ ନେଇଛି, ବିଶ୍ରାମ । ବିଶ୍ରାମର ଦିନ ଶେଷ ଆଜି ।

ସୁବୋଧ କପ୍‌ରୁ କେତେ ଢୋକ ଟୀ ପିଇ ତନ୍ଦ୍ରା ଭାଙ୍ଗିବା ପାଇଁ ମୁଣ୍ଡର ଲମ୍ବା ବାଳଗୁଡ଼ାକୁ ମୁଠା ମୁଠା କରି ଟାଣିଲା ।

ମୁଣ୍ଡପାଖ ଟି-ପୟ ଉପରେ, ବେଡ୍‌ଲାମ୍ପ ପାଖରେ ଖୋଲା ହୋଇ ପଡ଼ିଛି, ଏନଗେଜମେଣ୍ଟ ପ୍ୟାଡ଼ । ବ୍ରେକଫାଷ୍ଟ—ଦେଶୀୟ ସିଂହ, ଜୋରବାଗ— 'ସିଂପୋସିଅମ ଅନ ପଭର୍ଟି' ଦାରିଦ୍ର୍ୟ ସମ୍ପର୍କରେ ଆଲୋଚନା-ଚକ୍ର, ଉଦ୍‌ଘାଟନ କରିବେ ଜଣେ ହୋମଡ଼ା ଚୋମଡ଼ା ମନ୍ତ୍ରୀ, ୧୧ଟାରେ—ପଞ୍ଚତାରକା ହୋଟେଲ

'ବହମାଦ୍ଭଡ୍‌ୟ'ର କନ୍‌ଭେନସନ୍ ହଲ—ଡ୍ରିନର ମୁନଲାଇଟ କ୍ଲବ, ଶାନ୍ତା ସାକ୍‌ସେନାର ବାର୍ଥ-ଡେ ପାର୍ଟି ପୋଷାକୀ ସୌଜନ୍ୟ ଓ ସାମାଜିକତାର ମହାନଗର ଇଏ । ପୋଷାକୀ ସମାଜିକତା ନ ଥିଲେ ଏଠି ତମେ ଅପାଂକ୍ତେୟ ତାଲିକାରେ । ଅଥଚ ସେଇ ସାମାଜିକତା ଯାହାର ଅପର ନାମ ଏଲାଇଟ କଲ୍‌ଚର, ବାହ୍ୟରୂପ ସମ୍ପୂର୍ଣ୍ଣ କେତେ ଫମ୍ପା କେତେ ଅଗଭୀର ! ତଥାପି ସେଇ ପୋଷାକୀ ସାମାଜିକତା ମାନିନେବା ପାଇଁ ପଡ଼େ । ତା' ନହେଲେ, କ'ଣ ଦରକାର ଅଛି, ଶାନ୍ତା ସାକ୍‌ସେନାକୁ ଅଳଡ଼ ଫୁଲ ତୋଡ଼ା, ଜନ୍ମଦିନ ଉପଲକ୍ଷେ, ଶୁଭେଚ୍ଛାର ସଙ୍କେତ ପଠାଇବାରେ ? ଟେଲିଫୋନରେ ନମ୍ବର ବୁଲାଇ ସୁବୋଧ କହିଲା, 'ହ୍ୱାଲ୍ଲୋ' ବ୍ଲୁ ଡାମୁଦ, ଫ୍ଲୋରିଷ୍ଟସ ସୁବୋଧ କପୁର ସ୍ପିକିଙ୍ଗ୍, ଥ୍ରୀ ଫାଇଭ୍ ଟୁ ସିକ୍‌ସ ସେଭେନ ! ବାର୍ଥ-ଡେ ଗ୍ରିଟିଙ୍ଗସ, ଶାନ୍ତା ସାକ୍‌ସେନା, ନଂ ୮ ମୁନଲାଇଟ କଲୋନୀ···ଅର୍କିଡ୍‌ସ ଆଣ୍ଡ ରୋଜେସ, ପ୍ଲିଜ !' ସୁବୋଧର ଆଖି ଆଗରେ ଭାସିଉଠିଲା ଶାନ୍ତା ସାକ୍‌ସେନା ଅର୍କିଡ୍ ଆଉ ଗୋଲାପର ସ୍ତବକ ଉପରେ ଗାଲ ଚାପି କହୁଛି, 'ହାଓ ଲଭ୍‌ଲି, ହାଓ ଲଭ୍‌ଲି ।

ପକ୍ଷାଘାତଗ୍ରସ୍ତ, ମିଷ୍ଟର ସାକ୍‌ସେନା ପିଆନୋ ପାଖରେ ହୁଇଲ ଚେୟାର ଉପରେ ବସି ଶାନ୍ତା ଆଡ଼େ ଚାହିଁ କହୁଛନ୍ତି, 'ସୁନ୍ଦରୀର ସିନା ସୁନ୍ଦରରେ ଅଧିକାର ! ଚମତ୍କାର ହୋଇଛି ବୁକେଟା ।' ମିଷ୍ଟର ସାକ୍‌ସେନାଙ୍କ ବିବର୍ଣ୍ଣ ରେଖାଙ୍କିତ ମୁହଁ ହସରେ ଉଜ୍ଜ୍ୱଳ !

ମିଷ୍ଟର ସାକ୍‌ସେନାଙ୍କ ବଲୀରେଖାଙ୍କିତ କପାଳ ଉପରେ ମିସେସ୍ ସାକ୍‌ସେନା ଫିକା ଲିପଷ୍ଟିକବୋଳା ଓଠ ଦୁଇଟି ଚାପିଧରି ଅଲିଅଳୀ କଣ୍ଠରେ କହିଲେ, 'ଓ ! ହାଓ ନଟୀ ୟୁ ଆର !'

କିନ୍ତୁ ଏ ଚୁମ୍ବନରେ ଥିବ କଣ ଆତ୍ମାର ଆକୁଳତା, ଈପ୍‌ସିତ ପ୍ରିୟ ଆତ୍ମ-ନିବେଦନ ? ଯୁଗ ଯୁଗର ଅତୃପ୍ତ ତୃଷା ? ମିଷ୍ଟର ସାକ୍‌ସେନା ଆଉ ମିସେସ୍ ଶାନ୍ତା ସାକ୍‌ସେନାଙ୍କ ମଧ୍ୟରେ ତାହା ତ ଆଦୌ ସମ୍ଭବ ନୁହେଁ । ସେମାନଙ୍କ ମଧ୍ୟରେ ବୟସର ବ୍ୟବଧାନ । ମିଷ୍ଟର ସାକ୍‌ସେନା ପକ୍ଷାଘାତଗ୍ରସ୍ତ ବୃଦ୍ଧ । ଶାନ୍ତା ଚାଳିଶ ଛୁଇଁବା ଛୁଇଁବା ପରି ହେଉଥିଲେ ବି ତଥାପି ତରଙ୍ଗିଣୀ । ମିଷ୍ଟର ସାକ୍‌ସେନା ଥରେ ଖବରକାଗଜରେ ବିଜ୍ଞାପନ ଦେଇଥିଲେ, ଜଣେ କମ୍ପାନିଅନ୍ ପାଇଁ । ଏ ଦିନେ, ସ୍ତ୍ରୀଙ୍କ ମୃତ୍ୟୁ ପରେ ସେ ବଡ଼ ନିଃସଙ୍ଗ । ଶାନ୍ତା ଅନୁସନ୍ଧାନ କରି ବୁଝିଥିଲା, କେତୋଟା କୋମ୍ପାନୀରେ ଅଛି ମିଷ୍ଟର ସାକ୍‌ସେନାଙ୍କ ସେଅର, ପୁଣି ବ୍ୟାଙ୍କ୍‌ରେ ସମ୍ଭାବିତ ଗଚ୍ଛିତ ଅର୍ଥର ପରିମାଣ କେତେ । ଭାରତର କେଉଁ ସହରରେ କେତୋଟା କୋଠା··· ଇତ୍ୟାଦି । କମ୍ପାନିୟନସିପ୍ ଶେଷ ହୋଇଥିଲା, ବିବାହରେ ।

ସେ ଦିନ କିଛି ଗୋଟାଏ ବାହାନାରେ ଶାନ୍ତା ଆସିଥିଲା, ବାହାରକୁ ।

ଆକସ୍ମିକ ଭାବରେ ସୁବୋଧର ଶାନ୍ତା ସହିତ ଦେଖା ହୋଇଗଲା, ଗୋଟିଏ କଫି ହାଉସ୍‌ରେ ।

ସୁବୋଧ ହଠାତ୍ ସେଣ୍ଟିମେଣ୍ଟାଲ୍ ହୋଇ ପଚାରିଲା, 'ଏ ବିବାହରେ ତୁମେ କ'ଣ ସୁଖୀ ?'

ଶାନ୍ତା ଖଣ୍ଡିଏ ବ୍ୟାଗରୁ ସିଗ୍ରେଟ ଲାଇଟର କାଢ଼ି ଖଣ୍ଡେ ସିଗ୍ରେଟରେ ନିଆ ଧରାଇ କହିଲା, 'ଏ ସମାଜରେ କେହି କୌଣସି ପରିସ୍ଥିତିରେ ସୁଖୀ ନୁହନ୍ତି ସୁବୋଧ ! କେଉଁଥିରେ କେତେ ଲାଭ, କେତେ ସ୍ୱାଚ୍ଛନ୍ଦ୍ୟ—ଏଇଆ ହେଉଛି ନିୟାମକ । ସୁଖ-ଶାନ୍ତି, ଏସବୁ ଏକ ପୁରୁଣା ପୃଥିବୀର ଶବ୍ଦ ।'

ସୁବୋଧ କଥାଟାକୁ ଆଉ ଖେଳାଇଲା ନାହିଁ । ଶାନ୍ତାର ସ୍ୱାମୀ ତାଙ୍କୁ ଡାଇଭୋର୍ସ କରିଛନ୍ତି । ଶାନ୍ତାର ତ ପୁଣି ଅବଲମ୍ବନ ପ୍ରୟୋଜନ ! ମିଷ୍ଟର ସାକ୍‌ସେନାଙ୍କ ଜୀବନ ପୁଣି ବଡ଼ ନିଃସଙ୍ଗ ।

ଏ ବ୍ୟାପାରରେ ସୁବୋଧର ବା ମୁଣ୍ଡ ଖେଳାଇବା ପାଇଁ ଅଛି କ'ଣ ? ଶାନ୍ତା ପରି ଅନେକ ନାରୀ ତାର ଜୀବନ-ଆକାଶରେ ସପ୍ତରଙ୍ଗୀ ଇନ୍ଦ୍ରଧନୁ ସାଜି ଆସିଛନ୍ତି; ପୁଣି ଯାଇଛନ୍ତି ।

ଶାନ୍ତା ମଧ୍ୟ ଯିବେ ।

ଟେଲିଫୋନଟା ବାଜି ଉଠିଲା ।

'ସୁବୋଧ କପୁର ସ୍ପିକିଂ ।'

ସୁବୋଧର ମୁହଁଟା କୁଞ୍ଚିତ ହୋଇ ଉଠିଲା । ଏଇ ପୁଣି ସେଇ ବୋର୍...

'ହ୍ୟାଲୋ ସୁବୋଧ, ମୁଁ ପ୍ରଫେସର ଡକ୍‌ଟର ମାଲହୋତ୍ରା କହୁଛି ।'

'ଖବର କଣ ?'—ସୁବୋଧର କଣ୍ଠରେ ବିରକ୍ତି ।

ହାଃ ପ୍ରଫେସର ଡକ୍ଟର ମାଲହୋତ୍ର ! ସବୁ ଗୋଟାଏ ହୋକ୍ସ୍ ! ମାଲହୋତ୍ରା ଗୋଟାଏ ଅନାମଧେୟ ଘରୋଇ କଲେଜରେ ଲେକ୍‌ଚରର ଥିଲା କିଛି ଦିନ । ସେଇ ଅବକାଶରେ ନିଜକୁ ଚଳାଇ ଦେଇଛି ପ୍ରଫେସର ଡକ୍ଟର ମାଲହୋତ୍ରା ! ଏଇ ବିରାଟ ମହାନଗରୀରେ କିଏ ବା ପଚାରୁଛି କେଉଁ ସବ୍‌ଜେକ୍ଟ୍‌ରେ ତମେ ଡକ୍ଟରେଟ୍ କରିଛ ? କଣ ଥିଲା ତମର ଥେସିସ୍ ? ରାଜନୀତିର ପଣ୍ଡା ହେଲେ ଯଦି 'ପଣ୍ଡିତ' ପଦବୀ ଚଳେ, ତା'ହେଲେ ଡକ୍ଟର ଚଳିବ ନାହିଁ କାହିଁକି ? ପାର୍ଲେସର କରିଡରରେ ପୁଣି ମାଲହୋତ୍ରା ଏବେ ପରିଚିତ ପଣ୍ଡିତ ମାଲହୋତ୍ରାଜୀ ବୋଲି । 'ଡକ୍ଟର'ର ସ୍ୱଦେଶୀ ରୂପାନ୍ତର 'ପଣ୍ଡିତ'ଜୀ ।

ମାଲହୋତ୍ରା ଏକ ବିରାଟ ହୋକ୍ସ । ଅଥଚ ଆଜିର ରାଜନୀତିରେ ଏଇ 'ହୋକ୍ସ' ମାନେଇ ତ ସଫଳ ତାଲିକାରେ ।

'ଅନେକ ଦିନ ତଳେ ଥରେ ଏକାଠି ବସିଥିଲେ । ଆଜି ସନ୍ଧ୍ୟାରେ ଆସ ନା । ଗୋଟିଏ ଭଲ ଜିନଷ ଅଛି ।'

ଭଲ ଜିନଷର ସାଙ୍କେତିକ ଶବ୍ଦ ବୁଝେ ସୁବୋଧ । ଭଲ ଜିନଷ କହିଲେ ବିଦେଶୀ ମଦ । ଉତ୍କଳର ମାଲହୋତ୍ରା, ବୈଦେଶିକ ଦୂତାବାସମାନଙ୍କର ଚତୁର୍ଥ ଶ୍ରେଣୀ କର୍ମଚାରୀମାନଙ୍କ ଭିତରେ ସମ୍ପର୍କ ରଖନ୍ତି । ସେଥିପାଇଁ ସେମାନଙ୍କ ଜରିଆରେ ପ୍ରଫେସର ମାଲହୋତ୍ରା ଯୋଗାଡ଼ କରି ପାରିଥାନ୍ତି, ଏହିପରି ଭଲ ଜିନଷ, ଅବଶ୍ୟ ବିନା ମୂଲ୍ୟରେ ।

ଉତ୍କଳର ବା ପ୍ରଫେସର ମାଲହୋତ୍ରାର ଆତିଥ୍ୟ ଗ୍ରହଣ କରିବାରେ ବିପଦ ହେଉଛି, ତାଙ୍କ ଶେଷରେ ସେ ଧରାଇଦେବ ଗୋଟାଏ ଲମ୍ବା ବିବୃତ୍ତି ବା ସେହିପରି କିଛି । "ଇଏ ଗୋଟାଏ ନୂଆ ଆଙ୍ଗଲରୁ ଆମ ବୈଦେଶିକ ନୀତିର ବିଶ୍ଳେଷଣ କରିଛି । ଫରେନ୍ ମିନିଷ୍ଟର ଷ୍ଟେଟ୍‌ସକୁ ଯାଉଛନ୍ତି ଉଇକ-ଏଣ୍ଡରେ । ତା, ପୂର୍ବରୁ ଏ ଷ୍ଟେଟ୍-ମେଣ୍ଟଟା ଫ୍ଲାସ୍ଡ ହେବା ଦରକାର" ବା ସେହିପରି କିଛି ଆବ୍‌ଦାର । ଭରି ପେଟ ହୁଇସ୍କି ଉଡ଼ାଇଲା ପରେ ଏପରି ଆବଦାରକୁ ଉପେକ୍ଷା କରିବାର କଣ ଉପାୟ ଅଛି ? ଲେଟରହେଡ୍ କୋମ୍ପାନୀ ପରି ପ୍ରଫେସର ମାଲହୋତ୍ରା ଖବରକାଗଜ ନେତା । ଇଚ୍ଛା କଲେ ପ୍ରଫେସର ମାଲହୋତ୍ରା ତମକୁ ମଧ୍ୟ ଫରେନ ପଠେଇ ଦେଇପାରେ, କୌଣସି ଫ୍ରେଣ୍ଡସିପ୍ ଆସୋସିଏସନ ପକ୍ଷରୁ କୌଣସି ଡେଲିଗେସନରେ । ସେ ଅନ୍ତତଃ ଅଧଡଜନ ଫ୍ରେଣ୍ଡସିପ୍ ଆସୋସିଏସନର ପ୍ରେସିଡେଣ୍ଟ ବା ସେକ୍ରେଟାରୀ ।

କିନ୍ତୁ ପ୍ରଫେସର ମାଲହୋତ୍ରା ବା ତା' ପରି ଲୋକେ ବୁଝି ପାରନ୍ତି ନାହିଁ ଏଇ ମାଗଣା ହ୍ୱିସ୍କି ଢକ ହୁଇସ୍କି, ବିଦେଶକୁ ଫ୍ରି ଟ୍ରିପ ପାଇଁ, ଏମ୍ବାସୀର ବିଦେଶୀ କୂଟ-ନୀତିଜ୍ଞମାନେ କେତେ ହୀନ ଦୃଷ୍ଟିରେ ଦେଖନ୍ତି, ଏ ଦେଶର ଲୋକ-ପ୍ରତିନିଧି ଓ ପ୍ରଫେସର ମାଲହୋତ୍ରାଙ୍କ ପରି ଖବରକାଗଜ ନେତାମାନଙ୍କୁ । ସେମାନଙ୍କର ଧାରଣା, ଏମାନଙ୍କୁ ଅକ୍ଲେଶରେ କିଣାଯାଇ ପାରିବ, ଏଇପରି ସାମାନ୍ୟ ମୂଲ୍ୟରେ । ସେମାନଙ୍କ ଜରିଆରେ ଲବିଙ୍ଗ୍ କରାଯାଇ ପାରିବ ସୁବିଧାରେ । ଏଇ ସାଇକୋ-ଫାଣ୍ଟମାନଙ୍କର ଗତି ସର୍ବତ୍ର···ପାଲେସଠାରୁ ଆରମ୍ଭ କରି ପାର୍ଲିଆମେଣ୍ଟ ପର୍ଯ୍ୟନ୍ତ ।

ସାଇକୋଫାନ୍‌ସୀ, ଚାମଚାଗିରି ତ ରାଜଧାନୀର ରାଜନୀତି । ଯିଏ ଯେତେ ବଡ଼ ସାଇକୋଫାଣ୍ଟ, ସିଏ ସେତେ ବେଶୀ ସଫଳ ଜନନେତା !

'ଚୁପ ରହିଲ ଯେ ସୁବୋଧ !'

'ଆଉ କେବେ ପ୍ରଫେସର ! ଆଜି ସନ୍ଧ୍ୟାରେ ଗୋଟାଏ ଜରୁରୀ ଏନଗେଜମେଣ୍ଟ ଅଛି ।' ସୁବୋଧ ଟେଲିଫୋନ ରିସିଭରଟା ବିରକ୍ତିରେ ରଖିଦେଲା ।

ଆଜି ଅପରାହ୍ଣରେ ସିମ୍ପୋସିଅମ ଶେଷ ହେବା ପରେ, ହାତରେ ଅଛି ଅବଶ୍ୟ ପ୍ରଚୁର ସମୟ । ଶାନ୍ତାର ଡିନର ପାର୍ଟିକୁ ବିଳମ୍ବରେ ଗଲେ ବି ଚଳିବ । ସେଇ

ସମସ୍ୟାଟା କଟିଯାଇ ପାରନ୍ତା ପ୍ରଫେସର ମାଲହୋତ୍ରା ଘରେ ଘୁର୍ ଖାଣି । କିନ୍ତୁ ବଡ଼ ଅସୁବିଧାର ଲାଗେ ପ୍ରଫେସର ମାଲହୋତ୍ରାର ତ୍ରୈଲୋକ୍ୟ ସାନ୍ନିଧ୍ୟ ।

ଛଳନା, ଆତ୍ମ-ପ୍ରତାରଣାର ମହାନଗରରେ ନେତାମ୍ମନ୍ୟ ପିଏ···ନେତୃତ୍ୱର ଅଭିନୟ କରେ, ଖବରକାଗଜ ସ୍ତରରେ ! ସେଇଥିରେ ତାର ପରିତୃପ୍ତି :

ବିଚାର ଜୀବ ଏଇ ପ୍ରଫେସର ମାଲହୋତ୍ରା । ପାର୍ଲେମେଣ୍ଟରେ ହାଜିରା ଦେବା ତା'ର ପ୍ରାତ୍ୟହିକ କାର୍ଯ୍ୟ । ପାର୍ଲେମେଣ୍ଟ ଭିତରକୁ ଯାଇ ଦର୍ଶନ ପାଇବା ତା' ପକ୍ଷରେ ସମ୍ଭବ ହୁଏ ନାହିଁ । ଏକଦା ପାର୍ଲେମେଣ୍ଟର ବଡ଼କର୍ତ୍ତାଙ୍କ ସହିତ ତାର କିଛିଟା ଘନିଷ୍ଠତା ଥିଲା । ବଡ଼କର୍ତ୍ତା ବାହାରେ ଶୁଭେଚ୍ଛା-ସଦିଚ୍ଛା ଓ ବନ୍ଧୁତ୍ୱର ନେପଥ୍ୟରେ ଅତି ସତର୍କ ଦୃଷ୍ଟିରେ ତାକୁ ପଦେ ପଦେ କହୁଥିଲେ, ଲୋକଟି କେତେଦୂର ଯାଇପାରେ, ଏହି ସମ୍ପର୍କକୁ ପୁଞ୍ଜି କରି ପ୍ରଫେସର ମାଲହୋତ୍ରା ବାହାରେ ନିଜକୁ ପ୍ରଚାରିତ କରିଦେଲ, ପାର୍ଲେମେଣ୍ଟର ଜଣେ ବଡ଼ପଣ୍ଡା ରୂପେ । ଦେଶର କୌଣସି କୌଣସି ସୁବାରେ ତାକୁ ସୁବେଦାରି ଦେବାପାଇଁ ବଡ଼କର୍ତ୍ତା ତାକୁ ପ୍ରସ୍ତାବ ଦେଇଛନ୍ତି ବୋଲି ସେ ମଧ୍ୟ ତାଙ୍କ ବନ୍ଧୁ ଓ ଅନୁଗତମାନଙ୍କ ମଧ୍ୟରେ ପ୍ରଚାର କରିଦେଲ । କେହି ତାଳେ ତାଳେ ଗଲେ, ବଡ଼କର୍ତ୍ତା ଯାଆନ୍ତି ପଛରେ ପଛରେ । ଯେଉଁମାନେ ତାଙ୍କର ବେଶି ଅନ୍ତରଙ୍ଗ ଓ ବିଶ୍ୱସ୍ତ, ସେମାନଙ୍କ ପଛରେ ପୁଣି ବେଶି ଗୁପ୍ତଚର । ତେଣୁ ଯଥା ସମୟରେ ପ୍ରଫେସର ମାଲହୋତ୍ରାଙ୍କର ଆତ୍ମପ୍ରଚାରର ଖବରଟି ପହଞ୍ଚିଗଲା ବଡ଼କର୍ତ୍ତାଙ୍କ କାନରେ । ତାକୁ ଅତିରଞ୍ଜିତ କରିଦେଲେ, ପ୍ରଫେସର ମାଲହୋତ୍ରାଙ୍କ ପ୍ରତି ଈର୍ଷାନ୍ୱିତ ତାଙ୍କର ଆଉ କେତେଜଣ ସମଧର୍ମୀ । ବାହାରେ ବଡ଼କର୍ତ୍ତାଙ୍କ ଆଚରଣରେ କିଛି ଅବଶ୍ୟ ପରିବର୍ତ୍ତନ ଲକ୍ଷ୍ୟ କରାଗଲା ନାହିଁ । କିନ୍ତୁ ପ୍ରଫେସର ମାଲହୋତ୍ରା ଦିନେ ଦୈନନ୍ଦିନ ରୀତିରେ ବଡ଼କର୍ତ୍ତାଙ୍କୁ ଦର୍ଶନ କରି ତାଙ୍କୁ ଗୋଟିଏ ଫୁଲତୋଡ଼ା ଭେଟି ଦେଇ ବାହାରକୁ ଆସିବାମାତ୍ରେ, ଜଣେ ପାଖଲୋକ ବେଶ୍ କଠୋର ଗଳାରେ କହିଲେ, 'ପ୍ରଫେସର ସାହେବ, ଆପଣ ପାର୍ଲେମେଣ୍ଟକୁ ପ୍ରତିଦିନ ଆସିବା ଅନ୍ୟମାନଙ୍କ ଆଖିରେ ଭଲ ଦେଖାଯାଉନାହିଁ । ଆପଣ ଏଣିକି ଯେତେ କମ୍ ପାରନ୍ତି, ସେତେ କମ୍ ଆସିଲେ ଭଲ ହେବ ।' ପ୍ରଫେସର ମାଲହୋତ୍ରା ଏହାର ଇଙ୍ଗିତାର୍ଥ ବୁଝିଲେ । ପାର୍ଲେମେଣ୍ଟ ଭିତରକୁ ଆସିବା ଏଣିକି ତାଙ୍କ ପାଇଁ ନିଷିଦ୍ଧ ହୋଇଗଲା । କଥାଟି ବଡ଼-କର୍ତ୍ତାଙ୍କର; କିନ୍ତୁ ବଡ଼କର୍ତ୍ତା କାହାକୁ କିଛି କହନ୍ତି ନାହିଁ । ସେ କୁହନ୍ତି, ପାଖ ଲୋକମାନଙ୍କ ଜରିଆରେ । ଅତୀତରେ ପ୍ରଫେସର ମାଲହୋତ୍ରା ମଧ୍ୟ ଏହି କୁହାଇବା କାର୍ଯ୍ୟରେ ନିଯୁକ୍ତ ଥିଲେ । ପ୍ରଫେସର ମାଲହୋତ୍ରା ବୁଝିଲେ, ଫୋପଡ଼ କୋରଟିଲ । ତଥାପି ପ୍ରଫେସର ମାଲହୋତ୍ରା ନିରସ୍ତ ହେବାର ଲୋକ ନୁହନ୍ତି । ପାର୍ଲେମେଣ୍ଟକୁ ଛାଡ଼ିଲେ ନିଜ ଶକ୍ତି ବା ବଳରେ ସେ ଦଣ୍ଡେ ବଞ୍ଚିପାରିବେ ନାହିଁ । ପ୍ରଫେସର ମାଲ-ହୋତ୍ରାଙ୍କ ପରି ରାଜଧାନୀର ଏହି ଶ୍ରେଣୀର ରାଜନୀତିକମାନଙ୍କର ଏହି ହେଲା, ସ୍ୱଭାବ ।

ପାଲେସର ସାନ୍ନିଧ୍ୟ ସେମାନଙ୍କର ଆତ୍ମରକ୍ଷା ପାଇଁ ଦରକାର । ସେଥିପାଇଁ ପାଲେସରୁ ବହିଷ୍କୃତ ହେଲେହେଁ ପ୍ରତ୍ୟହ ପାଲେସକୁ ଯିବା ପ୍ରଫେସର ମାଲହୋତ୍ରାଙ୍କର ବନ୍ଦ ହେଲ ନାହିଁ ।

କିନ୍ତୁ ଦର୍ଶନ ନ ପାଇଲେ ସୁଦ୍ଧା ପ୍ରଫେସର ମାଲହୋତ୍ରାର କ୍ଲାନ୍ତି ନାହିଁ, କ୍ଷୋଭ ନାହିଁ । ପାଲେସ ଭିତରେ ଗୋଟିଏ ଅମ୍ବଗଛ ମୂଳେ ଗମ୍ଭୀର ଭାବରେ ଠିଆହୋଇ ଦର୍ଶନାର୍ଥୀମାନଙ୍କୁ ସେ ସ୍ୱାଗତ କରେ, ଯେପରି ପାଲେସ ପକ୍ଷରୁ ଏଥିପାଇଁ ତାକୁ ମୁତୟନ କରାଯାଇଛି । ସେତେବେଳେ ତା' ଓଠରେ ଲାଗି ରହିଥାଏ, ଅବଲୋକିତେଶ୍ୱର ବୁଦ୍ଧ-ସୁଲଭ ସ୍ମିତହାସ । ନମସ୍କାର କଲାବେଳେ ସେ ଡାହାଣ ହାତଟା ଉଠାଇ ଦିଏ, ଅଭୟ ମୁଦ୍ରାରେ ଆଶୀର୍ବାଦ କରିବାକୁ । ନମସ୍କାରର ଏ କାଇଦାଟା ରାଜଧାନୀରେ ରାଜନୀତିଜ୍ଞମାନଙ୍କ ମଧ୍ୟରେ ହାଲ୍ ଆମଦାନୀ ହୋଇଛି, ଯଦ୍ୟପି କେଉଁଠି ଆମଦାନୀ ହେଲା ଜଣାନାହିଁ । ଦର୍ଶନାର୍ଥୀମାନଙ୍କ ମଧ୍ୟରେ ଥାଆନ୍ତି ଦୂରଦୂରାନ୍ତରୁ ଆସିଥିବା, ରାଜନୈତିକ ଜଗତରେ ହୋମଡ଼ା ଚୋମଡ଼ାମାନଙ୍କଠାରୁ ଆରମ୍ଭ କରି ଶେଠ, ଶିଳ୍ପପତି ଓ ଅନ୍ୟ ଉମେଦ୍‌ୱାରମାନଙ୍କ ପର୍ଯ୍ୟନ୍ତ । ସମସ୍ତଙ୍କର ପରିଆରି ହୋଇଯାଏ, ପ୍ରଫେସର ମାଲହୋତ୍ରା ପାଲେସର ତଥାପି ଖୁବ୍ ଅନ୍ତରଙ୍ଗ, ଖୁବ୍ ବିଶ୍ୱାସୀ ରହିଛି । ପ୍ରଫେସର ମାଲହୋତ୍ରା ସମସ୍ତଙ୍କୁ କହେ 'ଆପ ଯାଇଏ, ଅନ୍ଦର ମେ ମିଲ୍ କେ ଆଇଏ । ହମ୍ ଆପକେ ଖିଦମତ୍‌ମେ ହମେଶା ହାଜର ହୈଁ ।' 'ବଚନେ କା ଦରିଦ୍ରତା' ଆପ୍ତବାକ୍ୟର ମୂର୍ତ୍ତରୂପ ପ୍ରଫେସର ମାଲହୋତ୍ରା, ସମସ୍ତଙ୍କ ପାଇଁ ଉତ୍ସାହ ବାଣୀ । କେହି ନିରାଶ ହୁଅନ୍ତି ନାହିଁ । ଦର୍ଶନାର୍ଥୀମାନେ ପ୍ରଫେସର ମାଲହୋତ୍ରାଙ୍କ ଲହୁଣୀବୋଳା ଅଭିନୟରେ କୃତ୍ୟକୃତ୍ୟ ହୋଇଯାଆନ୍ତି । ଏହି ଅଭିନୟ ପ୍ରଫେସର ମାଲହୋତ୍ରାର ପୁଞ୍ଜି । ସେହି ପୁଞ୍ଜିରେ ସିଏ ନିଜକୁ କେବଳ ରାଜଧାନୀର ରାଜନୈତିକ ମହଲରେ ପରିଚିତ କରାଇ ପାରିଛି ତା' ନୁହେଁ ଶେଠ, ଶିଳ୍ପପତିମାନଙ୍କଠାରୁ ବେଶ ମୋଟା ଚାନ୍ଦା ମଧ୍ୟ ଆଦାୟ କରିପାରିଛି । ଏହି ଅଭିନୟ ଏହି ଆତ୍ମ-ପ୍ରତାରଣା ଜୀବିକା ଓ ଜୀବନ । ଏହା ହିଁ ପ୍ରଫେସର ମାଲହୋତ୍ରା-ଗୋଷ୍ଠୀର ରାଜନୀତିକମାନଙ୍କର ଏକମାତ୍ର ରାଜନୀତି, ଯାହାର ଏକମାତ୍ର ଉଦ୍ଦେଶ୍ୟ ରହିଛି ସ୍ୱାର୍ଥସିଦ୍ଧି । ଏମାନଙ୍କର ରାଜନୀତିର ଲକ୍ଷ୍ୟ ଅତି ସୀମିତ, କ୍ଷମତା ଓ ଅର୍ଥ । ସେଥିରେ କଲ୍ୟାଣଦର୍ଶିତା ବା ବୃହତ୍ତର ସାର୍ଥକତାର ପ୍ରଶ୍ନ ନାହିଁ । ସେସବୁ କେବଳ ସ୍ଲୋଗାନ ଦେବା ଭଳି । କିନ୍ତୁ ନିଜ ସ୍ୱାର୍ଥର ପ୍ରଶ୍ନ ଉଠିଲେ; ସେମାନେ ଦେଶର ସ୍ୱାର୍ଥକୁ ସୁଦ୍ଧା ବଳି କରିଦେବାକୁ କୁଣ୍ଠିତ ହେବେ ନାହିଁ ।

ମିଡ଼ିଆ ବା ଖବରକାଗଜମାନଙ୍କରେ ଆତ୍ମପ୍ରଚାର ଏ ବ୍ୟବସାୟରେ ପ୍ରଫେସର ମାଲହୋତ୍ରାର ତେଣୁ ଅପରିହାର୍ଯ୍ୟ ପୁଞ୍ଜି । ସେଥିପାଇଁ ଅବଶ୍ୟ ପ୍ରଚୁର 'ଭଲ ମାଲ'

ସାମ୍ବାଦିକମାନଙ୍କ ପାଇଁ ବ୍ୟବସ୍ଥା କରିବାକୁ ପଡ଼େ । କିନ୍ତୁ ବୈଦେଶିକ ଦୂତାବାସମାନଙ୍କରେ ଚତୁର୍ଥ ଶ୍ରେଣୀ କର୍ମଚାରୀମାନଙ୍କ ୟୁନିଅନର ପ୍ରେସିଡେଣ୍ଟ ପକ୍ଷରେ 'ଭଲ ମାଲ' ଦୂତାବାସମାନଙ୍କରୁ ହରଣଚାଲ କରି ଆଣିବାଟା କେଉଁ ବଡ଼କଥା ! ଏଥିରେ ପ୍ରଫେସର ମାଲହୋତ୍ରାର ଗୋଟିଏ ନାକ୍ ଅଛି । ତା'ର ଘୋର ଶତ୍ରୁମାନେ ସୁଦ୍ଧା ଏ କଥା ସ୍ୱୀକାର କରିବେ ।

କିନ୍ତୁ କେତେବେଳେ ସ୍ଥିତ ହୁଇସ୍କି, ଗୋଟାଏ ଗୋଲ୍ଡଫ୍ଲେକର ସିଗାରେଟ ପ୍ୟାକେଟ ଓ ଶସ୍ତା ଡିନରର ଉଦ୍ଧାରରେ ପ୍ରଫେସର ମାଲହୋତ୍ରାର ବିରୁଦ୍ଧ ଛପାଇବା ସୁବୋଧ ପକ୍ଷରେ ଅତ୍ୟନ୍ତ ବିରକ୍ତିକର ହୋଇ ଉଠିଥିଲା । କିନ୍ତୁ ପ୍ରଫେସର ମାଲହୋତ୍ରା ସୁବୋଧକୁ ଛାଡ଼େ କେତେବେଳେ ! ସେ ଆଉ ଥରେ ଟେଲିଫୋନ କଲା—'ସୁବୋଧ ତମେ ନ ଆସିଲେ ସନ୍ଧ୍ୟାଟା ମାଟି ହୋଇଯିବ ।' ସୁବୋଧ ଦୁଇପାଟି ଦାନ୍ତ ଚିପି, ଈଷତ୍ ରୁଷ୍ଟ କଣ୍ଠରେ କହିଲା, 'ସରି, ଥ୍ୟାଙ୍କ୍ସ ।'

ନା, ନା—ଦେବୀନ୍ଦର ସିଂହର ବ୍ରେକଫାଷ୍ଟକୁ ଆଉ ଯାଇ ହେବନାହିଁ । ଯିବା ପାଇଁ ମଧ୍ୟ ଇଚ୍ଛା ନଥିଲା । ଏଇ ଦେବୀନ୍ଦର ସିଂହ ରାଜଧାନୀର ଆଉ ଏକ ଜସମର ଘୁଘୁ । ଇଏ ଗୋଟାଏ ଇଉରୋପିଆନ ଦେଶର ସାମରିକ ଉଡ଼ାଜାହାଜ ତିଆରି କମ୍ପାନୀର ସବ୍-ଏଜେଣ୍ଟ । ଉଡ଼ାଜାହାଜ ବିକ୍ରୀ କରିବାପାଇଁ ଲବି ଦରକାର । ଲବି ପାଇଁ ପ୍ରୟୋଜନ ଅନ୍ୟ ପ୍ରତିଦ୍ୱନ୍ଦ୍ୱୀ କମ୍ପାନୀମାନଙ୍କ ଉଡ଼ାଜାହାଜ ବିରୁଦ୍ଧରେ ସୁଚତୁର ଦୁଷ୍ଟ ପ୍ରଚାର । ଏଥିରେ ପାର୍ଲିମେଣ୍ଟ ସଭ୍ୟଙ୍କଠାରୁ ଆରମ୍ଭ କରି ସାମ୍ବାଦିକମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ପ୍ରୟୋଜନ । ସେଥିପାଇଁ ଦେବୀନ୍ଦର ସିଂହ ଜୋରବାଗ କୋଠିରେ ବ୍ରେକଫାଷ୍ଟ, ଲଞ୍ଚ, ଡିନରର ଆମନ୍ତ୍ରଣ ନିତିଦିନିଆ ବ୍ୟାପାର । କିନ୍ତୁ ଏସବୁ ଦଲାଲି ମଧ୍ୟ ସୁବୋଧକୁ କମେ ଚଟା ଲାଗିଲାଣି । ସେ ଦେବୀନ୍ଦର ସିଂହକୁ ଟେଲିଫୋନ କରି ଜଣାଇ ଦେଲା, ସେ ବ୍ରେକ୍‌ଫାଷ୍ଟକୁ ଆସିପାରୁ ନ ଥିବାରୁ ଦୁଃଖିତ ।

ତା'ପରେ ଅଦ୍ୟମାଦିତ୍ୟ ହୋଟେଲରେ ଦାରିଦ୍ର୍ୟ ଉପରେ ସିମ୍ପୋଜିଅମ ପାଇଁ ସେ ତତ୍ପରତାର ସହିତରେ ପ୍ରସ୍ତୁତ ହେବାକୁ ଲାଗିଲା ।

ରାଜଧାନୀର ଚତୁର ଧଡ଼ିବାଜମାନଙ୍କ ହାତରେ ଦାରିଦ୍ର୍ୟ ଆଉ ଏକ ଅସ୍ତ୍ର । ଅର୍ଥନୀତି ବିଶାରଦମାନଙ୍କଠାରୁ ଆରମ୍ଭ କରି ପାଲେସ୍‌ର ଭିତରିଆ ଓ ଗ୍ରାମୁଆ, କାନକୁହା, ସମସ୍ତଙ୍କ ପାଇଁ ଦାରିଦ୍ର୍ୟ ଜପରି ପୁଷ୍ଟିବ, ତାହାହିଁ ଯେପରି ଦବାଘରର ଏକମାତ୍ର ଚିନ୍ତା । ଏମାନଙ୍କର ପରିଧାନ ହେଲା ହାଲଫେସନର ସଫାରି । ପକେଟରୁ ହୁଙ୍କି ମାରୁଛି, ଇଣ୍ଡିଆ କିଂ ସିଗାରେଟ୍ । ରାସ୍ତାରେ ବେପରୁଆ ଛୁଟାଇଛନ୍ତି, ଲମ୍ବା ଲମ୍ବା ଇମ୍ପୋର୍ଟେଡ଼ ଗାଡ଼ି । ଏମାନେ ଏ ଯୁଗର ନୂତନ ସାମନ୍ତଗୋଷ୍ଠୀ, କିନ୍ତୁ ମୁହଁରେ ଏମାନଙ୍କର 'ଦାରିଦ୍ର୍ୟ ଦୂରୀକରଣ' ସ୍ଲୋଗାନ । ଇଏ ମଧ୍ୟ ରାଜଧାନୀର ଧୂର୍ତ୍ତ ଆତ୍ମ-

ପ୍ରତାରଣାର ଆଉ ଏକ ଦିଗ । ଦେଶରୁ ଦାରିଦ୍ର୍ୟ ଘୁଞ୍ଚାଇବାର ଚିନ୍ତା ଅଳ୍ପ ନୂଆ ନୁହେଁ । ସବୁ ଦେଶରେ, ସବୁ କାଳରେ ଯେଉଁମାନେ ଦେଶର ଶାସନ କ୍ଷମତାକୁ କାଳ କାଳ ପାଇଁ ନିଜ ହାତ ମୁଠାରେ ଅକ୍ତିଆର କରି ରଖିବାକୁ ଚାହିଁଛନ୍ତି, ସେମାନେ ସମସ୍ତେ ଦେଇଚନ୍ତି, ଏଇ ସ୍ଲୋଗାନ । କାରଣ, ଏହାଠାରୁ ସୁଶ୍ରାବ୍ୟ 'ବୋଲି' ଆଉ କିଛି ନାହିଁ । ସବୁ ଦେଶର ଦରିଦ୍ରମାନେ ହେଲେ ବହୁପକ୍ଷ । ଏ ପ୍ରକାର 'ବୋଲି'ରେ ସେମାନଙ୍କର ଦାରିଦ୍ର୍ୟ ଘୁଞ୍ଚୁ ବା ନ ଘୁଞ୍ଚୁ, ସେମାନଙ୍କଠାରୁ ଅନ୍ତତଃ ସମର୍ଥନ ମିଳିବ । ନେପୋଲିୟନ, ହିଟ୍‌ଲର, ମୁସୋଲିନି ସମସ୍ତେ ଏହିପ୍ରକାର 'ବୋଲି' ଦେଇ ଅମିତ କ୍ଷମତାର ଅଧିକାରୀ ହୋଇ ପାରିଥିଲେ, କିନ୍ତୁ ସେ ଦେଶମାନଙ୍କରୁ ଦାରିଦ୍ର୍ୟ ଯାଇ ନାହିଁ । ଦାରିଦ୍ର୍ୟ କ୍ଷମତାଲିପ୍ସୁ ରାଜନୀତିକ ନେତାମାନଙ୍କର ଏକ ନ୍ୟସ୍ତ ସ୍ୱାର୍ଥ । ଦାରିଦ୍ର୍ୟ ଲୋପ ପାଇଗଲେ, ସେମାନଙ୍କ ସହଜ ନେତୃତ୍ୱ ଆଉ ଚାଲିବ ନାହିଁ । ଯେତେଦିନ ଯାଏ ଦାରିଦ୍ର୍ୟ ରହିଥିବ, ସେତେଦିନ ପର୍ଯ୍ୟନ୍ତ ସେମାନେ ସୁପ୍ରତିଷ୍ଠିତ ଥିବେ । ଶେଠମାନେ ଗୋରୁଚର୍ବି ଘିଅରେ ମିଶାଇ କୋଟିପତି ହୋଇ ସେଥିରୁ କିଛି ମୁନଫାରେ ଧର୍ମଶାଳା ଓ ଗୋଶାଳା ଖୋଲିବାକୁ ଏହିପରି ଶ୍ରେଣୀର ନେତାମାନେ ବୁଭୁକ୍ଷୁ ଦରିଦ୍ରମାନଙ୍କ ଆଗରେ ବଡ଼ାଏ ବଡ଼ାଏ ଅବଶ୍ୟ ପକାନ୍ତି । ମାତ୍ର ସେଥିରେ ଦାରିଦ୍ର୍ୟ ବଢ଼େ ଯିନା, ତାହାର ବିକଟତା, ତାହାର ଜ୍ୱାଳା ପ୍ରଶମିତ ହୁଏ ନାହିଁ ।

ରାଜନୀତିର ଏଇ କପଟପାଶାରେ ଅର୍ଥନୀତି ବିଶାରଦମାନେ ଗୋଟିଏ ବଡ଼ ସାରିକଦାର । ଦାରିଦ୍ର୍ୟ ଉପରେ ବଡ଼ ବଡ଼ ସନ୍ଦର୍ଭ ଓ ଗ୍ରନ୍ଥ ଲେଖି ଏମାନେ ବେଶ୍ କିଛି ପ୍ରସିଦ୍ଧି ଅର୍ଜନ କରିସାରିଲେଣି । ଦାରିଦ୍ର୍ୟ ଘୁଞ୍ଚୁ ନ ଘୁଞ୍ଚୁ, ଏମାନଙ୍କ ପ୍ରସିଦ୍ଧି କିନ୍ତୁ ବଢ଼ିବାରେ ଲାଗିଛି । ଏଥିପାଇଁ ସିମ୍ପୋଜିଅମର ଆୟୋଜନ ନିତାନ୍ତ ପ୍ରୟୋଜନ । ଏ ସିମ୍ପୋଜିଅମମାନଙ୍କ ସ୍ଥାନସବୁ ପଞ୍ଚତାରକା ହୋଟେଲମାନଙ୍କର ଶୀତତାପ ନିୟନ୍ତ୍ରିତ କନଭେନ୍‌ସନ ହଲ । ସେଥିରେ ଯୋଗଦେବାପାଇଁ ସଫାରି ପିନ୍ଧା, ଟାଇ ବନ୍ଧା, ଅର୍ଥନୀତି ଶାସ୍ତ୍ରୀମାନେ, ହାତରେ କେହି ବା ଆଟାଚି ଝୁଲାଇ, ଆଉ କେହି ବା ହାତରେ ପ୍ଲାଷ୍ଟିକ ଫାଇଲରେ ନାଲିଫିତା ବନ୍ଧା ସନ୍ଦର୍ଭ ଧରି, ଇମ୍ପୋର୍ଟେଡ୍ ଗାଡ଼ିମାନଙ୍କରୁ ବ୍ୟସ୍ତ-ବିବ୍ରତ ଭାବରେ ଓହ୍ଲାଇ ପଡ଼ନ୍ତି, ହୋଟେଲରେ ପୋର୍ଚ୍‌ରେ—ଯେପରି ଦାରିଦ୍ର୍ୟକୁ ସେମାନେ ଆଉ ଗୋଟିଏ ମୁହୂର୍ତ୍ତ ବରଦାସ୍ତ କରି ପାରିବେ ନାହିଁ ! ଏହି ହୋମଡ଼ା ଚୋମଡ଼ା କର୍ତ୍ତାପଦଧାରୀ ଆସି ଯଥାବିଧି ସିମ୍ପୋଜିଅମକୁ ଉଦ୍‌ଘାଟନ କରିବା ଅବକାଶରେ ଦାରିଦ୍ର୍ୟ ପାଇଁ ସେ କିପରି ଘୋର ଚିନ୍ତିତ, ତାହା ବେଶ୍ ଆବେଗ ଜଡ଼ିତ ଭାଷାରେ ଭାଷଣ ଦେଇ ଯାଆନ୍ତି । ଉଦ୍‌ଘାଟନ ପର୍ବ ଶେଷ ହେବା ପରେ ପରେ ଆରମ୍ଭ ହୋଇଯାଏ, କଫି ପର୍ବ । ଦାରିଦ୍ର୍ୟ ହଟାଇବା ସମ୍ପର୍କରେ ନିଜ ନିଜ ମୂଲ୍ୟବାନ ସିଦ୍ଧାନ୍ତ ପେଶ୍ କରିବା ଆଗରୁ ଅର୍ଥନୀତି ଶାସ୍ତ୍ରୀମାନେ ଗରମ କଫିରେ ତଣ୍ଟି ଭିଜାଇ ନିଅନ୍ତି । ତା' ନହେଲେ ସେମାନଙ୍କ କଥାଗୁଡ଼ା ଯେପରି ତଣ୍ଟିରେ ଅଟକିଯିବ ।

କଫି ପର୍ବ ଶେଷ ହୋଇ ଗୋଟିଏ ଦୁଇଟି ସନ୍ଦର୍ଭ ଶୁଣିବା ପରେ ଆସିଯାଏ, ଲଞ୍ଚ-ବିରତି । ଅପରାହ୍ଣରେ ଆଉ କିଛି ସନ୍ଦର୍ଭ, ତା'ପରେ ସିମ୍ପୋସିଅମ ଶେଷ ।

ଦାରିଦ୍ର୍ୟ ଅବଶ୍ୟ ବାହାରେ ଲମ୍ବିଥାଏ, କ୍ଷୁଧିତ ଅଜଗର ପରି । ଏସବୁ ନିରର୍ଥକ, ଯନ୍ତ୍ର-ପ୍ରଚାରଣାପୂର୍ଣ୍ଣ ସିମ୍ପୋସିଅମମାନଙ୍କ ପାଇଁ ସୁବୋଧର ମଧ୍ୟ ଅରୁଚି ହେଲା । ସୁବୋଧ ଏବେ ଆଶ୍ଚର୍ଯ୍ୟ ହୁଏ ଯେ, ଦିନକୁ ଦିନ ଆଜିକାଲି କ୍ରମେ ଏପରି ସିନିକ୍ ହୋଇ ଉଠୁଛି କାହିଁକି ?

ଗାଡ଼ିର କାର୍ବୁରେଟର ରାସ୍ତାରେ ଅସୁବିଧା କରି ନ ଥିଲେ ସୁବୋଧ ଯଥା ସମୟରେ ସିମ୍ପୋସିଅମରେ ପହଞ୍ଚି ପାରିଥାନ୍ତା ମାତ୍ର ସେ ରିସେପ୍ସନ କାଉଣ୍ଟରରେ ଚେକ୍-ଇନ୍ କରି କନ୍‌ଭେନସନ ହଲକୁ ଆସିବା ବେଳକୁ ନେତାଜୀଙ୍କ ଉଦ୍‌ଘାଟନ ଭାଷଣ ସେଇ ମାତ୍ର ଶେଷ ହୋଇଛି । ସମବେତ ପ୍ରତିନିଧିମାନେ ଘନଘନ କରତାଳି ଦେଉଥାନ୍ତି । ନେତାଜୀ କିଛି ଗୋଟାଏ ସୁଶ୍ରାବ୍ୟ କଥା କହିଛନ୍ତି, ନିଶ୍ଚୟ ।

ଦାମି ସଫାରି ପିନ୍ଧା ଜଣେ ପ୍ରତିନିଧି ମଞ୍ଚ ଉପରକୁ ଆସି ଗୋଟାଏ ନାଟକୀୟ ଠାଣିରେ ଠିଆ ହୋଇ କପାଳ ଉପରୁ ଗୋଛାଏ କହରା ବାଳ ପଛକୁ ଘୁଞ୍ଚିଦେଇ ଭାଷଣ ଦେଲେ ମୂଳ କଥା ଦାରିଦ୍ର୍ୟର ସଂଜ୍ଞା କ'ଣ ? ଏ ସଂଜ୍ଞା ପ୍ରଥମେ ସ୍ପଷ୍ଟ ନ ହେଲେ ତ ଦାରିଦ୍ର୍ୟ ଘୁଞ୍ଚାଇବା ଅଭିଯାନ ସବୁ କୁହୁଡ଼ି ପରିସରରେ । ଏ ସମ୍ପର୍କରେ ବହୁ ବିକଶିତ, ବିକାଶଶୀଳ ଓ ବିକାଶୋନ୍ମୁଖ ଦେଶରେ ଦାରିଦ୍ର୍ୟର ଉଦାହରଣ ଦେଇ ସେ ପ୍ରତିପାଦନ କରିବାକୁ ଚେଷ୍ଟା କଲେ; ଏ ଦେଶରେ ଦାରିଦ୍ର୍ୟ ଯେତେ ଉତ୍କଟ ବୋଲି କୁହାଯାଉଛି, ପ୍ରକୃତରେ ତାହା ସେପରି ନୁହେଁ । ଏ ବ୍ୟାପାରରେ ଅଯଥା ନୈରାଶ୍ୟବାଦୀ ନ ହୋଇ ପ୍ରଥମେ ଦାରିଦ୍ର୍ୟ ସଂଜ୍ଞା ନିରୂପଣ ପାଇଁ ସିମ୍ପୋସିୟମ ପକ୍ଷରୁ ଗୋଟିଏ କମିଟି ଗଠନ ହେବା ଆବଶ୍ୟକ ବୋଲି କହି ସେ ତାଙ୍କ ଆସନ ଗ୍ରହଣ କଲେ ।

ଘନ ଘନ କରତାଳି ଉଠୁଥିବା ବେଳେ ବକ୍ତା ମହାଶୟ ଧରିନେଲେ, ତାଙ୍କ ବକ୍ତୃତା ସମସ୍ତଙ୍କୁ ପ୍ରଭାବିତ କରିଛି । ସ୍ୱୟଂ ନେତାଜୀ ସୁଦ୍ଧା ସ୍ମିତ ହସି ପାଖ ଚଉକିରେ ନେତାଙ୍କ ଆଡ଼େ ମୁଣ୍ଡ ବଙ୍କାଇ ଏ ପ୍ରକାର ମୂଲ୍ୟବାନ ଭାଷଣ ପାଇଁ ତାଙ୍କୁ ଅଭିନନ୍ଦନ ଜଣାଉଥିଲେ । କିନ୍ତୁ ଏ କରତାଳି ଧ୍ୱନି ଯେ ସମ୍ପୂର୍ଣ୍ଣ ଆନ୍ତରିକତାହୀନ ଓ ଏହା କେବଳ ଏକ ରିଫ୍ଲେକ୍ସ ଆକ୍ସନ, ତାହା ସେ ବୁଝି ପାରୁ ନଥିଲେ । ସଭାରେ ବସିଲେ, ଏମିତି କରତାଳି ଦେବାକୁ ପଡ଼ିଥାଏ । ଏ ସତ୍ୟଟି ହୁଏତ ସେ ବୁଝି ନ ଥିଲେ ।

ଦ୍ୱିତୀୟ ବକ୍ତାଙ୍କର ଚେହେରା ଦେଖି ମନେ ହେଲା ସେ ଜଣେ ଉଗ୍ରପନ୍ଥୀ, ପ୍ରଫେସର ରୋସନ ଲାଲ୍··· । ବାମପନ୍ଥୀ ଜଗତରେ ବେଶ ଜଣାଶୁଣା ନାଆଁ ।

ଇଏ ଗୋଟିଏ ପ୍ରସିଦ୍ଧ ସାମ୍ୟବାଦୀ ବିଦ୍ୟାଳୟରେ ସୋସିଓଲଜିର ଅଧ୍ୟାପକ । ପରିଧାନରେ ମୋଟା ଖଦଡ଼ ପାଇଜାମା ଓ ଲମ୍ବା ଖଦଡ଼ ପଞ୍ଜାବୀ । ଅତି ଯତ୍ନର ସହିତ କାନ୍ଧ ପାଖରେ ଓ ପକେଟ ଉପରକୁ ଚେନାଏ ଚେନାଏ କରୁଣ୍ଟରେ କାଟି ହଟେଇ ଦିଆ ହୋଇଛି । ଆଖିରେ ପିନ୍ଧିଛନ୍ତି, ଟିଣ ଫ୍ରେମ ଦିଆ କ୍ରସ୍ ପାଓ୍ୱାରର ଚଷମା । ଅତି ଯତ୍ନର ସହିତ ଗୋଟାଏ ପାଟର ଲେନ୍ସରୁ ଟିକିଏ ଫଟେଇ ଦିଆ-ଯାଇଛି । କାନ୍ଧରୁ ଝୁଲୁଛି; ଶାନ୍ତିନିକେତନ ଝୁଲି । ଶୀର୍ଣ୍ଣ ମୁହଁରେ ଦାଢ଼ି, କପାଳରେ ବଳୀରେଖା, ତାଙ୍କ ଚେହେରାରେ ଦେଇଛି ବୁଦ୍ଧିଦୀପ୍ତ ବୈଶିଷ୍ଟ୍ୟ । ପ୍ରଫେସର ରୋଷନ ଲାଲ ଝୁଲମୁଣି ଭିତରୁ ତାଙ୍କ ସନ୍ଦର୍ଭଟି କାଢ଼ି ପୁଣି ଝୁଲମୁଣିରେ ରଖିଦେଲେ । ତା' ପରେ ଶାନ୍ତ ନିରୁଦ୍ଦିପ୍ତ କଣ୍ଠରେ ଭାଷଣ ଆରମ୍ଭ କରି ହଠାତ୍ ଯେପରି ଲକ୍ଷ୍ୟସ୍ରୋତର ଉଗ୍ର ବିନ୍ଦୁରେ ଆସି ପହଞ୍ଚିଗଲେ···'ପୂର୍ବବର୍ତ୍ତୀ ବକ୍ତା ଯାହାକହିଲେ, ତାହା ଏଦେଶରେ ମଲ୍ଟିନେସନାଲ ଓ ଏମ୍‌ଆରଟିପି ମାଲିକମାନଙ୍କର କଥାର ପ୍ରତିଧ୍ୱନି ମାତ୍ର ।' ତାଙ୍କର ବକ୍ତବ୍ୟ ହେଲ—ଏ ଦେଶରୁ ମଲ୍ଟିନେସନାଲମାନଙ୍କୁ ହଟାଇ ବଡ଼ ବଡ଼ ପୁଞ୍ଜିପତି-ମାନଙ୍କୁ କାବୁ ନ କରିବା ପର୍ଯ୍ୟନ୍ତ ଦାରିଦ୍ର୍ୟ ହଟାଇବା ନାମରେ ଯେତେ ସ୍ଲୋଗାନ ଦିଆଗଲେ ବି ଦାରିଦ୍ର୍ୟର ଉତ୍କଟତା ବଢ଼ି ବଢ଼ି ଚାଲିଥିବ, ଇତ୍ୟାଦି ଇତ୍ୟାଦି । ଏହାଙ୍କ ଭାଷଣ ମଧ୍ୟ ଘନଘନ କରତାଳି ଦ୍ୱାରା ସେହିପରି ସମର୍ଥିତ ହେଲ ।

ଗୋଟାଏ ବାଜିବାକୁ ଦଶ ମିନିଟ ବାକି ।

ଲଞ୍ଚ-ବିରତି ପାଇଁ ସମସ୍ତେ ଉଦ୍‌ବିଗ୍ନ ।

ଦୀର୍ଘ ପାଞ୍ଚ କୋର୍ସ ବିଶିଷ୍ଟ ଲଞ୍ଚ ଶେଷ ହେଉ ହେଉ ଅପରାହ୍ଣ ତିନିଟା ।

ଅପରାହ୍ଣ ଅଧିବେଶନରେ ଭାଷଣଦେବା ପାଇଁ ଉଠିଲେ, ଅଧ୍ୟାପକ ଲକଡ଼ାବାଲା —ଗାନ୍ଧିବାଦୀ, ଅର୍ଥନୀତିଜ୍ଞ । ଏ ମହାଶୟ ଦେଶରେ ମଲ୍ଟିନେସନାଲ ଓ ଏମ୍‌-ଆରଟିପିମାନଙ୍କର ମଧ୍ୟ ବିରୋଧୀ, କିନ୍ତୁ ଭିନ୍ନ କାରଣରୁ । ଏହାଙ୍କ ସିଦ୍ଧାନ୍ତ ଗ୍ରାମୀଣ ଅର୍ଥନୀତି ଓ କୁଟୀର ଶିଳ୍ପରେ ହିଁ କେବଳ ଦାରିଦ୍ର୍ୟରୁ ମୁକ୍ତି । ପାଓ୍ୱାର ପ୍ଲାଣ୍ଟ ଦରକାର ନାହିଁ । ଗୋବର-ଗ୍ୟାସରେ ଚାଲିବ । ଚରଖା ତାକୁଡ଼ି ଥିବା ପର୍ଯ୍ୟନ୍ତ ଲୁଗା କଲର କି ପ୍ରୟୋଜନ ? ଗାନ୍ଧିଜୀ ଅବଶ୍ୟ ସିଙ୍ଗର ସିଲେଇ କଳ ପର୍ଯ୍ୟନ୍ତ ଯାଇଥିଲେ । ଅଧ୍ୟାପକ ଲକଡ଼ାବାଲା ସିଙ୍ଗର ମେସିନ ଉପରେ ସାଇକେଲ୍ ପର୍ଯ୍ୟନ୍ତ ଯାଇ ପାରିଛନ୍ତି । ସେଥିରୁ ଆଉ ବେଶି ନୁହେଁ । ଦେଶର ବିଶାଳତା ଦୃଷ୍ଟିରୁ ଟ୍ରେନ, ଏୟାର ଲାଇନ ଅବଶ୍ୟ ଅପରିହାର୍ଯ୍ୟ । ତଥାପି ପ୍ରତିଦ୍ୱନ୍ଦ୍ୱିତାହୀନ ଗ୍ରାମୀଣ ଅର୍ଥନୀତିରେ ଏ ସବୁର ବା କି ପ୍ରୟୋଜନ ?

ଅଧ୍ୟାପକ ଲକଡ଼ାବାଲାଙ୍କ ପାଦରେ ହଳେ ମଟର ଟାୟାର ଚଟି, ପିନ୍ଧାରେ ଆଣ୍ଠୁ ନ ଲୁଚୁ ଖଦଡ଼ର ଧୋତି, ହାଫ-ସାର୍ଟ, ଚିବୁକତଳେ ଗୋଛାଏ ଦାଢ଼ି, ଆଖିରେ

ଝୁଲିଶା ଚଷମା, ମୁଣ୍ଡଟି ଚନ୍ଦା, କଣ୍ଠସ୍ୱରରେ କିନ୍ତୁ ମାଦକତା ସୃଷ୍ଟି କରିବା ପାଇଁ ଛଳନା ନାହିଁ ବା ଅଭିନୟ ନାହିଁ । ଯାହା ସେ ଅନ୍ତରର ସହିତ ବିଶ୍ୱାସ କରନ୍ତି, ତାହାକୁ ସେ ପ୍ରକାଶ କରନ୍ତି ନିତାନ୍ତ ନିରୀହ ଭାବରେ । ସେ ଶାନ୍ତ କଣ୍ଠରେ ଭାଷଣ ଦେଉଥିଲେ···'ଦାରିଦ୍ର୍ୟ ହେଉଛି, ମାନସିକତା । ଇଏ ଆଦୌ ଅର୍ଥନୈତିକ ନୁହେଁ । ଏ ସମ୍ପର୍କରେ ଦେଶରେ ଦରିଦ୍ରତମ ପଲ୍ଲୀ ଅଞ୍ଚଳର ଉଦାହରଣ ଦେଇ ସେ କହିଲେ, "ଏପରି କୌଣସି ଦରିଦ୍ରତମ ପଲ୍ଲୀ ଗ୍ରାମ ନାହିଁ, ଯେଉଁଠାରେ କୌଣସି ଅଭୁକ୍ତ ଆଗନ୍ତୁକ ଅଭୁକ୍ତ ଫେରିଛି ବା ଫେରିବ । ଯେଉଁମାନଙ୍କର ଦୁଇ ଓଳି ଚୁଲି ଜଳେନା ସେମାନେ ସୁଦ୍ଧା, ନିଜେ ଅଭୁକ୍ତ ରହି ଅତିଥି ପାଇଁ ଅନ୍ନ ବ୍ୟବସ୍ଥା କରିବେ । ସବୁ ଅର୍ଥନୈତିକ ଦାରିଦ୍ର୍ୟ ଭିତରେ ସେମାନଙ୍କର ମାନସିକ ଐଶ୍ୱର୍ଯ୍ୟ ହିଁ ସେମାନଙ୍କୁ ବଞ୍ଚାଇ ରଖି ପାରିଛି । ଦାରିଦ୍ର୍ୟ ନାମରେ ପହଲ ଦେଇ ଯଦି ସେମାନଙ୍କର ଏହି ମାନସିକ ଐଶ୍ୱର୍ଯ୍ୟକୁ ଲୋପ କରି ଦିଆଯାଏ, ତା'ହେଲେ ଦାରିଦ୍ର୍ୟ ଘୁଞ୍ଚିବ ନାହିଁ, ବରଂ ସେମାନେ ମାନସିକ ଦାରିଦ୍ର୍ୟରେ ଲଙ୍ଗୁ ହୋଇଯିବେ" ଇତ୍ୟାଦି ଇତ୍ୟାଦି ।

କିନ୍ତୁ ଅଧ୍ୟାପକ ଲକଡ଼ିବାଲାଙ୍କ ଭାଷଣ କାହା ମନକୁ ଘେନିଲା ନାହିଁ ପରି ! ସେ ଭାଷଣ ଶେଷକରିବା ପରେ ଔପଚାରିକ ରୀତିରେ ଗୋଟିଏ ଦୁଇଟି କ୍ଷୀଣ କରତାଳି ଅବଶ୍ୟ ପଡ଼ିଲା । ମାତ୍ର ତାହା ସମର୍ଥନ ପରିବର୍ତ୍ତେ ବିରୋଧକୁ ଯେପରି ସ୍ପଷ୍ଟତର କରି ଦେଉଥିଲା ।

ପ୍ରତିନିଧିମାନେ ବ୍ୟସ୍ତ-ବିବ୍ରତ ଭାବରେ ଘଣ୍ଟାଆଡ଼େ ଚାହିଁଲେଣି । ପ୍ରଚୁର ମଧ୍ୟାହ୍ନ ଭୋଜନପରେ ଦାରିଦ୍ର୍ୟ ସମ୍ପର୍କରେ ଆଉ ଆଲୋଚନା ଶୁଣିବା ପାଇଁ ସେମାନଙ୍କର ଧୈର୍ଯ୍ୟ ନ ଥିଲା ।

ସୁବୋଧର ମଧ୍ୟ ନ ଥିଲା । ସେ ଆଲୋଚନାଚକ୍ରରୁ ବାହାରି ଚାଲିଆସିଲା । ଇଏ ସବୁ ସମୟର ଘୋର ଅପଚୟ ଓ ବୌଦ୍ଧିକତାର ଅଭିନୟ ମାତ୍ର ।

ଖବରକାଗଜ ଦପ୍ତରରେ ରିପୋର୍ଟଟା ଟାଇପ କରୁ କରୁ ବାହାରେ ସନ୍ଧ୍ୟା ନଇଁ ଆସିଲା । ସୁବୋଧ ତାର ରିପୋର୍ଟରେ ଅଧ୍ୟାପକ ଲକଡ଼ିବାଲାଙ୍କ ଭାଷଣ ଓ ମନ୍ତବ୍ୟକୁ ଅଗ୍ରସ୍ଥାନ ଦେଇ ଯେଉଁ ଲେଖାଟି ପ୍ରସ୍ତୁତ କରିଥିଲା, ସେଥିରେ ଏ ଦେଶରେ ସବୁ କ୍ଷେତ୍ରରେ ଯେଉଁ ଆନ୍ତରିକତାହୀନ ଅଭିନୟ ଚାଲିଛି, ସେଥିପ୍ରତି ଥିଲା ତୀବ୍ର କଷାଘାତ । ବାର୍ତ୍ତା-ସମ୍ପାଦକ ରିପୋର୍ଟ ଉପରେ ନାଲି-ନେଳି ଛକି ପକେଇ ସୁବୋଧକୁ କହିଲେ, 'ଏହିପରି ଯଦି ତୁମେ ଗତି କର, ତା'ହେଲେ 'ବସ୍'ଙ୍କର ତୁମକୁ ଫାୟାର କରିବା ପାଇଁ ଆଉ ବେଶି ବିଳମ୍ବ ନାହିଁ । ବି କେୟାରଫୁଲ୍, ଇଫ୍, ନଟ୍ ଗୁଡ଼୍ ।' ସୁବୋଧ ବେପରୁଆ କଣ୍ଠରେ ଉତ୍ତର ଦେଲା, 'ହି ଇଜ୍ ୱେଲକମ୍ ।'

ବାହାରେ ସନ୍ଧ୍ୟାର ଛାୟା ଗଭୀର ହେଲଣି । ଗ୍ୟାସ ଆଲୋକରେ ରାସ୍ତାର ଚେହେରା ଅଲଗା । ଶାନ୍ତା ସାକ୍‌ସେନାର ବାର୍ଥ-ଡେ ପାର୍ଟିକୁ ଯିବା ପୂର୍ବରୁ ସେ

ଫ୍ଲାଟକୁ ଫେରି ପୋଷାକ ବଦଳେଇବା ପାଇଁ ଆଉ ତାର ଇଚ୍ଛା ହେଲନାହିଁ । ସେ ଗୋଟାଏ ପାର୍କ ବାହାରେ ଗାଡ଼ି ପାର୍କ କରି ଭିତରକୁ ଚାଲିଗଲା, ଘାସ ଲନ୍ ଉପରେ କିଛି ସମୟ ଚିତ୍ ହୋଇ ତାରାଙ୍କିତ ଆକାଶକୁ ଚାହିଁ, ଦିନର କ୍ଲାନ୍ତି ମେଣ୍ଟାଇବା ପାଇଁ । ମୁଣ୍ଡର କହରା ବାଳଗୁଡ଼ାକ ଉପରେ ଲମ୍ବା ଲମ୍ବା ଆଙ୍ଗୁଳି ଚଳାଇ ଦେଇ ସେ ଯେପରି ନିଜକୁ ନିଜେ କହିଲା—'ଏମିତି ବି ଚଳିବ ।'

ଶିରି ଶିରି ପବନ ଓ ସନ୍ଧ୍ୟାର ଅନ୍ଧକାରରେ ଅନ୍ତତଃ କୌଣସି ଅଭିନୟ ନାହିଁ ।

ନମ୍ବର ଊନ୍ ମୁନଲାଇଟ କଲୋନୀର ସୁବିସ୍ତୀର୍ଣ୍ଣ ପରିସର ଭିତରକୁ ଗାଡ଼ି ଚଳାଇ ନେବାବେଳେ ସୁବୋଧକୁ ଲାଗିଲା ସେ କେଉଁ ଭୁଲ ଠିକଣାରେ ପହଞ୍ଚି ନାହିଁ ତ ? ନା—ଏ ତ ନମ୍ବର ୭ ମୁନଲାଇଟ କଲୋନୀ; ଏହାସହିତ ସେ ବେଶ୍ ପରିଚିତ । ସନ୍ଦେହ ଦୂର କରିବା ପାଇଁ ସେ ଗାଡ଼ି ଷ୍ଟାର୍ଟକଡ଼ର ଇଉକାଲିପଟାସ ଓ ଜାକରନ୍ଦା ଗଛଗୁଡ଼ାକୁ ପୁଣି ଥରେ ଚାହିଁଲା । ନା—ତା'ର କୌଣସି ଭୁଲ ହୋଇନାହିଁ । କିନ୍ତୁ ଆଜି ଶାନ୍ତା ସାକ୍ସେନାର ବାର୍ଥ-ଡ଼େ ପାର୍ଟି । ପୋର୍ଚ୍ଚ ତଳେ ଶାନ୍ତାର ଇମ୍ପୋର୍ଟେଡ୍ ଲିମୋସିନ ଗାଡ଼ିଟା ବ୍ୟତୀତ ଏତେ ବଡ଼ ହତା ଭିତରେ ଆଉ କୌଣସି ଗୋଟାଏ ହେଲେ ଗାଡ଼ି ଆଖିରେ ପଡ଼ୁନାହିଁ କିମ୍ବା କେହି ଜଣେ ହେଲେ ଲୋକ ଆଖିରେ ପଡ଼ୁ ନାହାନ୍ତି । ଏତେ ବଡ଼ ହତା ଓ ପ୍ରକାଣ୍ଡ ଦୋତାଲା ଘରଟା ଶୂନଶାନ ଲାଗୁଛି । କାଚଅଣ୍ଟା ଝରକା ଓ ଦରଜାଗୁଡ଼ାକର ନେପଥ୍ୟରେ ଉଜ୍ଜ୍ୱଳ ଆଲୋକସବୁ ପରିବେଶର ନିର୍ଜ୍ଜନତାକୁ ଯେପରି ଆହୁରି ବଢ଼ାଇ ଦେଉଛି । ଏମାନେ ସବୁ ଗଲେ କୁଆଡ଼େ ?

ବିଭ୍ରାନ୍ତ ଭାବରେ ସୁବୋଧ କାର୍ ଭିତରୁ ବାହାରି ଆସିବା ପରେ ବାରନ୍ଦାରେ ଦେଖାହେଲା ଉର୍ଦ୍ଦିପିନ୍ଧା ପରିବାର ଜଣେ ପୁରୁଣା ଭୃତ୍ୟ ସହିତ । ସୁବୋଧକୁ ଦେଖି ସେ ସଲାମ ଠୁକି ତାକୁ ଅଭ୍ୟର୍ଥନା ଜଣାଇ କହିଲା, 'ଅନ୍ୟମାନେ କେହି ଏ ପର୍ଯ୍ୟନ୍ତ ଆସି ନାହାନ୍ତି ।'

'ବ୍ୟାପାର କ'ଣ ?'

ଭୃତ୍ୟ ଉତ୍ତର ଦେଲା, ସାଢ଼େ ଆଠଟାରେ ନିମନ୍ତ୍ରଣ ଥିଲା । ସୁବୋଧ ଘଡ଼ିକୁ ଚାହିଁ ଦେଖିଲା ସେଇ ସାଢ଼େ ଆଠଟାରେ ହାତବନ୍ଧା ଘଡ଼ିଟା କିପରି ବନ୍ଦ ହୋଇ-ଯାଇଛି । ଚାବି ଦେବାପାଇଁ ସୁବୋଧ ଭୁଲିଯାଇଛି ପରା !

ସୁବୋଧର ଅସ୍ୱସ୍ତିକର ପରିସ୍ଥିତିକୁ ସହଜ କରିନେବା ଉଦ୍ଦେଶ୍ୟରେ ଭୃତ୍ୟଟି ମୃଦୁସ୍ୱର କଣ୍ଠରେ କହିଲା, 'ଭିତରେ ଡ୍ରଇଂ-ରୁମ୍‌କୁ ଯାଆନ୍ତୁ । ଶେଠଜୀ ତାଙ୍କ ବେଡ୍ ରୁମ୍‌ରେ ବିଶ୍ରାମ ନେଉଛନ୍ତି ।'

ଆଉ ଫେରିଯାଇ ଲାଭ ନାହିଁ । ସୁବୋଧ ଡ୍ରଇଂ ରୁମ୍ ଭିତରକୁ ଆସିଲା । ଡ୍ରଇଂ ରୁମ ନିର୍ଜନ । ଜଣେ ଭୃତ୍ୟ ଡ୍ରଇଂ ରୁମର ସୋଫା ଓ ସେଣ୍ଟରପିସ୍‌ଗୁଡ଼ାକୁ ଝାଡ଼ଣରେ ଝାଡ଼ି ପରିଷ୍କାର କରୁଥିଲା ଆଉ ଜଣେ ସଦ୍ୟତୋଳା ଫୁଲସବୁ ବିଭିନ୍ନ ଆକାରର ଫୁଲଦାନିମାନଙ୍କରେ ସଜାଇ ରଖୁଥିଲା । ଏଇ ଗୃହସ୍ଥଳୀରେ ସୁବୋଧ ଅପରିଚିତ ନୁହେଁ । ଭୃତ୍ୟମାନେ ତାକୁ ଅଭ୍ୟର୍ଥନା ଜଣାଇ ବସିବା ପାଇଁ ଅନୁରୋଧ କଲେ ।

କିନ୍ତୁ ସୁବୋଧ ଭାରି ରେଷ୍ଟଲେସ୍ । ସେ ପଚାରିଲା, 'ମେମ୍ ସାହାବ କାହାନ୍ତି ?'

ପାର୍ଟିରେ ତ ଅନେକଙ୍କ ମେଳରେ ଶାନ୍ତା ସହିତ ଦେଖା ହେବ । କିନ୍ତୁ ଏଇ ନିର୍ଜନ ଘର ଭିତରେ ବହୁଦିନ ପରେ ଥରେ ଶାନ୍ତା ସହିତ ଆଜି ତାର ଜନ୍ମଦିନରେ ଦେଖା ହୋଇଗଲେ, ସେ ବିସ୍ମିତ ହେବ ନିଶ୍ଚୟ । ତାକୁ ଆକସ୍ମିକ ଭାବରେ ବିସ୍ମିତ କରିବାରେ ମଧ୍ୟ ଏକ ଉତ୍ତେଜନା ଅଛି ।

'ମେମ୍‌ସାହେବ ବେଡ୍ ରୁମରେ'—ଜଣେ ଉତ୍ତର ଦେଲା ।

ଶାନ୍ତାକୁ ଆଜି ବିସ୍ମିତ କରାଇବାକୁ ଚାହେଁ ସୁବୋଧ । ଏଇ ବିସ୍ମୟ ଯେପରି ତାର ଜନ୍ମଦିନ ଭେଟି । ସତର୍କିତ ପାଦରେ କାର୍ପେଟବିଛା ସିଡ଼ି ଉପରେ ସେ କ୍ଷିପ୍ର ପାଦରେ ଉଠିଗଲା, ଉପର ମହଲରେ ଶାନ୍ତାର ବେଡ୍‌ରୁମ୍ ଆଡ଼କୁ ।

ଶାନ୍ତା ବେଡ୍ ରୁମର କବାଟ ଭିତରୁ ବନ୍ଦ କରିନାହିଁ । ଅଳ୍ପ ଫାଙ୍କବାଟେ ଭିତରର ଅଳୁଅ ମୋଟା ପରଦା ଉହାଡ଼ରେ ବାହାରକୁ ଦେଖାଯାଉଛି । ସୁବୋଧର ଆଖି ଦୁଇଟା ଦୁଷ୍ଟାମିରେ ଉଜ୍ଜ୍ୱଳ ହୋଇଉଠିଲା । ସୁବୋଧକୁ ବହୁଦିନର ବ୍ୟବଧାନ ପରେ ଏପରି ଅବେଳରେ ପୁଣି ଏତେ ନିରୋଳାରେ ପାଇଲେ ଶାନ୍ତା ପ୍ରଥମେ ଖୁବ୍ ବିସ୍ମିତ ହେବ ନିଶ୍ଚୟ । ବାହାରେ କବାଟ ଉହାଡ଼ରେ ଛିଡ଼ାହୋଇ ପରଦା ଅଳ୍ପ ଫାଙ୍କ କରି ଭିତରକୁ ଚାହିଁ ଦେଖିଲା ।

ଶାନ୍ତା ଡ୍ରେସିଂ-ମିରର୍ ସାମନାରେ ଖଣ୍ଡେ ନରମ ମେହଗାନି ଟୁଲ ଉପରେ ବସିଛି ଆତ୍ମ-ନିମଜ୍ଜିତ ହୋଇ । ଅଇନାରେ ନିଜର ଚେହେରାକୁ ଚାହିଁ ସେ ଯେପରି ତାର ପରିସ୍ଥିତି ଓ ପରିବେଶ ସବୁ ଭୁଲିଯାଇଛି । ଡ୍ରେସିଂ-ମିରର୍ ସାମନାରେ ରଖା-ଯାଇଥିବା କସ୍‌ମେଟିକ୍‌ସ ଶିଶି, ପଟ ଓ ବେଶମାନଙ୍କ ପରି ଶାନ୍ତା ମଧ୍ୟ ସ୍ଥାଣୁ ହୋଇ-ପଡ଼ିଛି । ଅଇନାରେ ଶାନ୍ତାର ପ୍ରତିଛାୟା ତାକୁ ଯେପରି ସମ୍ମୋହିତ କରି ଦେଇଛି ।

ଶାନ୍ତା ନୂଆ ମେକ୍-ଅପ୍ ନେବା ପୂର୍ବରୁ ମୁହଁରୁ ସବୁ ମେକ୍-ଅପ୍ ଛଡ଼ାଇ ଦେଇଛି । ମେକ୍-ଅପ ତଳେ ପୁଣି ଲୁଚି ରହିଥାଏ, ନାରୀର ମୁହଁରେ କେତେ କୁଟିଳ

ରେଖା, ବୟସର ଏତେ ଗହୀର ଦାଗ, ଦୁଇ ଆଖି କୋଣରେ କେତେ କୁଞ୍ଚନ, କେତେ ବଳୁପତା ।

ସୁବୋଧର ଅବସ୍ଥା ସ୍ତମ୍ଭିତ ପକ୍ଷଭ୍ । ଶାନ୍ତାର ଯେଉଁ ରେଶମୀ ବକ୍ଷକଞ୍ଚ ହେଉଥିବାର ବନ୍ଧୁ ନାରୀଙ୍କର ଈର୍ଷାର ବସ୍ତୁ, ପୁଣି ସୁବୋଧ ପରି ବନ୍ଧୁ ବନ୍ଧୁମାନଙ୍କର ପ୍ରଶଂସାର କେନ୍ଦ୍ରବିନ୍ଦୁ, ଶାନ୍ତାର ଅନନ୍ତ ଯୌବନର ଯାହା ଦର୍ପିତ ଇସ୍ତାହାର, ତାହା ଯେ ଗୋଟାଏ ନକଲ୍ ପରଚୂଲା ଗୋଟାଏ ଫଲ୍ସ, ସୁବୋଧ ନିଜ ଆଖିରେ ଆଜି ଦେଖି ନ ଥିଲେ, ଶୁଣା କଥାରେ କେବେ ବିଶ୍ୱାସ କରିପାରି ନ ଥାନ୍ତା । ପରଚୂଲା ମଧ୍ୟ ପଡ଼ିଛି, ଡ୍ରେସିଂ ଟେବୁଲ ଉପରେ ।

ଶାନ୍ତାର ମୁଣ୍ଡବାଳ କେଉଁଦିନୁ ଅଧେ ଚନ୍ଦା ହୋଇଗଲଣି । ଚନ୍ଦା ଅଂଶଟା ଇଲେକ୍ଟ୍ରିକ୍ ଆଲୁଅରେ ଚକ୍ ଚକ୍ କରୁଛି । ଚନ୍ଦା ଚାରିପଟେ କେଇକେରା ବିବର୍ଣ୍ଣ କେଶ ଝୁଲି ପଡ଼ିଛି । ଶାନ୍ତା ହସୁଛି, ଏକ ପ୍ରେତିନୀ ପରି । ତା'ର ଦୁଇ ବଙ୍କିମ ଭ୍ରୂଲତା ସୁଦ୍ଧା ଫଲ୍ସ । ପ୍ରତିଦିନ ଶାନ୍ତା ତାକୁ ନିଜ ହାତରେ ଚିତ୍ର କରେ ପରା !

ସୁବୋଧ ସନ୍ତର୍ପିତ ପାଦରେ ପିଞ୍ଜରେ ତଳକୁ ପୁଣି ଓହ୍ଲେଇ ଆସିଲା । ତା'ର ପାଦରେ ଜମ୍ମୁ ଯେପରି ଶକ୍ତି ନ ଥିଲା କିମ୍ବା ଶାନ୍ତାର ବାର୍ଥ-ଡେ ପାର୍ଟିରେ ଯୋଗ ଦେବାର ପୂର୍ବ ଉତ୍ତେଜନା ନଥିଲା ।

ଶାନ୍ତା ସାକ୍ସେନା ଯେପରି ପ୍ରତାରଣାମୟୀ ରାଜଧାନୀର ଛଳନାମୟୀ ପ୍ରତୀକ !!



[ ଝଙ୍କାର—୧୬ ବର୍ଷ ବିଷୁବ ସଂଖ୍ୟା ]

# ଫାଲ୍‌ଗୁନ ଜ୍ୟୋତ୍ସ୍ନା

ରାତି ବାରଟା ଅତିକ୍ରମ କରିଗଲଣି । ଦୁଇ ଦୁଇଟା କାମ୍ପୋଜ ବଟିକା ସତ୍ତ୍ୱେ ହୃଦୟ ବାବୁଙ୍କ ଆଖିରେ ନିଦ ନାହିଁ । ନା···କାମ୍ପୋଜ ଏବେ ଅଚଳ ହୋଇ ପଡ଼ିଲଣି ! ଆଉ କାମ ଦେଉନାହିଁ ! ଏହି ଅଳ୍ପ ସମୟ ପୂର୍ବେ ବାହାରେ, ନିର୍ଜନ ରାସ୍ତାରେ, କୌଣସି ବାର୍ ବା ହୋଟେଲରୁ ଫେରୁଥିବା କୌଣସି ମାତାଲର ଶିଥିଳ ପାଦଶବ୍ଦ ଶୁଣା ଯାଉଥିଲା···ପାଦ କେତେବେଳେ ବାଙ୍କୁ, କେତେବେଳେ ତାହାଣକୁ ପଡ଼ୁଛି··· ଠପ୍, ଠପ୍ । ରାତିର ନିଶୁତି ଆଉ ସେଇ ନିଦ୍ରାହୀନ ଉତ୍ପୀଡ଼ିକ ମୁହୂର୍ତ୍ତରେ ମାତାଲର ପାଦଶବ୍ଦ ପ୍ରତିଧ୍ୱନି ହୋଇ କିଛି ପରିମାଣରେ ହୃଦୟ ବାବୁଙ୍କର କ୍ଲାନ୍ତିକର ଚିନ୍ତାକୁ ଭାଙ୍ଗି ଦେଉଥିଲା । ତାଙ୍କର ସେଇ ନିଃସଙ୍ଗ ଘଟଣାବିହୀନ ନିର୍ଜନ ଦୁନିଆଁରେ କିଛି ହେଲେ ବି ଗୋଟାଏ ଘଟଣା ଘଟୁଛି ! କେହି ଜଣେ ଜୀବନ୍ତ ମଣିଷ ହାତ ପାଆନ୍ତାରେ ରହିଛି, ଏହିପରି ଭାବନା ହୃଦୟ ବାବୁଙ୍କୁ ଆରାମ ଦେଉଥିଲା ।···ମାତ୍ର ସେ ପାଦଶବ୍ଦ ବି ଦୂରରେ ମିଳେଇ ଗଲଣି ।

ବାହାରେ ଫାଲ୍‌ଗୁନ ରାତ୍ରିର ସ୍ୱୈରିଣୀ ଜ୍ୟୋତ୍ସ୍ନା···ଦକ୍ଷିଣ ପଟର ଝରକା ବାଟେ—ସେଥିରୁ ଟିକେ ପଡ଼ୁଛି ଆସି ହୃଦୟ ବାବୁଙ୍କ ଚଉଡ଼ା ଶୁଭ୍ର ଆଉ ନିର୍ଜନ ବିଛଣା ଉପରେ ।

ସମସ୍ତ ବୃଥା !···ଦିନେ ବିଛଣା ଉପରେ ଏଇ ଟିକେ ଜହ୍ନ ଆଲୁଅ, ହୃଦୟ ବାବୁଙ୍କ ପ୍ରତି ସ୍ନାୟୁ କେନ୍ଦ୍ରରେ, ତନ୍ତ୍ରୀରେ ତନ୍ତ୍ରୀରେ ଜାଳି ଦେଇ ଯାଉଥିଲା ନିଆଁର ଫୁଲ୍‌କି ! ଆଜି ବ୍ୟାଧି ଆଉ ଅକାଳ ବାର୍ଦ୍ଧକ୍ୟର ପାଉଁଶ ତଳେ ସେଦିନର ସେ ଉତ୍ତାପ ଶୀତଳ ପଡ଼ିନାହିଁ । ଆଜି ବି ବିଛଣା ଉପରେ ସେଇ ଜ୍ୟୋତ୍ସ୍ନା; ଫାଲ୍‌ଗୁନର ସେଇ ରାତ୍ରି, ସେଇ ଶିରଶିର ଦକ୍ଷିଣା ପବନ ! ସେଦିନ ଗୋଟିଏ ରତିକ୍ଲାନ୍ତା ନବବଧୂର ଶିଥିଳ ବେଶବାସ ତଳେ ଏଇ ଜ୍ୟୋତ୍ସ୍ନା, ତା'ର ଅଙ୍ଗରେଖା ସବୁକୁ ଯେପରି ଆଉରି ତୀବ୍ର ଆଉରି ତୀକ୍ଷ୍ଣ କରି ଦେଉଥିଲା । ମାତ୍ର ଇତି ମଧ୍ୟରେ ବୟସର କୃପାରେ ସେ ଆଜି ମେଦୁଲା ଗୃହିଣୀ । ଧର୍ମରେ କର୍ମରେ ଭାରି ମତି । ଦେଉଳ, ଠାକୁର ଘରେ, ଦିନର ଅଧେ ବେଳ କଟୁଛି । ସେଥିରେ ପୁଣି, ରାତିରେ ବିଛଣାକୁ ଆସିବା ମାତ୍ରେ ଦୀର୍ଘ ସମୟ ଧରି ନାମଜପ ! କେବେ କେବେ ଚିନ୍ତା ଭାଙ୍ଗିବା ପାଇଁ ତାଙ୍କ ସହିତ ସାମାନ୍ୟ ରସିକତା ଆରମ୍ଭ କଲେ, କି ଚିତ୍କାର ! ଚରିତ୍ରହୀନ ବୋଲି କି ବିସ୍ଫୋରଣ !

…ଦୁଇ ଦିନ ହେଲା, ସେ ଯାଇଛନ୍ତି ଶ୍ରୀକ୍ଷେତ୍ର । କି ଗୋଟାଏ ଦ୍ୱାଦଶୀ ଯୋଗ, ବହୁ ବର୍ଷ ପରେ ପଡ଼ିଛି ! ଏ ଯୋଗରେ ମହୋଦଧିରେ ସ୍ନାନ କରି, କଳାଶ୍ରୀମୁଖ ଦର୍ଶନ କଲେ, କୁଆଡ଼େ ଅକ୍ଷୟ ପୁଣ୍ୟ ମିଳେ ! ସପ୍ତାହେ ତ ଅନ୍ତତଃ ସେ ଆଉ ସେ ରହିବେ । ଠିକ୍ ଅଛି ! ଏ ସପ୍ତାହକ ହୃଦୟ ବାବୁଙ୍କୁ ଅଖଣ୍ଡ ସ୍ୱାଧୀନତା ମିଳିଛି ! କିନ୍ତୁ ଆରଥ୍ରାଇଟିସ ପୀଡ଼ିତ ଅପଙ୍ଗ ଦେହ ଯେଣୁ ଏ ସ୍ୱାଧୀନତା ନେଇ ସେ କ'ଣ ବା କରିବେ ? ଫାଲ୍‌ଗୁନର ଦକ୍ଷିଣା ପବନ ଆଉ ଏଇ ଚପଳ ଜ୍ୟୋତ୍ସ୍ନାକୁ ବିଛଣାରେ ପଡ଼ି ପଡ଼ି ସନ୍ତୃଷ୍ଟ ବିନିଦ୍ର ଅକ୍ଷିରେ ଗୃହି ଗୃହି ହା ହତାଶ ହେବା କେବଳ ସାର ହେବ ଯିନା…ତଥାପି ଏ ମୁକ୍ତି, ଏ ସ୍ୱାଧୀନତା ଭାରି ଲୋଭନୀୟ ! ଘଣ୍ଟା ସମୟ ଜଗି ଔଷଧ ବଟିକା ଗିଳିବାପାଇଁ ତାଗିଦ ନାହିଁ ; ବ୍ଲଡ଼ ପ୍ରେସର, ସୁଗରର ଭୂତଭୟ ନାହିଁ; ହୁଇଲ୍ ଚେଆରରେ ବସି ବସି ଗୀତା ଭାଗବତ ପଢ଼ିବା ପାଇଁ ସଦୁପଦେଶ ନାହିଁ; ଦେହ ଆରୋଗ୍ୟ ପାଇଁ ପ୍ରତି ସପ୍ତାହରେ ଅନ୍ତତଃ ଜଣେ ଜଣେ ନୂଆ ବାବା, ବାବାଜୀଙ୍କୁ କୁଆଡ଼ୁ ଧରି ଆଣି, ହୃଦୟ ବାବୁଙ୍କ ପାଖରେ ବସାଇ ଶାନ୍ତି ଦେବା ନାହିଁ; ଅକାଳେ ସକାଳେ ହୁଇସ୍କି ଗ୍ଲାସଟା ଧରି ବସିଲେ, ଚିତ୍କାର, ଆର୍ତ୍ତନାଦ ନାହିଁ, ଚଣ୍ଡାଳ ବୋଲି ଆକ୍ଷେପ ନାହିଁ ! …କିନ୍ତୁ ଏଇ ନିଃସଙ୍ଗତା, ଏଇ ନିର୍ଜନତା ଭାରି ଉତ୍ପୀଡ଼କ ! ଗୃହିଣୀଙ୍କ ସହିତ କଳହ ମଧ୍ୟରେ ଅନ୍ତତଃ ଚିଟା ଲାଗେ । ଏତେଟା ନିଃସଙ୍ଗ, ନିର୍ଜନ ମନେହୁଏ ନାହିଁ । ଇଏ ଉତ୍କଟ ଧାର୍ମିକତ୍ୟରସ ! ଗୃହିଣୀ ସୁରମା ଦେବୀ ତୀର୍ଥାଟନରେ ଯିବା ପରେ ପରେ, ଶୂନ୍ୟତା, ନିଃସଙ୍ଗତା ପୁଷ୍ପକାହାଳ ପରି, ହୃଦୟ ବାବୁଙ୍କୁ ଆଚ୍ଛନ୍ନ କରି ଯାଇଛି ।

…ଆଜି ଫାଲ୍‌ଗୁନର ଏଇ ସୁରଭିତ ରାତ୍ରି ! ଏଇ ଜ୍ୟୋତ୍ସ୍ନା ! ଦକ୍ଷିଣାର ଏଇ ଚପଳତା ! ଆଉ ଏଇ ନିର୍ଜନ, ନିଃସଙ୍ଗତା ! ଏଇ ଅପାଙ୍ଗ ଦେହ !

ତକିଆ ତଳୁ, ସିଗାରେଟ୍ କେସ୍ କାଢ଼ି, ଖଣ୍ଡେ ସିଗାରେଟ୍‌ରେ ନିଆଁ ଲଗାଇବା ପାଇଁ ଚେଷ୍ଟାକଲେ ହୃଦୟ ବାବୁ । ସିଗାରେଟ୍‌ରେ ନିଆଁ ଧରାଇବା ପାଇଁ କଷ୍ଟ ହୁଏ ତାଙ୍କୁ । ଖୋଲା ଝରକା ବାଟେ, ଶିରଶିର ପବନରେ ଦିଆସିଲି କାଠି ସବୁ ଜଳିବା ମାତ୍ରେ ନିଭି ଯାଉଛି । ଅନେକ ଥର ଚେଷ୍ଟା କରିବା ପରେ ହୃଦୟ ବାବୁ ଖଣ୍ଡେ ସିଗାରେଟ୍‌ରେ ନିଆଁ ଲଗାଇ ଆରାମରେ କଲେ ଧୂଆଁ ଛାଡ଼ିଲେ । ଜହ୍ନ ଆଲୁଅରେ ସିଗାରେଟ୍ ଧୂଆଁର କୁଣ୍ଡଳୀ ! ଗୋଟାଏ ପାହାଡ଼ ଚୂଡ଼ା ଉପରେ ଉଠି ପାରିଥିବାର ତୃପ୍ତି ଅନୁଭବ କଲେ ହୃଦୟ ବାବୁ ।

ଅଥଚ କିଏ ଆଜି ବିଶ୍ୱାସ କରିବ, ଦିନେ ଯୌବନରେ ହୃଦୟବାବୁ ଥିଲେ ଅକ୍ଳାନ୍ତ ଶିକାରୀ । ରାଇଫଲ୍ ଧରି ପାହାଡ଼ ଜଙ୍ଗଲରେ ଶିକାର ପାଇଁ ତାଙ୍କର ଥିଲା

ଦୁର୍ବଳ ନିଶା । କନଜର୍‌ଭେଟର୍ ଅଫ୍ ଫରେଷ୍ଟ ଭାବରେ, ତାଙ୍କର ଜୀବନ ପ୍ରାୟ ଅତିବାହିତ ହୋଇଥିଲା, ପାହାଡ଼ ଜଙ୍ଗଲରେ ।

ରାତିର ନିସ୍ତବ୍ଧ ଭିତରେ ବଗିଚ୍ଚାରେ ଶୁଭିଲା, ଗୋଟାଏ ଖସ୍ ଖସ୍ ଶବ୍ଦ, ମଣିଷର ପାଦଶବ୍ଦ ପରି । ନା···ଇଏ ବୋଧହୁଏ ହୃଦୟ ବାବୁଙ୍କର ଶୁଣିବାରେ ଭ୍ରମ । ରାସ୍ତାର କେଇଟା ବୁଲା କୁକୁର ଭୁକି ଉଠିଲେ; ପଡ଼ଶାଘରର ମହାପାତ୍ର ବାବୁଙ୍କ ଆଲ୍‌ସେସିଆନ୍‌ଟା କେଇଥର ଭୁକି ଉଠି ନୀରବ ହୋଇଗଲା । ପୁଣି ସବୁ ଚୁପ୍ ଚାପ୍ ।

ହୃଦୟ ବାବୁ ପୁଣି ଫେରି ଆସିଲେ, ଅତୀତର ବେଦନାମଧୁର ସ୍ମୃତିଲୋକକୁ । ଏପରି ଅପଙ୍ଗ ଦେହରେ, ହୃଦୟ ବାବୁ ନିଜେ ସୁଦ୍ଧା ବିଶ୍ୱାସ କରିପାରୁ ନଥିଲେ, ତାଙ୍କର ଦୁରନ୍ତ, ବଲ୍‌ଗାମୁକ୍ତ ଯୌବନର ସେଇ ଦିନ ଗୁଡ଼ିକୁ ।

ସେଦିନ ହୃଦୟ ବାବୁଙ୍କର ରାତି ପରେ ରାତି କଟୁଥିଲା, ନିର୍ଜନ, ପରିତ୍ୟକ୍ତ ଫରେଷ୍ଟ ବଙ୍ଗଳାମାନଙ୍କରେ । କିନ୍ତୁ ଦିନେ ଥରକ ପାଇଁ ସୁଦ୍ଧା, ସେ କେବେ ଅନୁଭବ କରୁ ନଥିଲେ, ନିଃସଙ୍ଗତାର ଦଂଶନ ! ନିର୍ଜନତାର ଯନ୍ତ୍ରଣା ! ଅରଣ୍ୟର ଚେହେରା ସେଦିନ ତାଙ୍କୁ ମୁଗ୍ଧ, ବାଉଳା କରି ଦେଇଥିଲା । ମାୟା ହରିଣୀର ଆଖି ତାଙ୍କୁ ପାଗଳ କରୁଥିଲା ।

ଜୀବନରେ ପଦଟିଏ କବିତା ତ ସେ ଲେଖି ପାରିଲେ ନାହିଁ ! ଲେଖିଛନ୍ତି ବା ଲେଖିବା ପାଇଁ ସେ ଚେଷ୍ଟା କରିଛନ୍ତି, ଅନେକ ଥର । କିନ୍ତୁ କୌଣସି ଥର ନିଜ ଲେଖା କବିତା ତାଙ୍କ ମନକୁ ପାଏନାହିଁ । ହୃଦୟର ସେଇ ଅଦ୍ଭୁତ ଆବେଗ ଆଉ ସ୍ପନ୍ଦନ ସବୁ କାଗଜ କଲମରେ ଠିକ୍ ଧରା ପଡ଼ନ୍ତି ନାହିଁ । ହୃଦୟ ବାବୁଙ୍କ ମନକୁ ସେସବୁ ପାଏନାହିଁ । ସ୍ୱପ୍ନ ଯେତେବେଳେ ସାକାର ହୁଏ, ତା'ର ଚେହେରା ବୋଧ-ହୁଏ ଏଇପରି ଅପୂର୍ଣ୍ଣ ଏଇପରି ବିବର୍ଣ୍ଣ ମନେହୁଏ । ଲେଖା କବିତା ସବୁ, ସେ ଚିରି ଫିଙ୍ଗି ଦିଅନ୍ତି ।

କିନ୍ତୁ ହୃଦୟ ବାବୁ ତଥାପି ରହି ଅଛିନ୍ତି, ହେଇ ସ୍ୱପ୍ନ ପ୍ରବଣ ରୋମାଣ୍ଟିକ ! ସେଇ କବିପ୍ରାଣ !

ହଠାତ୍ ଖୋଲା ଝରକାର ଗ୍ରୀଲ୍ ବାହାରେ ଜହ୍ନ ଆଲୁଅର ପୃଷ୍ଠଭୂମିରେ ଦେଖାଗଲା, ମଣିଷ ମୁଣ୍ଡର ଗୋଟାଏ ସିଲୁଟ୍ । ହୃଦୟ ବାବୁ ଚମକି ଉଠିଲେ । ବ୍ୟାପାର ବୃତ୍ତାନ୍ତ କିଛି ବୁଝି ପାରିଲେ ନାହିଁ । ଗ୍ରୀଲ୍ ବାହାରେ ଲୋକଟା କିଛି ଗୋଟାଏ ଯନ୍ତ୍ରରେ ଗ୍ରୀଲ୍‌ର ରଡ଼୍‌ଗୁଡ଼ାକୁ ବୋଧହୁଏ କାଟିବା ଆରମ୍ଭ କରିଛି । ଗ୍ରୀଲ କାଟିବାର ଯାନ୍ତ୍ରିକ ଶବ୍ଦ ଶୁଭୁଛି କ୍ଷୀଣ ଭାବରେ, କିନ୍ତୁ ଅସ୍ପଷ୍ଟ ନୁହେଁ !

ଲୋକଟା ନିଶ୍ଚୟ ଗୋଟାଏ ଚୋର ବା ଡକାୟତ । ଗୃହର ମଙ୍ଗଳଆଲୁଅ ତାଙ୍କ ଲଭ ନାହିଁ । ଡାକରେ ସେ ସହଜରେ ଉଠିବ ନାହିଁ । ତା'ପାଇଁ ଦରକାର ଫାୟାର ବ୍ରିଗେଡ୍ ଘଣ୍ଟି । ଗଞ୍ଜେଇ ଟାଣି, ସେ କୋଉଠି ନର୍ଦ୍ଦମା ଶୋଇ ପଡ଼ିଥିବ । ଝଟ ଗଦାତଳୁ ହୃଦୟ ବାବୁ ଶଲଭଲଭର୍‌ଟା କାଢ଼ି ବାହାର କରିବା ପାଇଁ ଚେଷ୍ଟା କଲେ । ତାଙ୍କର ମନେ ପଡ଼ିଗଲା, ଶଲଭଲଭର୍‌ଟା ଲୋଡେଡ୍ ନୁହେଁ । ଲୋଡେଡ୍ ପିସ୍ତଲ୍ ବିଛଣାରେ ତକିଆ ତଳେ ରଖି ଶୋଇଲେ, ସୁରମା ଦେବୀଙ୍କୁ ଭଲ ନିଦ ହୁଏ ନାହିଁ ! ତା'ହେଲେ ପିସ୍ତଲ ରଖି ଲଭ କ'ଣ ? କିନ୍ତୁ ନାସ୍ତିମାନେ ତ ଆଉ ମୂର୍ଖ ବୁଝନ୍ତି ନାହିଁ ! ସେ ଲୋକଟା ସେତେବେଳକୁ ଝରକା ବାଟେ ଉଠି ଘର ଭିତରକୁ ଆସି ସାରିଥିଲା ।

ହୃଦୟ ବାବୁ ବେଡ଼୍‌ଲାଇଟ୍‌ର ସୁଇଚଟା ଚିପି ଦେଲେ । ଫିକା ନୀଳ ଆଲୋକରେ ସେ ଲୋକଟାର ଚେହେରା ଦେଖି ହୃଦୟ ବାବୁ ମନେ ମନେ ଆତଙ୍କିତ ହୋଇ ଉଠିଲେ । ସେ ଲୋକଟା ପିନ୍ଧିଥିଲା, ଖଣ୍ଡେ କଳା କଚ୍ଛିଆ, ଚଉଡ଼ା ଛାତିରେ ଛାତିଏ ବାଳ । ବେକରୁ ଝୁଲୁଥିଲା, କଳା ସୂତାରେ, ଗୋଟାଏ ଘୁରିକଣିଆ ତାବିଜ । ଦୁଇଟା ମୋଟା ମୋଟା କୁଣ୍ଡଳୀ ମୋଡ଼ା ନିଶ । ମୁଣ୍ଡରେ ବାନ୍ଧିଥିଲା ଖଣ୍ଡେ କଳା ରୁମାଲ୍ ।

ଲୋକଟା ଏ ଲାଇନରେ ନୂଆ ପାଦ ଦେଇଛି ବୋଧହୁଏ ! ହୃଦୟ ବାବୁଙ୍କ ଆଡ଼େ ଚାହିଁ ସେ ଯେପରି କିଂକର୍ତ୍ତବ୍ୟବିମୂଢ଼ ହୋଇ ଉଠିଲା ।

ହୃଦୟ ବାବୁ ମନେ ମନେ ଭାବିଲେ, ଇଏ ମନ୍ଦ ନୁହେଁ । ଯାହା ଲୁଟିବାର ସେ ଲୁଟି ନେଉ । ତାକୁ ବାଧା ଦେବାର ଶକ୍ତି ହୃଦୟ ବାବୁଙ୍କର ତ ନାହିଁ ! କିନ୍ତୁ ଜଣେ ମଣିଷର ସାନ୍ନିଧ—ସେ ହେଉନା ପଛେ ଡକାୟତ—ଏଇ ଚଟାଧରା ନିଶୁନ୍ଥ ଭିତରେ ମନ୍ଦ କ'ଣ ?

ହୃଦୟ ବାବୁ କହିଲେ···'ବସ, ବସ ହେ । ଅସ୍ଥିର ହେଉଛ କାହିଁକି ? ମୁଁ ତୁମକୁ ଏଇ ଷ୍ଟିଲ ଆଲମିରା ଚାବି ଦେଉଛି । ଭୁଜା ଫୁଟା କାଢ଼ି ଦେଖାଇବାର ଦରକାର ପଡ଼ିବ ନାହିଁ । ସବୁ ବଡ଼ ବଡ଼ ଧନୀ ଲୋକେ ତୁମର ସ୍ୱଗୋତ୍ର ହେ ବନ୍ଧୁ ! ତୁମକୁ କିନ୍ତୁ ସେମାନେ କହନ୍ତି ଡକାୟତ । ଧୀରେ ସୁସ୍ଥେ ଯାହା ନେବାର ନେବ । ବସ, ଆଗେ ଏ ସିଗ୍ରେଟ ଖଣ୍ଡେ ଲଗାଅ ! ମୋ ସିଗ୍ରେଟରେ ବି ନିଆଁ ଧରାଇ ଦିଅ । ଆସ, ଟିକିଏ ଗପ ଆଗ ଜମାଅ । ଭୟ କରୁଛ କି ପୁଲିସ୍‌କୁ ଟେଲିଫୋନରେ ଖବର ଦେବି ବୋଲି ? ଟେଲିଫୋନ୍ ଦୂରରେ । ମୁଁ ପୁଣି ସହଜେ ଅପଙ୍ଗ । ···ବସ, ବସ ସେଇ ହୁଇଲ୍ ଚେଆର ଉପରେ ! ଅନ୍ୟ ଚଉକି ତ ନାହିଁ ଏଠି !'

ସେ ଲୋକଟା ସେତେବେଳକୁ ପ୍ରକୃତରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଥିଲା । ହୁଇଲ ଚେଆର ଉପରେ ବସି, ସେ ଖଣ୍ଡେ ସିଗ୍ରେଟରେ ନିଆଁ ଧରାଇ ହୃଦୟବାବୁଙ୍କ ସିଗ୍ରେଟରେ ମଧ୍ୟ ନିଆଁ ଧରାଇ ଦେଲା ।

ଅଦୂରରେ କେଉଁଠି କେଉଁ ମୋଡ଼ ବା ଗଳିରେ କେଉଁ ବେସମ୍ଭାଳ କାର ଡ୍ରାଇଭର, କାର୍‌ଟା ରାସ୍ତା କଡ଼ ନର୍ଦ୍ଦମା ଭିତରେ ଖସି ପଡ଼ୁ ପଡ଼ୁ ହଠାତ୍ ବ୍ରେକ୍ କଷିଲା ପରି ! ରାତିର ନିସ୍ତବ୍ଧ ଭିତରେ ପଛ ଚକ ରାସ୍ତାରେ ଘଷି ହୋଇ ଆର୍ତ୍ତନାଦ କରିବା ପରି ଦୁଇଥର ଚିତ୍କାର କରି ଉଠିଲା ।

ସେ ଲୋକଟା ହୁଇଲ୍ ଚେଆର ଉପରୁ ଉଠିପଡ଼ି, ଜଙ୍ଘିଆ ଭିତରୁ ପଟେ ଚାବି କାଢ଼ି ଅସ୍ଫୁଟ କଣ୍ଠରେ ଚିତ୍କାର କରି ଉଠିଲା···'ଚାବି' !

ହୃଦୟ ବାବୁ କହିଲେ, 'ଚାବିଟା ପକେଟରେ ରଖ ବନ୍ଧୁ ! କହିଛି ପରା, ଚାବି ଦେଖାଇବା ଦରକାର ନାହିଁ ! ସବୁ ଚାବି ଗୃହିଣୀଙ୍କ ଅଣ୍ଟାରେ ! ସେ କିନ୍ତୁ ବର୍ତ୍ତମାନ ଶ୍ରୀକ୍ଷେତ୍ରରେ । ତକିଆ ତଳେ ଖୋଜି ଦେଖ ଡୁପ୍ଲିକେଟ ଥିବ ।'

ସେ ଲୋକଟା ସେହିପରି ଡାହାଣ ହାତରେ ଚାବି ଦେଖାଇ ବାଁ ହାତରେ ତକିଆ ତଳୁ ଡୁପ୍ଲିକେଟ ଚାବିଟା ଖୋଜି ପାଇଲା । ତା'ପରେ ଷ୍ଟିଲ୍ ଆଲମୀରା ଖୋଲି, ତା'ର ଥାକ ଗୁଡ଼ାକୁ ଦୁଇ ହାତରେ ଘାଣ୍ଟିଗଲା । ବ୍ରିଫ୍‌କେଶ୍ ଦୁଇଟାରେ କାଗଜପତ୍ର ଛଡ଼ା ଆଉ ପ୍ରାପ୍ୟ କିଛି ନ ଥିଲା ।

ହୃଦୟ ବାବୁଙ୍କ ଆଖିରେ ଆଶଙ୍କା ବା ଉଦ୍‌ବେଗର ଚିହ୍ନ ଆଉ ନାହିଁ । ସେ ବରଂ ଏଇ ଦୃଶ୍ୟ ଯେମିତି ବେଶ୍ ଉପଭୋଗ କରୁଥିଲେ । ଦୁଇଖଣ୍ଡ ଫିକ୍ସଡ୍ ଡିପୋଜିଟ୍ ଫର୍ମ ପାଇ ସେ ଲୋକଟା ଆଲୁଅରେ ଦେଖୁଥିଲା । ହୃଦୟ ବାବୁ କହିଲେ··· 'ମନ୍ତ୍ରୀ, ନେତା ଆଉ ଆଡ୍‌ମିନିଷ୍ଟ୍ରେଟରମାନଙ୍କ ଷ୍ଟିଲ ଆଲମୀରାରେ ପାଇବ ଥାକ ଥାକ କରେନ୍‌ସୀ ନୋଟ । ସେସବୁ ସେମାନେ ତ ବ୍ୟାଙ୍କରେ ରଖନ୍ତି ନାହିଁ । ଆମ ପରି ଲୋକଙ୍କର ସବୁ ଆୟ ଉପାର୍ଜନ ବ୍ୟାଙ୍କ୍‌ରେ । ସେ ଦୁଇଖଣ୍ଡ କାଗଜ ତୁମର କେଉଁ କାମରେ ଆସିବ ନାହିଁ । ସିଏ. ଏଫ୍. ଡି. ଫର୍ମ ।'

ସେ ଲୋକଟା ଫିକ୍‌ସଡ୍ ଡିପୋଜିଟ୍ ଫର୍ମ ଦୁଇଖଣ୍ଡ ତଳେ ଫିଙ୍ଗିଦେଇ, ପୁଣି ସବୁ ଘାଣ୍ଟିଗଲା । ବ୍ରିଫ୍‌କେଶ ଭିତରୁ ଖୋଜି ଖୋଜି ସେ ପାଇଲା, ଭରିଏ, ଦେଢ଼ଭରି ଓଜନର ଗୋଟିଏ ସୁନା ଚେନ୍ ଆଉ ଦୁଇଟା ମୁଦି ।

ହୃଦୟ ବାବୁ କହିଲେ···'ସେ ଚେନ୍‌ଟା ବନ୍ଧୁ ତୁମେ ନନେଲେ ମୁଁ ଭାରି ଖୁସି ହୁଅନ୍ତି । ମୋର ସାନଝିଅ ସୁଜାତା, ଆଉ ଏ ଇହ ସଂସାରରେ ନାହିଁ । ସେ ଯେଉଁ ଦିନ ପ୍ରଥମେ କଲେଜକୁ ଗଲା, ସେ ଦିନ ଏ ଚେନ୍‌ଟା ମୁଁ କିଣି ଦେଇଥିଲି ତାକୁ । ଏଇ ଚେନ୍ ପିନ୍ଧି ସେ କଲେଜ ଯାଉଥିଲା ।' ···ଗୋଟାଏ ଗଭୀର ଦୀର୍ଘଶ୍ୱାସ, ରାତିର ସେଇ ଚପଳ ମୁହୂର୍ତ୍ତିକୁ ହଠାତ୍ ଯେପରି ବେଦନାରେ ଭାରି କରି ଦେଲା ।

…ଚଟାଣଯାକ ସେ ଲୋକଟା ସେତେବେଳକୁ ଆଲମାରୀ ଥାକମାନଙ୍କରୁ କାଢ଼ି ଫିଙ୍ଗି ସାରିଥିଲା, ସୁରମା ଦେବୀଙ୍କର ଅନେକ ଦାମୀ ଶାଢ଼ୀ ଆଉ ହୃଦୟ ବାବୁଙ୍କ ପାଇଜାମା ପଞ୍ଜାବ । ସୁନା ଚେନ୍ ଆଉ ମୁଦି ଦୁଇଟା ସେତେବେଳକୁ ଯାଇ ସାରିଥିଲା ସେ ଲୋକଟାର ଜଙ୍ଘିଆ ପକେଟ ଭିତରକୁ ।

ବେଡ୍ ଲାଇଟର ମୃଦୁ ନୀଳ ଆଲୋକରେ, ଆଲମାରୀ ଥାକରେ ଚକ୍ ଚକ୍ କରୁଥିଲା, ଦୁଇଟା ହୁଇସ୍କି ଆଉ ଗୋଟାଏ ଭୋଡ୍କା ବୋତଲ । ସେ ଲୋକଟା ଭୋଡ୍କା ବୋତଲଟା ହାତେଇ ଥିଲା, ହୃଦୟ ବାବୁ କହିଲେ, ଭୋଡ୍କା ଆଣନାହିଁ ହେ ବନ୍ଧୁ ! ଟମାଟୋ ଜୁସ୍ ନାହିଁ । ସୋଡ଼ା ବି ନାହିଁ । ଥିଲେ, ବନ୍ଧ୍ୟା ବ୍ଲଡ଼ି ମେରୀ କକ୍‌ଟେଲ ବନେଇ ଥାନ୍ତି, ତୁମ ପାଇଁ । କକ୍‌ଟେଲ ବନେଇବାରେ ମୁଁ ଆଜି ସୁଦ୍ଧା ପ୍ରସିଦ୍ଧ ବନ୍ଧୁ ! ବରଂ ସେଇ ହୁଇସ୍କି ଆଣ । ପାଣିରେ ବି ଚଳିବ । ଇଏ ହୁଇସ୍କି, ଜାଣୁ ତୁମର ସ୍ୱଦେଶୀ ହୁଇସ୍କି ନୁହେଁ, ଇଏ ଖାଣ୍ଟି ବ୍ରିଟିଆଣ୍ଡ ୱିସ୍କି । କଷ୍ଟମସ ମାଲ୍ ।'

ସେ ଲୋକଟା ଗୋଟଏ ସ୍କଚ୍-୬୯ ବୋତଲ ଧରି ହୁଇଲ୍ ଚେଆର ଉପରେ ଆସି ବସିଲା ।

ହୃଦୟ ବାବୁ କହିଲେ, 'ଏଇ ପାଖ ରୁମ୍‌ଟା ଡାଇନିଙ୍ଗ୍ ରୁମ । ତୁମେ କଷ୍ଟକରି ଯାଅ ଦୁଇଟା ଗ୍ଲାସ ଆଉ ଗୋଟାଏ ପାଣି ବୋତଲ ଧରି ଆସିବ ।'

କିଛିକ୍ଷଣ ପରେ ସେ ଲୋକଟା ଗୋଟାଏ ପାଣି ବୋତଲ ଆଉ ଦୁଇଟା ଗ୍ଲାସ ହାତରେ ଧରି ହୁଇଲ ଚେଆର ଉପରେ ଆସି ବସିଲା ।

ସେ ଲୋକଟା ପ୍ରାୟ ତିନି ପେଗ୍ ହୁଇସ୍କି ଏକାଥରେ ନିଜ ଗ୍ଲାସରେ ଢାଳି-ନେଲା । ସିଏ ବୋଧହୁଏ, ପୂରା ବୋତଲ ମୁହଁରେ ଲଗାଇ ଟାଣେ । ସେଥିପାଇଁ ପେଗ୍ ମାପରେ ସେ ଅଭ୍ୟସ୍ତ ନୁହେଁ । ପାଣି ମିଶାଇବା ତା'ର ଦରକାର ନଥିଲା । ଏକା ନିଶ୍ୱାସରେ ସେ ଗ୍ଲାସଟାକୁ ସଫା କରିଦେଇ, ଖଣ୍ଡେ ସିଗ୍ରେଟରେ ନିଆଁ ଲଗାଇଲା । ହୃଦୟ ବାବୁ ନିଜ ଗ୍ଲାସରେ ଗୋଟାଏ ପେଗ୍ ହୁଇସ୍କି ଢାଳି ନେଇ, ସେଥିରେ ପାଣି ମିଶାଇବା ପୂର୍ବରୁ ଆଘ୍ରାଣ କରୁଥିଲେ ।

ହୃଦୟ ବାବୁ କହିଲେ…'ସ୍କଚ୍‌ର ଫ୍ଲେଭର ଅଲଗା !'

ସେ ଲୋକଟା, ଆଉଥରେ ବୋତଲରୁ ତା' ଗ୍ଲାସରେ ଢାଳି ନେବା ପରେ ବୋତଲରେ ଆଉ ବୋଧହୁଏ, ମାତ୍ର ଗୋଟାଏ ପେଗ୍ ତଳରେ ଲାଗିଥିଲା ।

ହଠାତ୍ ପୋଲିସର ଘନଘନ ହୁଇସିଲ୍ ଆଉ ହ୍ୱିପ୍ ଶବ୍ଦରେ, ମୁକ୍ତ ରାତ୍ରିର ନିଶବ୍ଦ, ଦୁଃସ୍ୱପ୍ନ ଦେଖି ଚାଲବଲେଇବା ପରି ଚିତ୍କାର କରି ଉଠିଲା । ସହରରେ କେଇଜଣ ଖାଲିସ୍ତାନୀ ଆସି ପହଞ୍ଚିଛନ୍ତି ବୋଲି ଖବର କାଗଜରେ ଖବର ବାହାରିଥିଲା । ସେଥିପାଇଁ ରାତିରେ ପୋଲିସ ପହରାଦାରୀ ଏବେ ବୃଦ୍ଧି ପାଇଛି । ପାହାନ୍ତା ପର୍ଯ୍ୟନ୍ତ ଚାଲିବ ଘନଘନ ପୋଲିସ ପହରା । ସେ ଲୋକଟା ଲାଇଟ୍ ନିଭାଇ ଦେଲା ।

ହୃଦୟ ବାବୁଙ୍କୁ ବେଶ୍ ଭଲ ଲାଗୁଥିଲା—ଗୋଟାଏ ଝଣ୍ଟା ତାଙ୍କୁ ହୋଇପଡ଼ୁଛି ଜଣେ ମଣିଷର ଏଇ ସାନ୍ନିଧ୍ୟ। ଦୀର୍ଘ ଦିନ ଧରି, ସେ କେବେ କାହାର ଏପରି ଗାଓଲା ମଣିଷର ନିକଟ ସାନ୍ନିଧ୍ୟ, ହୁଇସ୍କି ଗ୍ଲାସ ଧରି ଏପରି ଉଦ୍ଦେଶ୍ୟହୀନ ଆଳାପ ଉପଭୋଗ କରି ନ ଥିଲେ। କେବଳ ଭିନ୍ନ ଭିନ୍ନ ସ୍ପେସିଆଲିଷ୍ଟ ଡାକ୍ତରଙ୍କ ସହିତ ବିଭିନ୍ନ ଉପସର୍ଗ ଯେନ କଥାବାର୍ତ୍ତା ଆଉ ଗୁରୁ ନୋହିଲେ ବାବାମାନଙ୍କ ଠାରୁ ଅଗଡ଼ମ୍ ବଗଡ଼ମ୍ ବ୍ୟତୀତ ଅନ୍ୟ କଥାବାର୍ତ୍ତା ପାଇଁ ତାଙ୍କୁ ଆଉ କେବେ କୌଣସି ସାଥି ଜୁଟି ନଥିଲେ।

ନିଶୀଥ ବନ୍ଧୁ କିନ୍ତୁ ହୁଇସ୍କି ଗ୍ଲାସ ଧରି ସେଠାରେ ହୃଦୟ ବାବୁଙ୍କ ଉପସ୍ଥିତି ଯେପରି ପୁରାପୁରି ଭୁଲି ଯାଇଥିଲା। ସେ ବୋଧହୁଏ ସେଠାରେ କିଛିଟା ଅସ୍ୱସ୍ତି ଅନୁଭବ କରୁଥିଲା।

ଲୋକଟା ଖୋଲାଖୋଲି ଭାବରେ ଆଳାପ କରି ଜାଣି ନାହିଁ। ସେ ଏକା ଢୋକରେ ଗୋଟାଏ ଗୋଟାଏ ପେଗ୍ ହୁଇସ୍କି ସାଫ୍ କରି ଦେଉଛି। ଆଲମାରି ଥାକରେ, ସେ ଅନ୍ୟ ବୋତଲଟା ଆଡ଼େ ଚାହିଁଲାଣି।

ହୃଦୟବାବୁ କହିଲେ···'ତମର କଲା ଜଂଘିଆଟା ଚଟ୍‌ପଟ୍ ବଦଲାଇ ନିଅ, ନିଶୀଥ ବନ୍ଧୁ! ତୁମ ନାଁ ତ ତମେ ମୋତେ କେବେ କହିବ ନାହିଁ। ସେଥିପାଇଁ ତୁମ ନାଁ ଦେଇଛୁ ନିଶୀଥ ବନ୍ଧୁ! ···କଲା ଜଙ୍ଘିଆ ପିନ୍ଧି, ଗୁଣ୍ଡାମାର୍କା ଚେହେରା, ଏତେ ରାତିରେ କାହା ଆଖିରେ ପଡ଼ିଲେ ବିପଦ। ଜଙ୍ଘିଆଟା ବଦଳାଇ, ମୋର ଗୋଟାଏ କୁର୍ତ୍ତା ପାଇଜାମା ଚଟ୍‌ପଟ୍ ପିନ୍ଧି ପକାଅ!'

ନିଶୀଥ ବନ୍ଧୁ ହୁଇସ୍କି ଗ୍ଲାସ ଛାଡ଼ି ସମ୍ମୋହିତ ପରି, ଗୋଟାଏ ପାଇଜାମା ଆଉ କୁର୍ତ୍ତା ବଦଳି ପକାଇଲା।

ହୃଦୟ ବାବୁ ସିଗ୍ରେଟରୁ କଳେ ଧୂଆଁ ଛାଡ଼ି କହିଲେ, 'ଦାଟ୍‌ସ' ବେଟର। ତୁମେ ବର୍ତ୍ତମାନ ଜଣେ ବିଶିଷ୍ଟ ଭଦ୍ରଲୋକ ପରି ଦିଶୁଛ! ···ହାଃ···ଏଇ ଚେହେରା! ଭଦ୍ର ଆଉ ଅଭଦ୍ର! ସବୁ ଟେଲର-ମେଡ୍! ଦରଜୀ ଆଉ ସେଲୁନବାଲାମାନେ ହିଁ ସମାଜ ଆଖିରେ ମଣିଷକୁ ଭଦ୍ର ଆଉ ଅଭଦ୍ର କରିଥାନ୍ତି। ଏ ପୋଷାକରେ ତୁମକୁ ଦେଖିଲେ କେହି କ'ଣ କେବେ ସନ୍ଦେହ କରିପାରିବ, ତୁମେ ଗ୍ରୀଲ୍ କାଟି ମୋ ଘରେ ପଶିଥିଲ ଲୁଟି କରିବା ପାଇଁ? ···ତମେ ଜଣେ ଲେଫ୍‌ଟିଷ୍ଟ ନେତା ନୋହିଲେ ଆର୍ଟିଷ୍ଟ ପରି ଦିଶୁଛ ହେ ନିଶୀଥ ବନ୍ଧୁ!···ଚିଅରସ୍!'

ନିଶୀଥ ବନ୍ଧୁ ହୁଇସ୍କି-ଭଙ୍ଗା ଗଳାରେ କହିଲା···'ହାଃ·· ଫର୍ ୟୋର ଇନ୍‌ଫରମେସନ୍, ମୁଁ ତମ ଇଉନିଭରସିଟିର ଜଣେ ପୋଷ୍ଟ-ଗ୍ରାଜୁଏଟ୍··· ଏମ୍. ଏ.— ପଲିଟିକାଲ୍ ସାଇନ୍‌ସରେ!'

…'ଜନ୍ମ, ବେକାର !'

…'କପି କରି, ଧରାଧରିରେ ପାଶ୍ କରିଥିବ ନିଶ୍ଚୟ ।'

ନିଶୀଥ ବନ୍ଧୁ ବିସ୍ଫୋରିତ ନୟନ ଘଟି କଣ୍ଠରେ କହିଲା…'ସୋ ହ୍ୱାଟ୍ ? ସେଇ ତ ଆଜି, ଶିକ୍ଷାର ସିଷ୍ଟମ୍ । କପି ନୋହିଲେ ଧରାଧରିରେ ପାଶ୍ । କିନ୍ତୁ ମୋର ସାର୍ଟିଫିକେଟ୍‌ଟା ତ ଆଉ କପି ନୁହେଁ !'

'ତା'ହେଲେ ?'…ହୃଦୟ ବାବୁ ବିଭ୍ରାନ୍ତ କଣ୍ଠରେ ପଚାରିଲେ ।

'ଅନେକ ଇଣ୍ଟରଭ୍ୟୁ, ବେକାରି ଦାଉ ଅନେକ ଭୋଗିବା ପରେ, ଦିନେ ଜଣେ ମନ୍ତ୍ରୀଙ୍କ ଉଦ୍‌ବୋଧନ ଶୁଣିଲି, ଶିକ୍ଷିତ ବେକାରମାନଙ୍କ ପାଇଁ ସରକାର ବାହାର କରିଛନ୍ତି, ଆତ୍ମନିଯୁକ୍ତି ଯୋଜନା । ସେଥିରେ ବି କିନ୍ତୁ ଦେଖିଲି, ଅନେକ ମାରପେଞ୍ଚ, ଅନେକ ଧରାଧରି । ମୁଁ ତେଣୁ ଆତ୍ମ-ନିଯୁକ୍ତ ପାଇଁ ବାଛିନେଲି, 'ଏଇ କାରିଅର ।'… ନିଶୀଥ ବନ୍ଧୁ ଏକା ନିଶ୍ୱାସରେ ଏତକ କହି ଗ୍ଲାସରୁ ଗୋଟାଏ ଲମ୍ବା ଢୋକ ଶୋଷି ନେଲା ।

ହୃଦୟ ବାବୁ ନିର୍ବାକ୍ ।

ନିଶୀଥ ବନ୍ଧୁ କହିଲା…'ତୁମେ କିନ୍ତୁ ମୋତେ ଖୁବ ଉପାପଏଣ୍ଟ କଲ ।'

'ମାନେ ?…ଏତେ ବନ୍ଧୁଚର୍ଚ୍ଚା ସତ୍ତ୍ୱେ ?'

ସେ କହିଲା…ଗ୍ରୀଲ୍‌କଟାରେ ସ୍ପେସିଆଲାଇଜ୍ କରିବା ପରେ, ମୁଁ ପ୍ରଥମେ ଆଜି ଆସିଥିଲି, ତୁମ ଗ୍ରୀଲ୍ କାଟିବା ପାଇଁ । ଶୁଣିଲି, ତୁମେ ଅଫିସର । ତୁମ ଶ୍ରୀମତୀ ଯାଇଛନ୍ତି ତୀର୍ଥ କରି । ଘରକର ଗଣ୍ଡୋଗୋଳ୍ । ଫରେଷ୍ଟ କନ୍‌ଜରଭେଟର ଥିଲ ! ଅନେକ ମାଲ୍ ଲୁଚାଇ ରଖିଛ । କିନ୍ତୁ ଏ ସବୁ ଚକନଲଡ୍ ! ତୁମର ଚନ୍ଦନ କାଠ ପଲଙ୍କ କାହିଁ ? ମାଲ୍ କାହିଁ ? ନା ଇଏ ତୁମର ଚାଲାକି ? ଆଉ କେଉଁଠି ପୋତି ରଖିଛ ? ରାତି ଅଧରେ ଗ୍ରୀଲ୍ କାଟି ଡକାୟତ ଆସେ କ'ଣ ହୁଇସ୍କି ପିଇ ଘର ମାଲିକ ସଙ୍ଗେ ଗପ ଜମାଇବା ପାଇଁ ?…ନନ୍‌ସେନ୍‌ସ ! ରାତିଟା ମାଟି ହେଲା ମୋର !'

ହୃଦୟବାବୁ କହିଲେ…'ମୋତେ ବିଶ୍ୱାସ କର ନିଶୀଥ ବନ୍ଧୁ । ମୁଁ ଆଉ ଯାହା ହେଲେ ବି ଆଦୌ ଧୂର୍ତ୍ତ ଚାଲାଖ ନୁହେଁ । ଶିକାର ପଛରେ ବଣ ଜଙ୍ଗଲରେ ଛୁଟି ଛୁଟି ମୋ ଜୀବନ କଟିଲା । ଜାନୁଆର ଆଉ ଶିକାରୀ ସାମ୍ନା ସାମ୍ନି ହେବା-ବେଳେ, ସେଠି ଚାଲାକି ଚଳେ ନାହିଁ । ମଣିଷମାନଙ୍କ ଭିତରେ ଚାଲାକି ଚଳେ ସିନା ।' ମୋର ସାରା ଜୀବନ କଟିଲା, ଜଙ୍ଗଲର ଶିକାର ଆଉ ମାୟା ହରିଣୀମାନଙ୍କ ପଛେ ଛୁଟି ଛୁଟି ।…ମାୟା ହରିଣୀର ଆଖି ଦେଖିଛ କେବେ ? ମାୟା ହରିଣୀ ବୁଝୁଛ ତ ? ମୁଁ ଚନ୍ଦନ କାଠର ପଲଙ୍କ ପାଇବି କୁଆଡୁ ? ତା' ଛଡ଼ା ନିଶୀଥ ବନ୍ଧୁ, ଆମେ ସବୁ ସେ ଦିନର ଲୋକ; ଆମେ କେବେ କୋଡ଼ିଏ ଆଙ୍ଗୁଠି ପାଟିରେ ପୂରାଉ ନଥିଲୁ ! ଆମେ

ଜଙ୍ଗଲରେ ଚନ୍ଦନ ପ୍ଲାଣ୍ଟେସନ୍ ଲଗାଉଥିଲୁ ! ଏମାନେ କାହିଁକି, ଏମାନଙ୍କ କର୍ମଚାରୀମାନେ ସୁଦ୍ଧା, ସେ ପ୍ଲାଣ୍ଟେସନ୍ ସବୁ କାଟି, ସେଥିରେ କବାଟ ପଲଙ୍କ ତିଆରି କରୁଛନ୍ତି ! ମୋତେ ବିଶ୍ୱାସ କର ନିଶୀଥ ବନ୍ଧୁ !'

ବାହାର ରାସ୍ତାରେ ପୋଲିସ୍ ଜୀପ୍‌ରେ ପର୍ଦ୍ଦିଭିତ୍ତି ମାରିବାର ଶବ୍ଦ । ଗୋଟାଏ ମୋଟର ବାଇକ୍ ରାତି ଶେଷର ନିଶୁନ୍ଦିକୁ ଥରାଇ ଦେଇ ସେଇ ରାସ୍ତାରେ ଚାଲିଗଲା ।

ଇଏ ବୋଧହୁଏ ପୋଲିସ୍‌ର ଶେଷ ରାଉଣ୍ଡ । ପାହାନ୍ତା ପହରର କେଇଟା ପକ୍ଷୀ, କାହା ବଗିଚାରେ, କେଉଁ ଗଛ ଡାଳରେ କେଇଥର ରାବିଉଠି ନୀରବ ହୋଇଗଲେ । ଶୁକ୍ଳ ତିଥିର ଜହ୍ନ ଅସ୍ତଗଲାଣି । ଆକାଶରେ କ୍ରମେ ଫୁଟି ଉଠୁଛି, ଫିକା ପାଉଁଶିଆ ରଙ୍ଗ । ଅଳ୍ପ ପରେ ସେଥିରେ ନାଲିରଙ୍ଗ ଉକୁଟିବ । ସେ ସ୍ୱା' ଭିତରେ ଦ୍ୱିତୀୟ ହୁଇସ୍କି ବୋତଲଟା ପ୍ରାୟ ଶେଷ କରି ଦେଇଥିଲା ।

ଦୂରରେ ମେନ୍ ରୋଡ଼୍‌ରେ ଗୋଟାଏ ଟ୍ରକ୍‌ର ଘର୍ଘର ଶବ୍ଦ ଶୁଭୁଛି ! ସେ କାଠ ଗ୍ରୀଲ୍ ବାଟେ ଯେପରି ନିଃଶବ୍ଦରେ ଆସିଥିଲା, ସେଇପରି ତା'ର ଗୋଟାଏ ଥଳରେ କଳା ଜଙ୍ଘିଆ ଆଉ ଯନ୍ତ୍ରପାତି ଧରି କାଠ ଗ୍ରୀଲ୍ ବାଟେ ବାହାରକୁ କୁଦି ପଡ଼ିବାକୁ ଚେଷ୍ଟା କରୁଥିଲା ।

ହୃଦୟ ବାବୁଙ୍କ ଦୁଇ ଆଖି, କ୍ରମେ ନିଦରେ ଲାଖି ହୋଇ ଆସିଲାଣି । ସେ କହିଲେ···'ଶ୍ରୀମତୀ ତୀର୍ଥ କରି ଯାଇଥିଲା ବେଳେ, ତୁମେ ଆଉ ଯଦି କୋଉଦିନ ଆସିବ ନିଶୀଥ ବନ୍ଧୁ, ତା'ହେଲେ ସେଦିନ ତୁମକୁ ନିଜ ହାତରେ ତିଆରି କରିଦେବି ବ୍ଲଡିମେରି କକ୍‌ଟେଲ୍ !'

ହୃଦୟବାବୁ ଗ୍ଲାସରୁ ଶେଷ ଢୋକେ ବିଲ୍ଡୁ ହୁଇସ୍କି ପିଇବା ପାଇଁ, ବିଛଣା ଉପରେ ଉଠ ବସି ଚମକି ଉଠିଲେ । ନିଶୀଥ ବନ୍ଧୁ ଟି'ପସ୍ସ ଉପରେ ଗୁଡ଼ି ଯାଇଛି, ସୁନାତାର ସେଇ ଚେନ୍ ଆଉ ମୁଦି ।

ଚେନ୍‌ଟାକୁ ହାତରେ ଉଠାଇ ଧରି, ହୃଦୟ ବାବୁ ହଠାତ୍ ଗମ୍ଭୀର ହୋଇ ଉଠିଲେ । ସୁନା ଚେନ୍‌ଟାକୁ ହାତରେ ଧରି ଆଉଁସିବା ବେଳେ, ଗୋଟାଏ ଗଭୀର ଦୀର୍ଘଶ୍ୱାସରେ, ପାହାନ୍ତା ପହରର ଶୀତୁଳିଆ ପବନ ହଠାତ୍ ଯେପରି ଉଷ୍ଣ ହୋଇ ଉଠିଲା ।

ରାତ୍ରି ଉଜାଗରର ଅବସାଦରେ ତାଙ୍କର ଦୁଇ ଆଖି ଧୀରେ ଧୀରେ ମୁଦି ହୋଇ ଆସୁଥିଲା ।



୍ୟ୪

ଶିବାଜୀ
କଟକ-୮

[୧୯୮୭ 'ସମ୍ବାଦ' ବାର୍ଷିକ ବିଶେଷାଙ୍କ]



ଆଧୁନିକ ଓଡ଼ିଆ ସାହିତ୍ୟର ଅପ୍ରତିଦ୍ୱନ୍ଦ୍ୱୀ କଥାଶିଳ୍ପୀ ସୁରେନ୍ଦ୍ର ମହାନ୍ତି । ବରିଷ୍ଠ ସାମ୍ବାଦିକ, ସାହିତ୍ୟ-ସମାଲୋଚକ ଭାବରେ ମଧ୍ୟ ସେ ସୁପ୍ରତିଷ୍ଠିତ । ଓଡ଼ିଆ ଭାଷାରେ ପନ୍ଦର ଖଣ୍ଡ ଉପନ୍ୟାସ, ଚଉଦ ଖଣ୍ଡ ଗଳ୍ପ ସଙ୍କଳନ, ପାଞ୍ଚଖଣ୍ଡ ସାହିତ୍ୟ ସମାଲୋଚନା ଗ୍ରନ୍ଥ, ଖଣ୍ଡିଏ ଭ୍ରମଣ କାହାଣୀ ଓ ଆତ୍ମ-ଜୀବନୀ, ଦୁଇଖଣ୍ଡ ଜୀବନୀ ଗ୍ରନ୍ଥ ବ୍ୟତୀତ ଇଂରେଜୀ ଭାଷାରେ ଚାରିଖଣ୍ଡ ଆଲୋଚନାତ୍ମକ ପୁସ୍ତକର ସ୍ରଷ୍ଟା ଭାବରେ କେବଳ ଓଡ଼ିଆ ନୁହେଁ ; ଭାରତୀୟ ସାହିତ୍ୟକୁ ମଧ୍ୟ ସେ ସମୃଦ୍ଧ କରିଛନ୍ତି । ଭିନ୍ନ ଭିନ୍ନ ସମୟରେ ଦୈନିକ ସମ୍ବାଦପତ୍ର "ଗଣତନ୍ତ୍ର" "କଳିଙ୍ଗ" ଓ "ସମ୍ବାଦ"ର ସମ୍ପାଦକ ଭାବରେ ସାମ୍ବାଦିକତାର ଇତିହାସରେ ସ୍ମରଣୀୟ ହୋଇ ରହିବେ ।

୧୯୬୪ ମସିହାରେ "ସବୁଜପତ୍ର" ଓ "ଧୂସର ଗୋଲାପ" ଗଳ୍ପଗ୍ରନ୍ଥ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ୧୯୭୦ ମସିହାରେ "ନୀଳଶୈଳ" ଉପନ୍ୟାସ ଲାଗି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର, ୧୯୭୧ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର "ଗଙ୍ଗାଧର ମେହେର ପୁରସ୍କାର"... "ଭରତ ନାୟକ ପୁରସ୍କାର", ୧୯୮୦ ମସିହାରେ "କୁଳବୃଦ୍ଧ" ଜୀବନୀ ଗ୍ରନ୍ଥ ପାଇଁ ପ୍ରଥମ ସାରଳା ପୁରସ୍କାର ଏବଂ ୧୯୮୭ ମସିହାରେ ତାଙ୍କର ଆତ୍ମ-ଜୀବନୀ "ପଥ ଓ ପୃଥିବୀ" ଲାଗି ପୁନଶ୍ଚ ସାହିତ୍ୟ ଏକାଡେମୀ ପୁରସ୍କାର ଦ୍ୱାରା ସେ ସମ୍ମାନିତ ।

ଭିନ୍ନ ସ୍ୱାଦ, ଭିନ୍ନ ଶୈଳୀରେ ରଚିତ ଶତାଧିକ ଗଳ୍ପ ମଧ୍ୟରୁ ଏହାହିଁ ହେଉଛି ତାଙ୍କର ନିର୍ବାଚିତ ପ୍ରଥମ "ଶ୍ରେଷ୍ଠଗଳ୍ପ" ସଙ୍କଳନ ।